# ସ୍ୱପନର ଭୂମି

ପ୍ରତିଭା ଶତପଥୀ

ଭଦ୍ରାପୁରୀ

SPANDANAR BHUMI

By Dr. Prativa Satpathy
**Publishers : Vidyapuri, Cuttack 753002**
**1993**

ପ୍ରଥମ ପ୍ରକାଶ—ଜାନୁଆରୀ ୧୯୯୩

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗୋସ୍ୱାମୀ ପ୍ରେସ୍
ଆଲମଚାନ୍ଦ ବଜାର, କଟକ ୭୫୩୦୦୨

ମୂଲ୍ୟ—ଟ ୧୫.୦୦

# ଭୂମିପୂଜା

କବିତାର ସ୍ପନ୍ଦନକୁ ଧାରଣ କରେ ଯେଉଁ ନନ୍ଦ-ରଚନା ତାକୁ ମୁଁ ବିଶ୍ଳେଷଣ କରିବାର ସ୍ପର୍ଦ୍ଧା କରିଛି ମୁଁ । ଅତଏବ ମୁଁ ଅନନ୍ୟ ମନ୍ତବ୍ୟ କିଛି ଉପସ୍ଥାପିତ କରିପାରିଛି ବୋଲି ଭାବୁ ନାହିଁ । ତେବେ, କବିତା ସଂରଚନାର, କବିର ଚେତନାଜଗତର ସଂଗଠନର କେତେକ ସ୍ୱରୂପ ଉଦ୍‌ଘାଟନ କରିବାର ପ୍ରୟାସରୁ ଏ ପୁସ୍ତକର ଜନ୍ମ । କବିତାମାନ୍ମ ମୋର ପ୍ରାୟ ୩୦ ବର୍ଷର ଊର୍ଦ୍ଧ୍ୱ ସମ୍ପର୍କରୁ ମୋ ମନ ଓ ଚେତନାରେ, ଅନୁଭବ ଓ ଉପଲବ୍‌ଧିରେ କବିତା ଯେପରି ପ୍ରତ୍ୟକ୍ଷୀଭୂତ ହୋଇଛି, ତାହାକୁ ଯଥାସମ୍ଭବ ସଂକ୍ଷେପ ଓ ପ୍ରତ୍ୟକ୍ଷଭାବେ ବ୍ୟକ୍ତ କରିବାକୁ ମୁଁ ଚେଷ୍ଟା କରିଛି । କବିତା ସଂରଚନାର ପ୍ରବଣତା ଓ ସଂଗଠନ ଏକ ସୂକ୍ଷ୍ମ, ଅନ୍ତର୍ନିହିତ, ସ୍ୱୟଂସମ୍ପୂର୍ଣ୍ଣ ସ୍ପନ୍ଦନ ବୋଲି ମୋର ହୃଦ୍‌ବୋଧ ହୋଇଛି । ଅତଏବ ଏହାର ଯେଉଁ ଦିଗ ସମ୍ପର୍କରେ ମୁଁ ଯାହା କିଛି କହିଛି, ସେ ସବୁ ଶେଷକଥା ନୁହେଁ । କେବଳ ଅନୁଭୂତି ମଧ୍ୟରେ ନିମଜ୍ଜିତ ହୋଇ, ତାହାକୁ ଶବ୍ଦରେ ମୂର୍ତ୍ତି କରିବାର ସଂକଳ୍ପରୁ ଏହି ପ୍ରବନ୍ଧ ଓ ଉଦ୍ଧରଣମାନଙ୍କର ସୃଷ୍ଟି । ପୁନଶ୍ଚ କବିତା ସଂରଚନାର ଜଟିଳ ଭାବାବେଶ ମଧ୍ୟରେ ମଜ୍ଜିଯିବା କାଳରେ ମୁଁ ତାହାର ତତ୍ତ୍ୱଗୁଡ଼ିକୁ ବିଶ୍ଳେଷଣ କରିବସିଲି କାହିଁକି ? ସ୍ପନ୍ଦନକୁ ମାପିବାର ଧୃଷ୍ଟତା କ'ଣ ପାଇଁ କରିବାକୁ ଚେଷ୍ଟା କଲି ?

ହଁ, ମୋର ଏହି ତତ୍ତ୍ୱ ବିଶ୍ଳେଷଣର ହେତୁ ଥିଲା । ବିଭିନ୍ନ ସମ୍ମାନରେ, ଆଲୋଚନାଚକ୍ରରେ ପ୍ରବନ୍ଧ ପାଠକରିବା ନିମିତ୍ତ ନିମନ୍ତ୍ରିତ ହେବାର ଫଳରେ ମୁଁ ସୃଜନ-ଶକ୍ତିକୁ ବିଶ୍ଳେଷଣ କରିବାରେ ଅଗ୍ରସର ହୋଇଛି । ପୁଣି, ପାଠକୀୟ ଅବବୋଧକୁ ଅନେକ ଦିଗରୁ ପ୍ରଶ୍ନ କରିଛି । ନିଜେ ଠିଆହୋଇ ପଢ଼ିଛି ପାଠକ ସହ ଏକାତ୍ମ ହୋଇ । ଫଳରେ କବି, କବିତା ଓ ପାଠକଙ୍କୁ ନିଜ ଭିତରେ ଏକ ଓ ଅଭିନ୍ନ କରି ସମୀକ୍ଷା କରିବାକୁ ସାହସ କରିଛି । କେଉଁଠି ବା ଗବେଷକର ଦୃଷ୍ଟି ନେଇ କବିତାର ସ୍ୱରକୁ ତର୍ଜମା କରିବାକୁ ବସିଛି—ଚିହ୍ନି ଚିହ୍ନାଇବାକୁ ସଂକଳ୍ପ କରିଛି । ନ ହେଲେ, ମୁଁ ଖାସ୍ ତତ୍ତ୍ୱାଲୋଚକ ନୁହେଁ—କେବଳ ନିଜ ଦୃଷ୍ଟିକୋଣର ବିଶେଷତ୍ୱ ଦର୍ଶାଇବା ନିମନ୍ତେ ଏସବୁ ମୁଁ ଲେଖି ନାହିଁ । ବେଳେବେଳେ ପ୍ରତିଷ୍ଠିତ କେତେକ ଧାରଣା ଅଯଥେଷ୍ଟ ମନେହେବାରୁ ମୁଁ ନିଜ ଧାରଣାକୁ ଏଥିରେ ଲିପିବଦ୍ଧ କରି ଉପସ୍ଥାପନ କରିଛି । ଓଡ଼ିଶାର ସୁଧୀ ପାଠକବର୍ଗ ଏଥିରୁ କିଛିଟା ସମମର୍ମିତା ଗ୍ରହଣ କଲେ ମୁଁ ନିଶ୍ଚୟ ଖୁବ୍ ଖୁସି ହେବି ।

ଏହି ପ୍ରବନ୍ଧମାନଙ୍କରୁ କେତୋଟି ଓଡ଼ିଶା ସାହିତ୍ୟ ଏକାଡେମୀର ମୁଖପତ୍ର 'କୋଣାର୍କ'ରେ, ଭାରତୀୟ ଭାଷାପରିଷଦର ମୁଖପତ୍ର "ରାଷ୍ଟ୍ରଭାଷା ସନ୍ଦେଶ", ଉତ୍କଳ ବିଶ୍ୱବିଦ୍ୟାଳୟର 'ପାଠଚକ୍ର ପ୍ରବନ୍ଧାବଳୀ'ରେ ଓ ପ୍ରତିଷ୍ଠିତ ପତ୍ର ପତ୍ରିକାରେ ବିଭିନ୍ନ ସମୟରେ ବିଗତ ୧୦ ବର୍ଷର ସମୟସୀମା ମଧ୍ୟରେ ପ୍ରକାଶିତ । ଏହି ଅବସରରେ ଉଲ୍ଲିଖିତ ପତ୍ର ପତ୍ରିକାର ସମ୍ପାଦକମାନଙ୍କୁ ମୁଁ ମୋର ଶ୍ରଦ୍ଧା ନିବେଦନ କରୁଅଛି । ଏହି ଆଲୋଚନା ପୁସ୍ତକଟିକୁ ପ୍ରକାଶ କରି ମୋତେ କୃତାର୍ଥ କରିଥିବା ବିଦ୍ୟାପୁରୀର ଶ୍ରୀ ପୀତାମ୍ବର ମିଶ୍ର ତାଙ୍କୁ ମୋର ଆନ୍ତରିକ ସାଧୁବାଦ—

ପ୍ରତିଭା ଶତପଥୀ

## ଏହି ଲେଖିକାଙ୍କର ଅନ୍ୟାନ୍ୟ ରଚନା :

### କବିତା ଗ୍ରନ୍ଥ

ଆମ କବିତା—୧୯୬୨

ଅସ୍ତ ଜହ୍ନର ଏଲିଜି—୧୯୬୯

ଗ୍ରସ୍ତ ସମୟ—୧୯୭୪

ସାହାଡ଼ା ସୁନ୍ଦରୀ—୧୯୭୮

ନିଃସ୍ବ ବସୁଧା—୧୯୮୦

ନିମିଷେ ଅକ୍ଷର—୧୯୮୫ (ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ)

ମହାମେଘ—୧୯୮୮

ଶବରୀ—୧୯୯୧ (ଶାରଳା ପୁରସ୍କାର ପ୍ରାପ୍ତ)

### ଗଦ୍ୟ ଗ୍ରନ୍ଥ

ଅପାପବିଦ୍ଧ (ପର୍ଲ୍ ଏସ୍. ବକ୍‌ଙ୍କ **The Hidden Flower** ଉପନ୍ୟାସର ଅନୁବାଦ)

କ୍ରୀତଦାସ (ଆଇଜାକ୍ ବି. ସିଙ୍ଗରଙ୍କ **The Slave** ଉପନ୍ୟାସର ଅନୁବାଦ)

ନଗର ମନ୍ଥନ<br>କହ୍ଲଣ ଚରିତ { କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଅନୁବାଦ }

ସୁବ୍ରମଣ୍ୟ ଭାରତୀ (ନ୍ୟାସନାଲ୍ ବୁକ୍‌ଟ୍ରଷ୍ଟ ଆନୁକୂଲ୍ୟରେ ଅନୁବାଦ)

କଳ୍ପନାର ଅଭିଷେକ (ବିଶ୍ୱବିଦ୍ୟାଳୟ ନିବନ୍ଧ ଗ୍ରନ୍ଥ)

ପ୍ରତିଫଳନ (ଭିନ୍ନମସ୍କ ଗଦ୍ୟର ସମାହାର )

# କ୍ରମନ୍ୟାସ

# କବିତା : ଭୂମିକା ଓ ସମ୍ଭାବନା

ବହୁ ଯୁଗରୁ କବିତାର ଜୈତ୍ରଧ୍ୱନି ଉଦ୍‌ଘୋଷିତ—କଳାଜଗତରେ କବିତାର ସ୍ୱତନ୍ତ୍ର ସ୍ଥାନ ସୁରକ୍ଷିତ । ତଥାପି 'କବିତା କାହିଁକି ?' ମନରେ ଏଇ ପ୍ରଶ୍ନ ଉଠିବା ଅପ୍ରାସଙ୍ଗିକ ନୁହେଁ । ପ୍ରକୃତରେ କବିତାର କି ଆବଶ୍ୟକତା ରହିଛି ? ଏଇ ବିଂଶଶତକର ବସ୍ତୁବାଦୀ ସମାଜରେ ଅହରହ ପ୍ରତିଯୋଗିତାରେ ଅଣନିଃଶ୍ୱାସୀ ହୋଇଉଠୁଥିବା, ଧ୍ୱଂସ ଓ ମୃତ୍ୟୁଭୟରେ ଶଙ୍କିତ, ଥରହର ହେଉଥିବା ମଣିଷ ପାଇଁ କବିତାର କି ଅବଦାନ ରହିଛି ? ମଣିଷ କବିତା ପଢ଼େ କାହିଁକି ? ତାକୁ ମିଳେ କ'ଣ ସେଥିରୁ ? କବିତା ଲେଖିବା ଓ ପଢ଼ିବା ଭିନ୍ନ ଅନ୍ୟକାର୍ଯ୍ୟରେ ସମୟ ବିନିଯୋଗ କଲେ ତାହା ଅର୍ଥକରୀ ହୋଇପାରେ, ସାଂସାରିକ ସୁବିଧା ସୁଯୋଗର ଉପଯୋଗୀ ହୋଇପାରେ । ମାତ୍ର କବିତା ଲେଖାହୁଏ କାହିଁକି ? ନିଜର ଅଭିଜ୍ଞତାକୁ ଭାଷାରେ ଉତ୍କୀର୍ଣ୍ଣ କରି କବି ହୁଏତ ଆତ୍ମ-ସନ୍ତୋଷ ପାଏ । ଏହି ଆତ୍ମ-ସନ୍ତୋଷ ଓ ସୂକ୍ଷ୍ମ ଆନନ୍ଦାନୁଭୂତି ପାଇଁ କବି ସଂରଚନାରେ ମନୋନିବେଶ କରିଥାଏ । କବିତାରେ ନିଜ ସତ୍ତାର ପ୍ରତିଫଳନ ଦେଖି କବି ହୁଏ ଆତ୍ମହରା । ମାତ୍ର ପାଠକ ? କବିତା ତା'ର କି ଉପକାର କରେ ? କାହିଁକି ସେ ପଢ଼େ ? କବିତାରୁ ପାଏ କଅଣ ?

କବିତାର ଉପଯୋଗିତା ସମ୍ପର୍କରେ ଅନେ ପ୍ରଶ୍ନବାଚୀ ଉତ୍ଥାନ କରିଥିଲେ ଗ୍ରୀକ୍ ଦାର୍ଶନିକ ସକ୍ରେଟିସ୍ । ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ ସେ କବିତାର ଭୂମିକା ସମ୍ପର୍କରେ ସନ୍ଦେହ ପ୍ରକାଶ କରିଥିଲେ । ତାଙ୍କ ମତରେ, 'କବିତାର ମୋହିନୀଶକ୍ତି ମାରାତ୍ମକ—ତାହା ମଣିଷକୁ ଜ୍ଞାନକ୍ଷେତ୍ରରେ ଭଣ୍ଡିଦିଏ ।' ଅର୍ଥାତ୍ କବି କଳ୍ପନାରେ ଅନେକ କଥା ଗ୍ରହଣ କରେ ଓ ବର୍ଣ୍ଣନା କରେ—କିନ୍ତୁ ସେସବୁର ବାସ୍ତବ ଅଭିଜ୍ଞତା ତା'ର ନଥାଏ । ଉଦାହରଣସ୍ୱରୂପ ସେ ହୋମରଙ୍କ ମହାକାବ୍ୟରେ ଯୁଦ୍ଧବର୍ଣ୍ଣନାକୁ ଉପସ୍ଥାପିତ କରିଛନ୍ତି । ଜଣେ ସେନାପତି ଏହି ଯୁଦ୍ଧବର୍ଣ୍ଣନା ଯଥାଯଥ ଦେଇପାରେ, ମାତ୍ର ଜଣେ କବି ଯୁଦ୍ଧବର୍ଣ୍ଣନା କି ରୂପେ ଦେଇ ପାରିବ ? ବାସ୍ତବ ଠାରୁ ତାହା କଳ୍ପନାର ଅଧିକ ନିକଟବର୍ତ୍ତୀ ହେବ ସିନା : ସେଇଥିପାଇଁ କବି ଭାଷାର ଗୁରୁତ୍ୱରେ ଲୋକଙ୍କୁ ପ୍ରତାରିତ କରିଥାଏ । କବି ଓ ଦାର୍ଶନିକ ପ୍ଲେଟୋ ମଧ୍ୟ କବିତା ସମ୍ପର୍କରେ ଏକ ଗମ୍ଭୀର ତଥା ଗଭୀର ପ୍ରଶ୍ନବାଚୀ ଉତ୍ଥାପନ କରିଥିଲେ । କବିତାର ଭୂମିକା ସ୍ଥିରକରିବା

ଢଗରେ ସେ ତାତ୍ତ୍ୱିକ ଓ ନୈତିକ ବିଶ୍ଳେଷଣକୁ ଉତ୍ସାହିତ କଲେ । ପ୍ଲେଟୋ ତାଙ୍କ 'ରିପବ୍ଲିକ୍'ରେ କବିତାର ପ୍ରବେଶ ପ୍ରତି ନିଷେଧାଦେଶ ଜାରି କରିଥିଲେ । ନିୟମଶୃଙ୍ଖଳାରେ ପରିଚାଳିତ ସୃଷ୍ଟି ଆବେଗାତିଶଯ୍ୟର ବିରୋଧାଚରଣ କରିବା ଉଚିତ । କିନ୍ତୁ ସକ୍ରେଟିସ୍ ଓ ପ୍ଲେଟୋ ଉଭୟ ଏକମତ ଯେ, କବି ଅନୁପ୍ରେରଣା ବଳରେ କବିତା ଲେଖେ, ତେଣୁ ପ୍ରେରଣାଗ୍ରସ୍ତ ଅବସ୍ଥାରେ ସେ ଯାହା ଲେଖେ, ତା' ଈଶ୍ୱରଙ୍କ ମୁଖନିଃସୃତ ବାଣୀ । କବି ନିଜେ ଅଜ୍ଞାନ ହୋଇପାରେ । ନିଜ କବିତା ବୁଝାଇବାକୁ ଅକ୍ଷମ ହୋଇପାରେ, ମାତ୍ର ସେ ଈଶ୍ୱରଙ୍କ ବାର୍ତ୍ତା ପ୍ରଦାନ କରେ । ତେବେ ତ କବି ହେଉଛି ମାନବ-ଜାତିର ବନ୍ଧୁ । ପ୍ଲେଟୋ କବିକୁ ପ୍ରତାରକ ବୋଲି କାହିଁକି କହିଥିଲେ ? ନିଜେ ପ୍ଲେଟୋ ତାହା ସ୍ପଷ୍ଟ କରିପାରି ନାହାନ୍ତି । କିନ୍ତୁ ତାଙ୍କ ଉକ୍ତିସମୂହକୁ ବିଶ୍ଳେଷଣ କରି ପାଶ୍ଚାତ୍ୟ ମନୀଷିଗଣ ଏଇ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, ବାସ୍ତବରେ ପ୍ଲେଟୋ କବିତାର ଉପରି-ଠାଉରିଆ ଅବବୋଧ ସମ୍ପର୍କରେ ଉକ୍ତ ମନ୍ତବ୍ୟ ଦେଇଛନ୍ତି ଯାହା – କବିତାର ପ୍ରକୃତ ଭାବ ଗ୍ରହଣ କଲେ ସମାଜ ଉପକୃତ ହୋଇପାରେ, ଏହା ପ୍ଲେଟୋଙ୍କ ଉକ୍ତିର ପ୍ରତିପାଦ୍ୟ । ଏହି ମନୀଷୀଗଣ ପ୍ଲେଟୋଙ୍କୁ ଜଣେ କ୍ରାନ୍ତିକାରୀ କବିଭାବେ ଗ୍ରହଣ କରିଛନ୍ତି ଓ ସେମାନେ ମତ ଦିଅନ୍ତି ଯେ, ପ୍ଲେଟୋ ଗଦ୍ୟାକାରରେ କବିତା ହିଁ କହିଛନ୍ତି । ତେବେ 'ଆଦର୍ଶ ରାଷ୍ଟ୍ରରୁ କବିମାନଙ୍କୁ ନିର୍ବାସନ ଦେବା ଉଚିତ,—'ରିପବ୍ଲିକ୍'ର ଏହି ଉକ୍ତିରେ ପ୍ଲେଟୋ ଆତ୍ମବିରୋଧ କରିଛନ୍ତି । ଯାହା ହେଲେ ବି ପ୍ଲେଟୋ ହିଁ ପ୍ରଥମେ କବିତାର ଭୂମିକା ସମ୍ପର୍କରେ ଶାଣିତ ପ୍ରଶ୍ନବାଚୀ ଉତ୍ଥାପନ କରିଛନ୍ତି ।

କବି ରଚନା କରେ, ପାଠକ ପଢେ । କବି କ'ଣ ଲେଖେ, ପାଠକ କ'ଣ ଗ୍ରହଣ କରେ—ଏହା କବିତାର ଉପଯୋଗିତାକୁ ସ୍ୱୀକୃତ କରିଥାଏ । ମାତ୍ର କବି କବିତାରେ କ'ଣ ଦେବାକୁ ଚାହିଁଛି, ପାଠକ କ'ଣ ପାଇଛି—ଏହା କବିତାର ସମୁଦାୟ ଆବଶ୍ୟ-କତାକୁ ବୁଝାଏ ନାହିଁ । ଲୋକ କାହିଁକି ସୁନ୍ଦର ଚନ୍ଦ୍ରଟିଏ ଦେଖେ ? ଗୀତଟିଏ ଶୁଣେ, ଫୁଲଟି ଆଡ଼କୁ ଚାହିଁରହେ ? ଏହାର ସମୁଦାୟ ଉତ୍ତର ଯେମିତି କେତୋଟି ଧାଡ଼ିରେ ଦେବା ସମ୍ଭବ ନୁହେଁ, ସେମିତି କବିତାର ଗୁରୁତ୍ୱ କ'ଣ, ଆବଶ୍ୟକତା କ'ଣ, ତା'ର ସମୁଦାୟ ଉତ୍ତର ମଧ୍ୟ କେତୋଟି ଧାଡ଼ିରେ ଦେବା ସମ୍ଭବ ହୋଇ ନପାରେ । କବିତା କବି ମନରୁ ପାଠକ ମନକୁ ଏକ ସତ୍ୟଶୀଳ, ଆବେଗମୟ ସେତୁ—କବି ଓ ପାଠକର ହୃଦୟର ଯୋଗାଯୋଗରେ କବିତାର ଅସ୍ତିତ୍ୱ । କବି କ'ଣ କହିବାକୁ ଚାହିଁଚି, ପାଠକ ପଠନ କରି କି' ଅଭିଜ୍ଞତା ଅର୍ଜିଛି, ଏ ଉଭୟରୁ କବିତାର ଅସ୍ତିତ୍ୱ ଅଧିକ କିଛିକୁ ବୁଝାଏ । ତେବେ କବି ସ୍ୱଉପଲବ୍ଧିକୁ, ଅଭିଜ୍ଞତାକୁ ସମ୍ପ୍ରେଷଣ କରିବାନିମିତ୍ତ କବିତା ରଚନା କରିଥାଏ । ପୁଣି ଅଭିଜ୍ଞତାର କିଛି ଅଂଶ ଶବ୍ଦ ମାଧ୍ୟମରେ ପ୍ରକାଶ ପାଏ, କିଛି ଅଂଶ ଅପ୍ରକାଶ୍ୟ ରହିଯାଏ । ଅଭିଜ୍ଞତା-ଗତ ଅନେକ ଭାବ ଓ ରୂପକୁ ଅନୁଭବ ମାଧ୍ୟମରେ ଧରି ହୋଇଥାଏ ସିନା, ଶବ୍ଦରେ ସେଗୁଡ଼ିକୁ ଧରିହୁଏ ନାହିଁ । ଏହି ତତ୍ତ୍ୱଟି ସତ୍‌କବି

ମାନେ ହୃଦୟଙ୍ଗମ କରି ଥାଆନ୍ତି । କବିତାର ସଂରଚନା ବ୍ୟାପାରଟି ଅନେକ ଜଟିଳତାରେ ପୂର୍ଣ୍ଣ । ଏହି ସଂରଚନା କର୍ମର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ପଥରେ ମଧ୍ୟ ଅନ୍ତରାୟ ରହିଛି । କବି ଯାହା କରିବାକୁ ଚାହେଁ, ଯେଉଁ ଅଭିଜ୍ଞତାକୁ ପ୍ରକାଶ କରିବାକୁ ଅସ୍ଥିର ହୁଏ, ବାଟ ଖୋଜୁଥାଏ, ପାଉ ନଥାଏ, ଠିକ୍ ସେଇ ବାଟଟି, ଯଥାର୍ଥ ବାଟଟି ପାଇବାକୁ ଛଟପଟ ହେଉଥାଏ, ମନୋଭାବକୁ ଯଥାର୍ଥ ଉଚ୍ଚାରଣ କରିପାରୁଥିବା ଶବ୍ଦମାନଙ୍କୁ ନିବିଷ୍ଟ ତୀକ୍ଷ୍ଣ ଦୃଷ୍ଟିରେ ଖୋଜିଲାଗିଥାଏ । ଯେଉଁ ଭାବନା ଓ ଅଭିଜ୍ଞତା କବିକୁ ଅକ୍ତିଆର କରିଥାଏ, ବୋଝଭଳି ତା'ର ମନ ଓ ଚେତନାରେ ସବାର୍ ହୋଇଥାଏ, ତାକୁ ପ୍ରକାଶ କରିଦେଲେ କବି ଆଶ୍ୱସ୍ତ ହୁଏ । ମାତ୍ର ପ୍ରକାଶରେ ତା'ର ଅଭିଜ୍ଞତା ଭିନ୍ନ ଓ ଖର୍ବ ହୋଇଯାଇଥିବାର ଜାଣିଲେ ସେ ଯଥାର୍ଥ ଆତ୍ମସନ୍ତୋଷ ପାଇପାରେ ନାହିଁ । ପ୍ରକାଶ ଜନିତ ଅସ୍ଥିରତାର ଉପଶମ ଘଟିଥାଏ, ହେଲେ ଯଥାର୍ଥ ଆଶ୍ୱସ୍ତି ମିଳେ ନାହିଁ । ଯେତେ ଅବା ସୁନ୍ଦର କାରୁକଳାପୂର୍ଣ୍ଣ କାଚମୂର୍ତ୍ତିର ବୋଝଟିଏ—ଯାହାକୁ ମୁଣ୍ଡରୁ ତଳକୁ ଥୋଇସାରି ବୋଝବୁହାଳି ଦେଖିଲା ଯେ, ସବୁତକ ମୂର୍ତ୍ତି ଭାଙ୍ଗି ଯାଇଛି, ଅକାରଣ ହୋଇଯାଇଛି । ସେ ବୋଝରୁ, ବନ୍ଧନରୁ ଅବ୍ୟାହତି ପାଇବାର ଆନନ୍ଦ ପରିବର୍ତ୍ତେ ଅଶାନ୍ତିରେ ସନ୍ତୁଳିହୁଏ । ଅଭିବ୍ୟକ୍ତି ସାର୍ଥକ ନହେଲେ, ଚେତନା ଓ ଅନୁଭବର ଅନୁରୂପ ନହେଲେ କବି ଆଶ୍ୱସ୍ତ ହୋଇପାରେ ନାହିଁ ।

କବିତାର ସଫଳତା ସମ୍ପର୍କରେ କବି ଜୋର୍ ଦେଇ କିଛି କହିପାରିବ ନାହିଁ । କାରଣ ସଂରଚନାକର୍ମଟି ଅଂଶତଃ ମନୁଷ୍ୟକୃତ, ଅଂଶତଃ ଦୈବକରୁଣାର ଦାନ । କବିତାର ଚମକପ୍ରଦ ଅଂଶଗୁଡ଼ିକ କବିର ଅଧ୍ୟୟନରୁ, ଆଶୈଶବ ତାହାର ଶାଣିତ ଉପଲବ୍ଧିରୁ ସଞ୍ଜାତ । କବିତାର କିଛି ଅଂଶ କବିର ସଚେତନତା, ଅଧ୍ୟୟନ ଓ ଅନୁସନ୍ଧାନରୁ ସଂରଚିତ, ପୁଣି କିଛି ଅଂଶ ସ୍ୱୟଂ ପ୍ରକଟିତ—ଏଠାରେ ଶବ୍ଦମାନେ ଝରିସି ଆସିଥାନ୍ତି ବଳେ ବଳେ—କବିକୁ ଅପରିଚିତ ଲାଗନ୍ତି । କିନ୍ତୁ ସଜ୍ଜିତ ହୋଇଯାଆନ୍ତି କାଗଜ ଉପରେ କାଳି ମାଧ୍ୟମରେ । ତେଣୁ କବିତା ସଂରଚନାରେ ଏକ ଅପରିକଳ୍ପନୀୟ ଶକ୍ତିର ଉଦ୍‌ଘୋଷଣା ବର୍ତ୍ତମାନ । ଏହି କର୍ମକୁ ବାସ୍ତବରେ ଶବ୍ଦ, ଭାଷା ଓ ତତ୍ତ୍ୱ ମାଧ୍ୟମରେ ସମ୍ପୂର୍ଣ୍ଣ ପ୍ରକଟିତ କରାଇ ନ ପାରିବାରେ ଏହାର ବିଶେଷତ୍ୱ ନିହିତ । ଯେତେ କହିଲେ କ'ଣ ଯେମିତି ବାକି ରହିଯିବ । ଠିକ୍ ସେମିତି କବିତାର ଭୂମିକା—ତା'ର ପ୍ରୟୋଜନୀୟତାକୁ ଯେତେ ବିଶ୍ଳେଷଣ ଓ ବ୍ୟବଚ୍ଛେଦ କଲେ ମଧ୍ୟ ତାହା ବଳେଇ ପଡ଼େ, ଆମେ ତାକୁ ମାପି ପାରୁ ନାହିଁ ।

କବିତା କେବଳ ତର୍କପାଇଁ ବା ସମ୍ପୂର୍ଣ୍ଣ ବୁଝାମଣା ପାଇଁ ଲେଖା ହୋଇ ନଥାଏ—ଏହାର ଅବବୋଧ ସୂଚନାତ୍ମକ । ପାଠକର ଗ୍ରହଣଶୀଳତାର ଏଠାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଚି । କେହି ପାଠକ କବିତାକୁ ଗ୍ରହଣ କରି ନପାରି ଅସନ୍ତୋଷ ପ୍ରକାଶ କଲାବେଳେ, ଆଉ କେହି ପାଠକ, ଯେ କି ଆପଣାର ଉପଲବ୍ଧିକୁ ଆଦୌ ପ୍ରକାଶ କରି

ପାରୁ ନଥାଏ, ହୁଏତ କବିତାର ଭାବକୁ ଗମ୍ଭୀରଭାବେ ଆପଣାର କରିପାରି ଥାଏ । ବହୁ ଶ୍ରମ ଓ ମାନସିକ ଅଭିନିବେଶରେ କବି କବିତାଟିଏ ରଚନା କରେ । ତେଣୁ କବିତାଟିକୁ ଗ୍ରହଣ କରିବାବେଳେ ପାଠକର ଆନ୍ତରିକତା ଓ ଅଭିନିବେଶ ଅପରିହାର୍ଯ୍ୟ ହୋଇଥାଏ । କବିତା ସମ୍ପର୍କରେ ଆଦୌ ରୁଚି ଓ ଆଗ୍ରହ ନଥିବା କୌଣସି ପାଠକ କୌଣସି ଗୋଟିଏ ଉତ୍କୃଷ୍ଟ କବିତା ଦ୍ୱାରା ପ୍ରଭାବିତ ହୋଇପାରିବା ସମ୍ଭବ ନୁହେଁ । କବିତାର ଭାବଗ୍ରହଣ ପାଇଁ ପାଠକୀୟ ପ୍ରସ୍ତୁତିର ଗୁରୁତ୍ୱ ରହିଚି । କବିତା ସହ ପାଠକ ଚିତ୍ତବୃତ୍ତିର ଏକ ଅନୁକୂଳ ଯୋଗାଯୋଗ ସ୍ଥାପିତ ହେବା ଆବଶ୍ୟକ । କିନ୍ତୁ ଖୁବ୍ କମ୍ ପାଠକ ଏହି ଯୋଗାଯୋଗ ରକ୍ଷା କରନ୍ତି, ତେଣୁ କବିତା ପଠନର ଅଭିଜ୍ଞତା ଓ ଆନନ୍ଦ ସହ ଏଇ-ମାନଙ୍କର ପରିଚୟ ଘଟିଥାଏ । କବିତା ସ୍ୱଭାବତଃ ପ୍ରସ୍ତୁତ ପାଠକ ସମକ୍ଷରେ ହିଁ ନିଜ ହୃଦୟକୁ ଉନ୍ମୋଚିତ କରିଥାଏ ବା ଅନ୍ୟ କଥାରେ ରସଗ୍ରାହୀ ପାଠକ ହିଁ କବିତା-ସୁନ୍ଦରୀର ଅବଗୁଣ୍ଠନ ଖୋଲିବାକୁ ସମର୍ଥ ହୋଇଥାଏ । ସୁତରାଂ କବିତା ଲୋକପ୍ରିୟତା ହାସଲ୍ କରି ନପାରିବା ତା'ର କଳାଗତ ଅଯୋଗ୍ୟତା ନୁହେଁ । କବିତାର ଉପଯୋଗିତାର ସ୍ୱୀକୃତିକରଣ ନିମିତ୍ତ କବି ଓ ପାଠକ ଉଭୟେ ଦାୟୀ ହୁଅନ୍ତି । ଜୀବନରୁ କବି ଯାହା ପାଏ, ତାହା ଅପରକୁ ନିବେଦିତ କରିବାପାଇଁ ସେ କବିତା ଲେଖେ—ଅନ୍ୟ ପାଖରେ ନିଜକୁ ପହଞ୍ଚାଇବା ଅଭିଳାଷ ତା'ର ରହିଥାଏ । କିନ୍ତୁ ଏଥିପାଇଁ କବିର କୁଶଳତା ସହ ପାଠକୀୟ ପ୍ରସ୍ତୁତି ମଧ୍ୟ ଅପରିହାର୍ଯ୍ୟ ।

ପାଠକର ଚେତନା ଓ ଉପଲବ୍ଧି ପ୍ରତି, ବ୍ୟକ୍ତିସତ୍ତାପ୍ରତି କବିତାର ଆବେଦନ କ୍ରମଶଃ ଏକ ବୃହତ୍ତର ଆବେଦନର ରୂପନିଏ ଓ ଜାତିକୁ ଉଦ୍‌ବୁଦ୍ଧ କରିଥାଏ । ଏକଥା ମୁଁ କହିବାକୁ ଚାହେଁନା ଯେ, କବିତାର ଏକମାତ୍ର ଲକ୍ଷ୍ୟ ହେଉଛି ଦେଶ ଓ ଜାତିର ଗତିପଥରେ ପରିବର୍ତ୍ତନ ଆଣିବା । କୌଣସି କବି ସଚେତନଭାବେ ଏହି ଲକ୍ଷ୍ୟରେ କବିତା ଲେଖେନାହିଁ । ଏହି ଲକ୍ଷ୍ୟରେ ଯେବେ କିଛି ଲେଖାଯାଏ, ତାହା ସ୍ଲୋଗାନରେ ପରିଣତ ହୁଏ, କବିତା ହୁଏ ନାହିଁ । ଅତୀତ ଓ ବର୍ତ୍ତମାନକୁ ନିରୀକ୍ଷଣ କଲେ ଜଣାଯାଏ ଯେ, କବିତା ମୂଲ୍ୟବୋଧରେ ପରିବର୍ତ୍ତନ ଘଟାଇଥାଏ । ପ୍ରଚାରମୂଳକ ନହୋଇ, ତାହା ସମାଜକୁ ଉତ୍ତମ ମୂଲ୍ୟବୋଧ ସହ ପରିଚିତ କରାଏ, ଫଳତଃ ସମାଜରେ ମୂଲ୍ୟବୋଧର ପରିବର୍ତ୍ତନ ଘଟେ, ସମାଜ ପରିବର୍ତ୍ତିତ ହୁଏ—ଅଧଃପତନରୁ ରକ୍ଷାପାଏ । ଦେଶ ଓ ଜାତିର ନିର୍ମାଣରେ କବିତା ଏହିରୂପେହିଁ ସାହାଯ୍ୟ କରିଥାଏ—ନୂତନ ଯୁଗ ଗଠନ ନିମିତ୍ତ ପଥ ପ୍ରଦର୍ଶନ କରିଥାଏ ।

ଏକଥା ସାଧାରଣଭାବେ ସ୍ପଷ୍ଟ ଯେ, କବିତା ପାଠକକୁ ଆନନ୍ଦ ପ୍ରଦାନ କରେ । ତା'ର ଆତ୍ମବିଶ୍ୱାସକୁ ଦୃଢ଼ୀଭୂତ କରେ, ସଚେତନତାକୁ ତୀବ୍ର ଉଦ୍‌ବୋଧନ ଶୁଣାଏ । ସମାଜ ଓ ଜାତିର ଗୌରବଗାନ କରେ, ସମାଜକୁ ନିର୍ଦ୍ଦେଶ ଦିଏ । ସତ୍ୟ ନିକଟରେ ପହଞ୍ଚିବା ନିମିତ୍ତ ମଣିଷପାଇଁ ଯେଉଁ କେତୋଟି ମାର୍ଗ ରହିଛି, କବିତା ତା' ଭିତରୁ ଗୋଟିଏ ।

ସତ୍ୟକୁ ଧରିବାପାଇଁ ଏହା ନୂତନ ଏକ ମାର୍ଗ ସ୍ୱରୂପ କାର୍ଯ୍ୟ କରିଥାଏ । ଜୀବନ ପ୍ରତି, ପରିପାର୍ଶ୍ୱ ପ୍ରତି, ସୌନ୍ଦର୍ଯ୍ୟାନୁଭୂତି ପ୍ରତି ମଣିଷର ସଚେତନତାକୁ କବିତା ବୃଦ୍ଧି କରିଥାଏ । ଦେଶକାଳ ଭେଦରେ କବିତାର ଉପଯୋଗିତା ଭିନ୍ନ ଭିନ୍ନ ହୋଇଥାଏ । ଓଡ଼ିଆ ସାହିତ୍ୟକୁ ଲକ୍ଷ୍ୟକଲେ ଜଣାଯାଏ ଯେ, ବିଭିନ୍ନ ଯୁଗରେ କବିତା ବିଭିନ୍ନ ଭୂମିକାରେ ଅବତୀର୍ଣ୍ଣ ହୋଇ ମଣିଷର ମାନସିକତାକୁ ଉପଯୁକ୍ତ ଖୋରାକ୍ ଯୋଗାଇଛି । କେବେ ପତନୋନ୍ମୁଖୀ ସମାଜକୁ ଅଧ୍ୟାତ୍ମଦୀକ୍ଷା ଦେବାରେ ସମର୍ଥ ହୋଇଛି ତ କେବେ ରାଜାରାଜୁଡ଼ାଙ୍କୁ ଇନ୍ଦ୍ରିୟାଶ୍ରୟୀ ରସବୋଧର ଆନନ୍ଦ ଦାନ କରିଛି, ପୁଣି କେବେ ପ୍ରେମ ଓ ସମର୍ପଣ—ଭାବର ମଧୁର ଉନ୍ମୋଚନରେ ରସବନ୍ତ ହୋଇପାରିଛି । ପୁରାଣ ଯୁଗ (ମହାଭାରତ ଓ ଭାଗବତ), ରୀତି ସାହିତ୍ୟ (କାଳ୍ପନିକ କାବ୍ୟସମ୍ଭାର) ଓ ବୈଷ୍ଣବ କାବ୍ୟ କବିତା (ରସକଲ୍ଲୋଳ, ବିଦଗ୍ଧ ଚିନ୍ତାମଣି ଠାରୁ ଚମ୍ପୂ ଓ ପଦ୍ୟାବଳୀ ପର୍ଯ୍ୟନ୍ତ) ସମୂହକୁ ପର୍ଯ୍ୟାଲୋଚନା କଲେ କାବ୍ୟକବିତାର ଉପରୋକ୍ତ ଭୂମିକା ସମ୍ପାଦନର ଯଥାର୍ଥତା ବୁଝିହୁଏ । ଅତୀତରେ ସମସ୍ତ ଥିଲା, ଯେତେବେଳେ ରାଜାରାଜୁଡ଼ାଙ୍କ ବରାଦ ଅନୁଯାୟୀ କବିଏ କବିତା ରଚନା କରୁଥିଲେ । ଏହି ବର୍ଣ୍ଣନାତ୍ମକ କବିତାରେ କବି-ଆତ୍ମାର ପରିଚୟ ଅତ୍ୟନ୍ତ କ୍ଷୀଣ ଭାବରେ ଉପସ୍ଥିତ ଥିଲା । ମାତ୍ର ଆଧୁନିକ ଯୁଗ ଅନ୍ୟ ସମୟଗୁଡ଼ିକଠାରୁ ଭିନ୍ନ—ଏହି ଯୁଗରେ ସ୍ୱାର୍ଥସଂଘର୍ଷ, ଯଶୋଲିପ୍ସା ଓ ଅହଙ୍କାର ସାନ୍ଦ୍ରତର ହୋଇଛି । ମଣିଷ ଜୀବନ ବିଷମ ରୂପ ଧାରଣ କରିଛି । ଆଜିର କବି ଅନ୍ୟର ବରାଦରେ କବିତା ଲେଖିବା କଥାକୁ ହାସ୍ୟାସ୍ପଦ ମନେକରେ । ସେ ଯାହା ଲେଖେ, ତହିଁରେ ତା'ର ବ୍ୟକ୍ତିତ୍ୱର ପୂର୍ଣ୍ଣ ପ୍ରତିଫଳନ ଘଟିଥାଏ । ହୃଦୟର ସ୍ୱୀକାର ବିନା ସେ କବିତା ଲେଖି ନପାରେ । ପୁନଶ୍ଚ ଏ ଯୁଗର କବି ସଂରଚନା-କ୍ଷେତ୍ରରେ ବିଷମ ସମସ୍ୟାର ସମ୍ମୁଖୀନ ହୁଏ । କାରଣ ତାହାର ସମ୍ଭାବ୍ୟ ପାଠକସମାଜ ନିରକ୍ଷର । ଶିକ୍ଷିତଗୋଷ୍ଠୀଙ୍କର ଦେଶୀ ସାହିତ୍ୟଠାରୁ ବିଦେଶୀ ସାହିତ୍ୟ ପ୍ରତି ଆଗ୍ରହ ବେଶୀ । ସେମାନେ ପଢ଼ିବସିଲେ, ଆଲୋଚନା କରି ବସିଲେ କବିତାକୁ ବିଦେଶୀ ମାନଦଣ୍ଡରେ ହିଁ ମାପନ୍ତି । କବିତାଟି ସମାଲୋଚନା କ୍ଷେତ୍ରରେ ବିଦେଶୀ ଦୃଷ୍ଟିକୋଣରୁ ବିଶ୍ଳେଷିତ ହୁଏ । କବି ବିଚରାଟି ଭାରତବର୍ଷରେ ବା ଓଡ଼ିଶାରେ ଜନ୍ମ ହୋଇଥାଏ, ସଂସ୍କାର ପ୍ରାପ୍ତ ହୋଇଥାଏ ଏହି ଭାରତୀୟ ଭୂମିରେ, ଲେଖେ ଭାରତୀୟ ଭାଷାରେ, ଚିନ୍ତା ଓ ଚେତନାରେ ଥାଏ ଭାରତର ପ୍ରାଣସ୍ପନ୍ଦନ, କିନ୍ତୁ ତା' କବିତାର ବିଚାରର ମାନଦଣ୍ଡ ହୁଏ ବିଦେଶୀ, ବିଶେଷତଃ ଇଂରାଜୀ । ତେଣୁ ଏଭଳି ସମୟରେ କବି ଯେ ତଥାପି ସଂରଚନାକର୍ମରେ ବ୍ୟାପୃତ, ଯାହା ବଡ଼ ଆଶ୍ଚର୍ଯ୍ୟ ଘଟଣା କ'ଣ ଥାଇପାରେ ?

ଆଜିର ପରିସ୍ଥିତିରେ କବିତା ଆମକୁ ବିଶ୍ୱାସ ଦିଏ । ଚିରନ୍ତନ ମାନବିକ ମୂଲ୍ୟବୋଧରେ ଭରସା ରଖିବାକୁ ପ୍ରବର୍ତ୍ତାଏ । ଆଧୁନିକ ଜୀବନର ନିଃସଙ୍ଗତା, ଅନ୍ତଃସାରଶୂନ୍ୟତା ସହ ମଣିଷକୁ ପରିଚିତ କରାଇ ସେଥିରୁ ରକ୍ଷାପାଇବା ନିମିତ୍ତ ଆଶାନ୍ୱିତ

କରିଥାଏ । କାଳ ଓ କାଳାତୀତର ପ୍ରଭେଦ ବୁଝିବାକୁ ସମର୍ଥ କରାଏ । ବ୍ୟକ୍ତି-ସତ୍ତା ନିମିତ୍ତମାତ୍ର—ଏହା ବିଶ୍ୱସତ୍ତାର କରୁଣାରୁ ସଂଜାତ, ଏହି ଉପଲବ୍‌ଧି କବିତାହିଁ ଦେଇ-ପାରେ । ନିଜଠୁ ଅଧିକ ଉଚ୍ଚତର ଏକ ଶକ୍ତିସହ ମାନବଆତ୍ମାର ନିବିଡ଼ ଯୋଗାଯୋଗର ସମ୍ଭାବନାମୟ ବାଣୀ କବିତାହିଁ ଉଚ୍ଚାରଣ କରିପାରେ ।

କବିତାଠାରୁ ଯାହା ମିଳେ, କବିତାର ସମ୍ଭାବନା ତା'ଠୁ ଅନେକ ବେଶୀ । ବିଭିନ୍ନ ଯୁଗରେ ଏହି ସମ୍ଭାବନାର କିଛି କିଛି ଅଂଶ ମାତ୍ର ସତ୍ୟରେ ପରିଣତ ହୋଇ ପାରିଛି । କବିତା ପ୍ରତି ପାଠକର ଯାହା ଦାବୀ, ସେ ଦାବୀର କିଛି କିଛି ଅଂଶ ଭିନ୍ନ ଭିନ୍ନ ସ୍ଥାନ ଓ ସମୟର ପରିପ୍ରେକ୍ଷୀରେ କବିତା ପୂରଣ କରିପାରିଛି । ଏ ଯାବତ୍ କବିତା ଯେଉଁ ଭୂମିକା ସମ୍ପାଦନ କରିଛି, କବିତାର ସମ୍ଭାବନା ତା'ଠୁ ବହୁ ଅଧିକତର ଉଚ୍ଚତା ଓ ପ୍ରଶସ୍ତତାକୁ ନିର୍ଦ୍ଦେଶ କରେ । ମାନବାତ୍ମାର ବ୍ୟାକୁଳତା, ସୁମନାସ ଓ କରୁଣାକୁ ପ୍ରକାଶ କରି କବିତା ମାନବକୁ ଧନ୍ୟ କରିଛି । ସଂବିତ୍ତିସଂପନ୍ନ ପାଠକ କବିତାରାଜ୍ୟକୁ ପ୍ରବେଶ କଲାବେଳେ ବିଶ୍ୱାସ ରଖିଥାଏ ଯେ, କବିତା ତା' ସମକ୍ଷରେ କିଛି ଗୋପନୀୟତା ଉନ୍ମୋଚନ କରିବ—ସମ୍ଭାବନାମୟ କାଳ ଓ ପରିବେଶର ବାର୍ତ୍ତା ଶୁଣାଇବ । ମଣିଷ ଜୀବନ ଓ ଜଗତର ଅଗଣିତ ସୂକ୍ଷ୍ମସ୍ପନ୍ଦନର ରୂପକାର କବି, କାଳର ଅଧୀନ ମଣିଷକୁ କାଳଜୟୀ ଉପଲବ୍‌ଧିରେ ଉପନୀତ କରାଇପାରେ । ଯଥାର୍ଥରେ ସମୟର ସବୁକିଛିକୁ ଭାଙ୍ଗିଦେବାର, କବଳିତ କରିନେବାର ସ୍ୱଗୁଣ ଓ ସ୍ୱଭାବ ପ୍ରତିପକ୍ଷରେ କବିତା ସ୍ପର୍ଦ୍ଧା କରିଥାଏ । ସମୟକୁ ଧରିରଖେ କବିତା । ମୁହୂର୍ତ୍ତିକୁ ଶବ୍ଦରେ ମୂର୍ତ୍ତି କରିଥାଏ ।

ତଥାପି, କବିତା କ'ଣ ତା'ର ସମ୍ଭାବନାର ଶୀର୍ଷରେ ପହଞ୍ଚି ପାରିଛି ? କବିତା କିଛି କିଛି ଭୂମିକା ସମ୍ପାଦନ କରିଛି, କିଛି କିଛି ତା'ର ସମ୍ଭାବନାକୁ ସତ୍ୟରେ ପରିଣତ କରିଛି । ହେଲେ, କିଛି ସମ୍ଭାବନା ସତ୍ୟରେ ପରିଣତ ହେବାକୁ ଆହୁରି ହୁଏତ ବାକି ଅଛି । ତେଣୁ 'କବିତା କାହିଁକି ?' ଏ ପ୍ରଶ୍ନର ସମୁଦାୟ ଉତ୍ତର ଏକ ନିର୍ଦ୍ଦିଷ୍ଟ ସ୍ଥାନ ଓ କାଳର ପରିପ୍ରେକ୍ଷୀରେ ପ୍ରସ୍ତୁତ କରିପାରିବା ସମ୍ଭବ ହେବ ନାହିଁ କଦାପି ।

(ବିଶ୍ୱଭାରତୀ ଓଡ଼ିଆ ବିଭାଗଦ୍ୱାରା ଆୟୋଜିତ 'କବିତା କାହିଁକି' ପାଠଚକ୍ରରେ ପଠିତ ଓ ପ୍ରବନ୍ଧାବଳୀରେ ପ୍ରକାଶିତ ।)

# କବିତାର ସୁବର୍ଣ୍ଣ ଗୁଣ

ଶକ୍ତିଶାଳୀ ଅନୁଭବ କଳ୍ପନାର ସାହାଯ୍ୟ ନେଇ ଯେଉଁ ସତ୍ୟକୁ ମୂର୍ତ୍ତି କରେ, ତାହାହିଁ କବିତା । କବିତା ମାଧ୍ୟମରେ ଅନୁରଞ୍ଜିତ ସତ୍ୟାନୁଭୂତି କବିଠାରୁ ପାଠକପ୍ରତି ସଂପ୍ରେଷିତ ହୋଇଥାଏ । କବିତାର ଯୋଗାଯୋଗ-ଶକ୍ତି ବା ଆବେଦନ-ଶକ୍ତି ଅନ୍ୟ ଅର୍ଥରେ ସଂପ୍ରେଷଣ-ଶକ୍ତି ପକ୍ଷରେ ଉପଯୁକ୍ତ ଶବ୍ଦ-ଚୟନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଶବ୍ଦ-ଚୟନ ଓ ସଂଯୋଜନର କେତେକାଂଶ କବିର ସଚେତନ ପ୍ରଚେଷ୍ଟାରୁ ସମ୍ଭବ ହୋଇଥାଏ; ଏବଂ ବାକୀ ଅଂଶତକ କବିର ସହଜ, ସଂସ୍କାରବନ୍ତ ଅବଚେତନରୁ ସଂଘଟିତ ହୋଇଥାଏ । ଶବ୍ଦଶକ୍ତିକୁ ଚିହ୍ନି ଅନୁପାତଜ୍ଞାନ ସାହାଯ୍ୟରେ ତାହାର ସଂଯୋଜନା କବିତାର ମୂଳଲକ୍ଷ୍ୟ । ଏହି ଲକ୍ଷ୍ୟ ସାଧନ କରି କବି ତା'ର ଆବେଗ ଓ ଆନନ୍ଦାନୁଭୂତିକୁ ସଫଳ-ଭାବେ ପ୍ରକାଶ କରେ ଏବଂ ତଦ୍ୱାରା ଅଧିକ ଆନନ୍ଦ ଉପଲବ୍‌ଧି କରେ । ବୋଧହୁଏ ମନର ଆନନ୍ଦ ଓ ଆବେଗକୁ ପ୍ରକାଶ କରି ଅଧିକ ଆନନ୍ଦ ଲାଭକରିବା ପାଇଁ ପ୍ରଥମ କବିତାଟି ସରଚିତ ହୋଇଥିଲା । ରଚନା ମଧ୍ୟରେ ନିଜର ଅଭିଜ୍ଞତା ଓ ଉପଲବ୍‌ଧିକୁ ସଫଳଭାବେ ସଂପ୍ରେଷିତ କରିପାରିଲେ କବି ଅପୂର୍ବ ଆନନ୍ଦ ଲାଭ କରିଥାଏ । ନଚେତ୍‌ କବିତାଲେଖିବା ଭଳି ଏକ କଷ୍ଟକର ସାଧନା ନିମନ୍ତେ ସେ କାହିଁକି ନିଜକୁ ଉତ୍ସର୍ଗ କରି ଆସୁଥାଆନ୍ତା ?

ଏହି ପ୍ରକାଶ କରିବାର କର୍ମ ସାର୍ଥକ ହୁଏ, ଯେତେବେଳେ କବି ତା'ର ଚିନ୍ତା ଓ ଅନୁଭୂତିକୁ ଶବ୍ଦ-ମାଧ୍ୟମରେ ନିଖୁଣ ଓ ଜୀବନ୍ତଭାବେ ଆଙ୍କିଦିଏ । ନିଖୁଣ ଓ ଜୀବନ୍ତଭାବେ ଆଙ୍କିବା ପ୍ରକ୍ରିୟାଟି ସର୍ବଦା ଗଭୀର ଆନ୍ତରିକତା ଓ ଆତ୍ମୋତ୍ସର୍ଗର ଅପେକ୍ଷା ରଖେ । କବିତାରେ ସଂପ୍ରେଷିତ ଆନ୍ତରିକତା ହିଁ ଗୁଣଗ୍ରାହୀ ପାଠକର ଅନ୍ତର ସହିତ ସଂଯୁକ୍ତ ହୁଏ । କବିତାର ଗୁଣ ଆଶ୍ଚର୍ଯ୍ୟଜନକ । ତାହା ମଣିଷର ଚିନ୍ତା ଓ ଅନୁଭୂତିକୁ ଶାଣିତ କରେ । ଅନୁପଲବ୍‌ଧ ପରିବେଶ ଓ ଘଟଣାକୁ ଚମତ୍କାରଭାବେ ଉପଲବ୍‌ଧ କରାଏ । ଜୀବନ ପ୍ରତି ସ୍ନେହଶ୍ରଦ୍ଧାର ଉଦ୍ରେକ କରାଏ । ଅହରହ ଆଶଙ୍କା, ଭୟ, ବିପଦ ଓ ଗୋପନ ଶଙ୍କାରେ ଥରହର ହେଉଥିବା ମଣିଷକୁ ସାନ୍ତ୍ୱନା ଦିଏ । ଅସଚେତନତାକୁ ଦୂରକରେ । ଜଡ଼-ବାଦର କରାଳ ଗ୍ରାସରୁ ମୁକ୍ତକରି ମାନବିକତାକୁ ପ୍ରାଣୋଚ୍ଛଳ କରେ । ସତ୍ୟ ଓ ଚିରନ୍ତନ ପ୍ରତି ମାନବାତ୍ମାକୁ ଉଦ୍‌ବୁଦ୍ଧ କରେ । ପୁରାଣ ଧର୍ମକୁ ସ୍ୱୀକାର କରିବା ସଙ୍ଗେ ସଙ୍ଗେ ସଂସ୍କୃତିର ଗନ୍ତାଘରୁ ମଣିମୁକ୍ତା ସଂଗ୍ରହକରି ପରିପୁଷ୍ଟ ହୁଏ । କବିତାର ଏତାଦୃଶ ସଂପ୍ରେଷଣ-ଶକ୍ତି ସବଳତର ହୁଏ ଆନ୍ତରିକ ସରଳତାର ପରାକାଷ୍ଠାରେ ।

. କବିତା ଗୋଟିଏ ସୃଷ୍ଟି, ସରଳତା ତା'ର ଜୀବନୀଶକ୍ତି । କବିର ଉର୍ବର ଅନ୍ତର ଓ ସଚେତନ ଉପଲବ୍ଧିର ଭୂମିରେ ତାହା ପରିବର୍ଦ୍ଧିତ ହୋଇଥାଏ । ଯେଉଁ କବିତାରେ କବି-ଅନ୍ତରର ନିମଜ୍ଜନ ଯେତେ ଅଧିକ, ତାହା ସେତିକ ସରଳ ଓ ଉଦ୍‌ବୋଧନକ୍ଷମ । ଭାବର ପରିଚ୍ଛନ୍ନତା ଓ ନିଷ୍କପଟ ପ୍ରକାଶଭଙ୍ଗୀ ହିଁ ସରଳତାର ଆଧାର । ସରଳତା କବିତାର ଏକ ଅଭିଲଷିତ ସୁବର୍ଣ୍ଣ ଗୁଣ ।

ବିଂଶ ଶତକର ଉତ୍ତରାର୍ଦ୍ଧରେ ଆଜି କବିତାରାଜ୍ୟକୁ ନିରୀକ୍ଷଣ କଲେ ଜଣାଯାଏ— କବିତା ତା'ର ମୂଳକୁ ଫେରିଯାଉଛି, ଅନ୍ତରିକତା ଉପରେ ଗୁରୁତ୍ୱ ଆରୋପ କରୁଛି, ସରଳତା ଦିଗକୁ ପ୍ରଧାବିତ ହେଉଛି । ସରଳତା, ଆନ୍ତରିକତା, କବିତାର ସଫଳ ସଂପ୍ରେଷଣ ନିମନ୍ତେ ଅପରିହାର୍ଯ୍ୟ—ଏ ସଂପର୍କରେ କବି ଆଜି ନିଃସନ୍ଦେହ । ଅବଶ୍ୟ ସମୟ ସମୟରେ କବି ପଥଭ୍ରଷ୍ଟ ହେଉଛି । ଔପଚାରିକତାରେ ସାମୟିକ ଆସ୍ଥାବାନ୍ ହୋଇଛି । ଆଭରଣର ଚମତ୍କାରିତାରେ କବିତାର ମୂଲ୍ୟପ୍ରତିଷ୍ଠା କରିବାକୁ ସଚେଷ୍ଟ ହୋଇଛି କବି । କେତେ ଯେ ପରୀକ୍ଷା ନିରୀକ୍ଷା ଭିତର ଦେଇ ଗତିକରିଛି, ତଥ୍ୟ ଓ ତତ୍ତ୍ୱର ବ୍ୟାଖ୍ୟା କରିଛି, ତା'ର ଇୟତ୍ତା ନାହିଁ । ନିଜ ରଚନାର କୈଫିୟତ୍ ଦେବାକୁ ଶତମୁଖ ହୋଇଛି । ତା'ର ସୃଷ୍ଟିପ୍ରକ୍ରିୟା ଓ ଦୃଷ୍ଟିଭଙ୍ଗୀର ବୈଭିନ୍ନ୍ୟକୁ ସମୀକ୍ଷା କରି ଆଲୋଚକଗଣ ନାନା ସାହିତ୍ୟକବାଦ (isms)ର ଅବତାରଣା କରିଛନ୍ତି । ଉପଯୁକ୍ତ ଯୁକ୍ତି ସାହାଯ୍ୟରେ ଏ ସବୁର ସୀମାରେଖା ଚିହ୍ନିତ କରିବାକୁ ଚେଷ୍ଟା କରିଛନ୍ତି । ତଥାପି ନିଜର ଅସାମର୍ଥ୍ୟକୁ ହୃଦୟଙ୍ଗମ କରିଛନ୍ତି, ବୁଝିଛନ୍ତି ଯେ, କୌଣସି ସାହିତ୍ୟ-ତତ୍ତ୍ୱକୁ ବା ସୃଜନଶୀଳ ଗୁଣକୁ ସ୍ଥିର ନିର୍ଦ୍ଦିଷ୍ଟ ସୀମା-ସରହଦ ମଧ୍ୟରେ ଚିରକାଳକୁ ବାନ୍ଧିରଖାଯାଇ ପାରିବ ନାହିଁ । ଅଦ୍ଭୁତ ଏ କବିତାର ଶକ୍ତି, ଆଶ୍ଚର୍ଯ୍ୟ ତା'ର ସଫଳତା, ଯାହା ସକଳ ସାହିତ୍ୟକବାଦ (ism)ର ଊର୍ଦ୍ଧ୍ୱରେ ହିଁ ବିରାଜିତ ।

କବି-ହୃଦୟଠାରୁ ପାଠକ-ହୃଦୟ ପର୍ଯ୍ୟନ୍ତ ସଂସ୍ଥାପିତ ଏକ ସତ୍ୟନିଷ୍ଠ ଭାବମୟ ସେତୁ ହେଉଛି କବିତା । ଏହି ସେତୁର ସଂଯୋଜନକୁ ହିଁ ସଂପ୍ରେଷଣ-ଶକ୍ତି ବୋଲି କୁହାଯାଉଛି । ଏହି ସେତୁଟିକୁ ଅଧିକ ଦୃଢ଼ ଓ ଶୋଭିବନ୍ତ କରିବାପାଇଁ କବି ଉପମା ଓ ରୂପକର ଆଶ୍ରୟ ନେଇଛି । ସଂପ୍ରେଷଣ-ଶକ୍ତିକୁ ସମର୍ଥତର କରିବାପାଇଁ ପ୍ରତୀକ ଓ ଚିତ୍ରକଳ୍ପ ରଚନାରେ ମନୋନିବେଶ କରିଛି । ଏ ସବୁର ସଯତ୍ନ ପ୍ରୟୋଗ ଉପରେ କାବ୍ୟ-ଭାଷାର ଶକ୍ତି ଏକାନ୍ତ ନିର୍ଭରଶୀଳ ବୋଲି ବୁଝିଛି । କିନ୍ତୁ ଯେତେବେଳେ କବି ସାଧ୍ୟ ଅପେକ୍ଷା ସାଧନକୁ ମୁଖ୍ୟରୂପେ ଗ୍ରହଣ କରିଛି, ବକ୍ତବ୍ୟର ଗୂଢ଼ତାକୁ ଶ୍ରେୟ ମନେ କରିଛି, ସେତେବେଳେ କବିତା ଅସ୍ୱାଦ୍ୟ ହୋଇ ପଡ଼ିଛି । ଉପମା, ରୂପକ, ପ୍ରତୀକ ଚିତ୍ରକଳ୍ପର ଯଥେଚ୍ଛା ପ୍ରୟୋଗ ଫଳରେ କବିତା ମଧ୍ୟ ଦୁର୍ବୋଧ ଓ ଅସାଂଲେଷ୍ୟ ହୋଇ ଯିବାର ଉଦାହରଣ ଦୁର୍ଲକ୍ଷ୍ୟ ନୁହେଁ । ଏ ଯୁଗର କବି ବୁଝିଛି ଯେ, କବିତାକୁ ସଫଳ କରିବା ପାଇଁ ଆଭରଣ-ଗୂଢ଼ତା ବା ଚାକଚକ୍ୟ କଦାପି ଅପରିହାର୍ଯ୍ୟ ନୁହେଁ । ପୁନଶ୍ଚ

ଶବର ପରିଚ୍ଛନ୍ନତା ହିଁ ସରଳତାର ବାହକ । ଆଜିଯାଏ ଲେଖାହୋଇଥିବା କବିତାସବୁକୁ ବିଶ୍ଳେଷଣ କଲେ ଯୁଗଧର୍ମ ଅନୁସାରେ ଏହାର ବାହ୍ୟ ରୂପରେ ବୈଭିନ୍ନ୍ୟ ଦେଖାଯିବ । ମାତ୍ର କ'ଣ ସେ ଗୁଣ, ଯାହା ଯୁଗଯୁଗ ଧରି ସେଗୁଡ଼ିକ ପ୍ରତି ପାଠକର ଆକର୍ଷଣକୁ ଅବ୍ୟାହତ ରଖି ପାରିଛି ? କେବଳ ଅଭିବ୍ୟକ୍ତିର ସରଳତାକୁ ସମ୍ଭୂତ ସଫଳ ସମ୍ପ୍ରେଷଣ-ଶକ୍ତି ହିଁ କାଳର କଷଟିରେ କବିତାକୁ ଚିରଞ୍ଜୀବୀ କରିଛି ବୋଲି ସ୍ୱୀକାର କରିବାକୁ ହେବ । ସରଳତାର ଅଧିକାରରେ ଅମୃତ କେତୋଟି କବିତାଂଶର ଉଦାହରଣ ଦେବା ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ । ନିଗୂଢ଼ ଆଧ୍ୟାତ୍ମିକ ତତ୍ତ୍ୱଚିନ୍ତା-ସମ୍ବଳିତ କବି ଜଗନ୍ନାଥ ଦାସଙ୍କର ନିମ୍ନୋକ୍ତ ପଙ୍କ୍ତିଗୁଡ଼ିକ—

'ଏ ସୁତଦାରା ବନ୍ଧୁ ସଙ୍ଗ । ଯେସନେ ସମୁଦ୍ର ତରଙ୍ଗ ॥
ପଥିକ ଯେହ୍ନେ ବୃକ୍ଷତଳେ । ଶ୍ରମେ ମିଳନ୍ତି ଏକମେଳେ ॥
ଶ୍ରମ ସାରିଲେ ଯେଝାମତେ । ଚଳନ୍ତି ବୃକ୍ଷ ଛାଡ଼ି ପଥେ ॥
ଯେସନେ ପ୍ରାଣୀ ନିଦ୍ରାଗତେ । ସମ୍ପଦ ଦେଖେ ସ୍ୱପ୍ନଗତେ ॥
ଏହି ପ୍ରକାରେ ଗୃହ ବାସ । ନକର ଏଥିରେ ବିଶ୍ୱାସ ॥

ଓଡ଼ିଆ ଭାଗବତ, ଏକାଦଶସ୍କନ୍ଧ, ଅଷ୍ଟାଦଶ ଅଧ୍ୟାୟ ।

କିମ୍ବା ଶରୀର ପ୍ରେମୋପଲବ୍ଧି ଓ ସ୍ୱର୍ଗୀୟ ସମର୍ପଣଭାବ ଭକ୍ତକବି ଅଭିମନ୍ୟୁଙ୍କ କବିତାରେ ଯେଉଁପରି ପ୍ରକାଶ ପାଇଛି ତାହା ନିମ୍ନୋକ୍ତ ପଙ୍କ୍ତିମାନଙ୍କରେ ମାର୍ମିକ ରୂପ ନେଇଛି—

'ଜୀବନ ଗଲେ ଏତିକି କରିବ । ଶ୍ୟାମନାମ ମୋ ଅଙ୍ଗରେ ଲିହିବ
ଶ୍ୟାମ-ବଂଶୀ ଶୁଭୁଥିବ ଯେଣିକି । କର୍ଣ୍ଣ ଡେରି ଦେଇଥିବ ତେଣିକି
ସବୁ ସଜନୀଙ୍କି, କରଧରି ମାଗୁଛି ମୁଁ ଏତିକି ।'

ବିଶ୍ୱକଲ୍ୟାଣ ଚେତନାର ଅକପଟ ପ୍ରତିନିଧି ରୂପେ କବି ଭୀମ ଭୋଇଙ୍କ କବିତାର ଦୁଇଟି ଧାଡ଼ି—

'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।'

ଏକଖଣ୍ଡି ହାଡ଼ ବୁନ୍ଦାଏ ରୁଧିର ଫୁଟେ ମାଉଁସ ଜାଣଇ
ଏଣୁକରି ସିନା ପ୍ରାଣୀଙ୍କ ଆରତ ସହି ନ ପାରିବି ମୁହିଁ ।
ଏକା ଖଡ଼ଗରେ ସାତ ପାଞ୍ଚମୁଣ୍ଡ ଛିଡ଼ଇ ଭାରତ ଯୁଦ୍ଧେ
ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ ।'

—ସପ୍ତଦଶ ବୋଲି, 'ସ୍ତୁତିଚିନ୍ତାମଣି'

କିମ୍ବା କବି ବୈକୁଣ୍ଠନାଥଙ୍କ କବିତାଂଶରେ ମାୟାଗ୍ରସ୍ତ ସଂସାରୀ ପ୍ରାଣର ଜାଲଚିତ୍ର ଆକୃତି ନିମ୍ନଲିଖିତ ପଙ୍‌କ୍ତିରେ ବେଶ୍ ପ୍ରାଣବନ୍ତ ହୋଇଛି—

'କୂଳର ଜନପ୍ରାଣୀ କେତେ ମିଳାଅ ଆଣି
ନୟନ ପଲକରେ ଲୁଗ୍ଧଅ ଜାଣି ଜାଣି
ବୃଥା ମୁଁ ଅଭିମାନୀ ହୃଦେ ଧରଇ ଟାଣି
ମରତ ପ୍ରବାସୀ ମୁଁ ନଜାଣି ଆଣେ ଦାଉ ।'

ଜଟିଳ ତତ୍ତ୍ୱ ଓ ଉପଲବ୍‌ଧିର ଉଚ୍ଚାରଣରେ କାଳଜୟୀ ଏହି ରଚନାଗୁଡ଼ିକ ଅତ୍ୟନ୍ତ ସରଳଭାବେ ପରିବେଷିତ; ତେଣୁ ଚିରନ୍ତନ ସଂପ୍ରେଷଣ-ଶକ୍ତିରେ ମହିମାନ୍ୱିତ ।

ଆଧୁନିକ କବିର କାବ୍ୟିକ ଭାଷା ଶାର୍ଷିକ୍ ଓ ସେ ପ୍ରତୀକ ରୂପକଳ୍ପର ସାହାଯ୍ୟରେ ନିଜକୁ ବ୍ୟକ୍ତକରେ । କିନ୍ତୁ ସେଥିନିମିତ୍ତ ସେ ସରଳତାଠାରୁ ଦୂରେଇ ଯିବା ଅନିବାର୍ଯ୍ୟ ବୋଲି ଭାବେ ନାହିଁ । ଆଧୁନିକ କବି ରମାକାନ୍ତ ଗୋଟିଏ ଉଦ୍‌ବୋଧକ ଚିତ୍ର ମାଧ୍ୟମରେ ଅବାଞ୍ଛିତ ଯୌନ ସମ୍ଭୋଗକୁ ସଂପ୍ରେଷିତ କରନ୍ତି—

'ଆଶ୍ଳେଷର ହରିକାଠେ ଚନ୍ଦ୍ରମାର ଅନୁଭୂତ ମଲ୍ଲ
ଝାଳର ଗନ୍ଧରେ ତା'ର ଲୁପ୍ତହେଲା ସମଗ୍ର ଚେତନା
ଚୁମ୍ବନର ଗୁବୁକରେ ଗାଲ ଆଉ ଓଠରୁ ଜୀବନ
କୃପଣର ଧନପରି ଅନ୍ଧାରର ସିନ୍ଦୁକେ ଲୁଚିଲା ।'

(ଚନ୍ଦ୍ରମାର ଚୂଡ଼ି)

ଏ ଯୁଗର କବି ସରଳତା ଦିଗକୁ ପାଦ ବଢ଼ାଇଛି । ସେ ବୁଝିପାରିଛି ଯେ, ପାଠକ ସହ ଏକାତ୍ମ ହେବାକୁ ହେଲେ ହୃଦୟର ରୁଦ୍ଧଦ୍ୱାରକୁ ଖୋଲି ଦେବାକୁ ହେବ । ଉନ୍ମୁକ୍ତ ହୃଦୟର ସେହି ଅଭିବ୍ୟକ୍ତି କବି ଗୁରୁପ୍ରସାଦଙ୍କର—ଅକ୍ରୁର କୃଷ୍ଣଭକ୍ତ—ସେ ରଥନେଇ ମଥୁରାରୁ ଗୋପପୁର ଯାଇଛି ଓ କୃଷ୍ଣ-ବଳରାମଙ୍କୁ ନେଇ ଫେରୁଛି । ପୁରାଣ ଯୁଗର ସେ ଭକ୍ତି ସମର୍ପଣ ଭାବ ଆଧୁନିକ ଯୁଗର ଅକ୍ରୁରଠାରେ ନାହିଁ । ସେ ହୁଏତ ଈଶ୍ୱରଙ୍କ ଦୟା, କ୍ଷମା ଓ କରୁଣାକୁ ସନ୍ଦେହ କରେ । ମାତ୍ର ତା'ର ମୁକ୍ତି-ପିପାସାର ତୀବ୍ରତାରେ କୌଣସି ପରିବର୍ତ୍ତନ ଘଟିନାହିଁ । ଚିରନ୍ତନ ଯାତ୍ରାର କ୍ଳାନ୍ତିରେ ମ୍ରିୟମାଣ ଅକ୍ରୁର—ପୁନର୍ଜନ୍ମରୁ ଆତ୍ମାର ପୁନରୁକ୍ତିରୁ ସେ ଉଦ୍ଧାର ଚାହେଁ—

'ମହାପ୍ରଭୁ ମୁକ୍ତି ଦିଅ—ଏହିଯାତ୍ରା'
ଶୁଭ ହେଉ ତୁମର ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷଯାତ୍ରା ଏଦେହରୁ
ତୁମର ସହାର ଡେଇଁ
ବହୁତ ବହୁତ କ୍ଳାନ୍ତ, ପୁନରୁକ୍ତ ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର ସମୁଦ୍ର-କୂଳରୁ ।

(ଅକ୍ରୁର ଉବାଚ)

ଅଭିବ୍ୟକ୍ତିକୁ ଅଧିକ ଶାଣିତ ଓ ରସୋଜ୍ଜ୍ୱଳ କରିବାରେ ଆଜିର କବି ସଚେତନ । ତେଣୁ ଉପମା, ରୂପକ, ପ୍ରତୀକ ଓ ଚିତ୍ରକଳ୍ପର ସୁନିର୍ବାଚିତ ପ୍ରୟୋଗରେ ସେ ଗଭୀର ବିବେଚନା ଶକ୍ତିର ସାହାଯ୍ୟ ନେଉଛି । ଏସବୁ ଅଳଙ୍କାରଦ୍ୱାରା କବିତାର ଭାବଗତ ଓ ରୂପଗତ ଭୂମିକୁ ଉଜ୍ଜ୍ୱଳ କରୁଛି । କବିତାର ମୂଳ ଲକ୍ଷ୍ୟ ବିଷୟରେ ସେ ଅଭ୍ରାନ୍ତ । ତେଣୁ ଅତୀତରୁ, ପରମ୍ପରାରୁ, ଧର୍ମଧାରଣା ଓ ଆଚରିତ ଜୀବନ-ପଦ୍ଧତିରୁ ଉପାଦାନ ନେଇ ସେ ଆପଣା ସୃଷ୍ଟିକୁ ମଣ୍ଡିତ କରୁଛି । ଏକ ଦିଗରେ ପୁରାଣ, ଅନ୍ୟ ଦିଗରେ ଲୋକସଂସ୍କୃତିର ଉପାଦାନ ଅନ୍ୱେଷଣରେ ସେ ଆଗ୍ରହୀ । ଏଠାରେ ସେସବୁର ସବିଶେଷ ଦୃଷ୍ଟାନ୍ତ ଉପସ୍ଥାପିତ କରା ନଗଲେବି ପରବର୍ତ୍ତୀ ପ୍ରବନ୍ଧମାନଙ୍କରେ ଉପଯୁକ୍ତ ଅବକାଶରେ ସେ ସବୁ ଉପସ୍ଥାପିତ ହେବ । ପୁରାଣଯୁଗର ବ୍ୟକ୍ତି-ଚରିତ୍ର ଓ ସମାଜ ଏବେ ମଧ୍ୟ ତା'ର ମୌଳିକ ଗୁଣରେ ଅପରିବର୍ତ୍ତିତ ହୋଇ ବିଦ୍ୟମାନ । ଶହ ଶହ ବର୍ଷ ବିତି ଯାଇଥିଲେ ମଧ୍ୟ ସମାଜ ଓ ଜୀବନରେ ବହୁ ଦୃଶ୍ୟଯୋଗ୍ୟ ପରିବର୍ତ୍ତନ ସଂଘଟିତ ହୋଇଥିଲେ ହେଁ, ପୂର୍ବ ଅନୁରୂପ ଘଟଣା ଓ ପରିବେଶ ସେମାନଙ୍କ ମୂଳଧର୍ମ ନେଇ ଏବେ ବି ବିଦ୍ୟମାନ । ସ୍ୱେଚ୍ଛାଗ୍ରସ୍ତା ରାଜାର ଉଆସରେ ନିର୍ଯ୍ୟାତିତା ଅସୁନ୍ଦରୀ କୁବୁଜାର କୃଷ୍ଣପ୍ରାପ୍ତି ନିମନ୍ତେ ଆକାଙ୍କ୍ଷାଟି ଆଜିବି କେଡ଼େ ସ୍ୱଚ୍ଛ, କେଡ଼େ ଅପ୍ରତିହତ ! ବିଂଶଶତକର ବଞ୍ଚାନୀ ମାନବ କୃଷ୍ଣଙ୍କୁ ମଥୁରା ଦାଣ୍ଡରେ ଦେଖିବାର ବିଶ୍ୱାସ ରଖେ ନାହିଁ ସିନା, ସ୍ନେହ ସଂପ୍ରୀତି ଓ ମୁକ୍ତିର ଆଶ୍ୱାସନା ନିମନ୍ତେ ବିଶ୍ୱାସ ତା'ର ଉଜୁଡ଼ି ଯାଇଛି କି ? ତା' ହେଲେ ଯୁଦ୍ଧର କରାଳକାୟା ଓ ଗ୍ରାସ୍ୟା ଭିତରେ, ଦାରିଦ୍ର୍ୟର ନଗ୍ନ ଉନ୍ମତ୍ତ ନୃତ୍ୟଶାଳାରେ, ଅବିଶ୍ୱାସ, ଘୃଣା ଓ ଗୋପନ-ଶତ୍ରୁତାର ବ୍ୟୂହ ଭିତରେ ମଣିଷ ବଞ୍ଚି ରହିଛି କାହିଁକି ? କୌଣସି ଅନ୍ତର୍ଗତ ସ୍ନେହ ସଂପ୍ରୀତି ଓ ବିଶ୍ୱାସର ଉତ୍ସଟିଏ ସେ ସନ୍ଧାନ କରିପାରିଛି କିମ୍ବା କରିବାର ଆଶାପୋଷଣ କରିଛି ବୋଲି ତ ?

ସରଳତାର ଏହି ସୁବର୍ଣ୍ଣ ମାର୍ଗରେ ପୌରାଣିକ ଉପାଦାନ ଭଳି ଲୋକସଂସ୍କୃତିର ଉପାଦାନ ମଧ୍ୟ କବିତାକୁ ଅନୁପ୍ରେରିତ କରୁଛି । ସଂସ୍କୃତି, ପରମ୍ପରା ଓ ପ୍ରଚଳନର ଉପାଦାନଗୁଡ଼ିକ ମଣିଷ ନିକଟରେ ଅଧିକରୁ ଅଧିକ ସଂବେଦ୍ୟ ହୋଇଉଠୁଛି । ଏହି ସୁବର୍ଣ୍ଣ ମାର୍ଗରେ କବିତାର ସାଂଗୀତିକ ପଦପାତ ମଧ୍ୟ ଅତ୍ୟନ୍ତ ଶୋଭନୀୟ ଓ ହୃଦୟ-ସ୍ପର୍ଶୀ । ଶ୍ରୁତିମଧୁର ଓ ହୃଦ୍ୟ ହେବା କବିତାର ଏକ ବିଶିଷ୍ଟ ଗୁଣ । ସାଂଗୀତିକ ଶବ୍ଦ-ଯୋଜନାର ଆବେଦନ-ଶକ୍ତି ଯୁଗେ ଯୁଗେ ଦୁର୍ଲଂଘ୍ୟ ! ଅକ୍ଷର ଗଣି, ଯତିପାତ କରି କବିତା ଲେଖିବା ଏ ଯୁଗର ରୀତି ନୁହେଁ । ମାତ୍ର ଶବ୍ଦ ନିର୍ବାଚନ ଓ ସଂଯୋଜନରେ ଏହି ସାଂଗୀତିକତା ବିଦ୍ୟମାନ । ଛନ୍ଦ ଏଠାରେ ଶବ୍ଦ-ଚୟନରେ, ଚିତ୍ରାଙ୍କନର ନିପୁଣତାରେ, କାବ୍ୟିକ ଉଚ୍ଚାରଣର ବିରତିରେ, ଆବେଗର ଉତ୍ଥାନ-ପତନରେ ନିହିତ, ତେଣୁ ସାଙ୍ଗୀତିକତା ଏହାର ମୁଖ୍ୟ ସ୍ୱର, ଅନ୍ତର୍ନିହିତ ଅଥଚ ଆକର୍ଷଣୀୟ—

'ପାଚୁଡ଼ା ଧାନର ଗ୍ଭେପା ଗ୍ଭଇଯାଏ ଆକାଶ ଆକାଶ
ହଳଦିଆ ଯୋଗସ୍ଥ କଆଁର
ଅଶ୍ୱତ୍ଥ ଗଛର ଖପ୍, ନଗ୍ଭିଟିଆ ଖଜୁରୀ ଗଛର
ପାଚୁଡ଼ା ଧାନର ଗ୍ଭେପା ଆକାଶର ଏପାର ସେପାର,
ନରମ ଆକାଶ ଆଉ ନାଲିକଇଁ ଶୂନ୍‌ଶାନ୍
ବେଣା ବାଲିଚର
ନଗ୍ଭିଟିଆ ଜୋରପାଣି ନଗ୍ଭିଟିଆ
ନେଳି ଶିଉଳିରେ ହଳଦିଆ ଏଇ ଦ୍ୱିପହର' ।
('କୁଟିର ଖପ୍' ଗୁରୁପ୍ରସାଦ ମହାନ୍ତି)

ଏହି ସାଙ୍ଗୀତିକତା ଯେ ସରଳ ଭାବାଭିବ୍ୟକ୍ତିର ସ୍ୱର, ଏହା ସତ୍‌କବିମାନେ ହୃଦୟଙ୍ଗମ କରନ୍ତି । ତେଣୁ ଏ ଯୁଗର କବିତା କ୍ରମେ ଅଧିକ ଆନ୍ତରିକ ଓ ସରଳ ହେବାରେ ଅନୁବ୍ରତୀ ।

(ଭାରତୀୟ ଭାଷା ପରିଷଦ, କଲିକତା, ଦ୍ୱାରା ଆୟୋଜିତ 'Poetry Back to roots' ସେମିନାରରେ ପଠିତ ଓ ପରିଷଦର ମୁଖପତ୍ରରେ ହିନ୍ଦୀ ଅନୁବାଦରେ ପ୍ରକାଶିତ)

# ଆଧୁନିକ କବିତାରେ ଦୁର୍ବୋଧତା

ଗୋଟିଏ ବାକ୍ୟରେ କହିଲେ, ଆଧୁନିକ ଓଡ଼ିଆ କବିତା ଦୁର୍ବୋଧ ନୁହେଁ । କିନ୍ତୁ ଆଧୁନିକ ଓଡ଼ିଆ କବିତା ଦୁର୍ବୋଧ—ଏ ଲୋକାପବାଦ ଦୁର୍ନିବାର । ଯଦିଓ ବର୍ତ୍ତମାନର କବିତା ପ୍ରତି ଦୁର୍ବୋଧତା ଅପବାଦ ଏତେ ବେଶୀ ଶୁଣାଯାଏ ନାହିଁ, ଷାଠିଏରୁ ସତୁରି ଦଶକ ପର୍ଯ୍ୟନ୍ତ ଦଶବର୍ଷର କବିତା ସମ୍ପର୍କରେ ଯେତେ ବେଶୀ ଶୁଣାଯାଉଥିଲା । ସେ ସମୟରେ ଦୁର୍ବୋଧତାର ଦୁହାଇ ଏଡ଼େ ଉଚ୍ଚରେ ଉଠିଥିଲା ଯେ କବି ଓ ପାଠକ ଉଭୟ ଏଥିପାଇଁ ବିବ୍ରତ ହୋଇ ପଡ଼ିଥିଲେ । ଏକଥା ସତ, ସେହି ସମୟରେ କେତେକ ନୂତନ ଚିନ୍ତା, ଭାବଧାରା ଓ ଭାଷାର କାରିଗରୀ କବିତାରେ ଆତ୍ମପ୍ରକାଶ କଲା । ହୁଏତ କବିତା ନୂଆ ରାସ୍ତାଟିଏ ଖୋଜିବାରେ, ନୂଆ କଥାଟିଏ କହିବାରେ ଖୁବ୍ ତତ୍ପର ହୋଇ ଉଠିଥିଲା । ପାଠକ ମଧ୍ୟ ପୂର୍ବ ଅଭିଜ୍ଞତା ଓ ପଦ୍ଧତି ସହିତ ଅଭ୍ୟସ୍ତ ଥିବା ହେତୁ ହଠାତ୍ ଚମକି ଯାଇ ଆଧୁନିକ କବିତାର ନୂଆପଣକୁ ସନ୍ଦିଗ୍ଧ ଦୃଷ୍ଟିରେ ଅନାଇଲା । ବର୍ତ୍ତମାନର କବିତା ନୂତନତା ଓ ଦୁର୍ବୋଧତା ମଧ୍ୟରେ କ୍ରମଶଃ ସମାହିତ ହେବାକୁ ଯତ୍ନଶୀଳ ଏବଂ ପାଠକ ମଧ୍ୟ କବିତାର ଆବେଦନ ସହିତ ବେଶ୍ କିଛି ସହୃଦୟ ହୋଇପାରିଛି । କିନ୍ତୁ ଏଇ ପାଠକ କିଏ ? କେତେଜଣ ? ସଂଖ୍ୟାଲଘୁ ନିଶ୍ଚୟ । କବିତା ସବୁକାଳେ ରସପିପାସୁ ମୁଷ୍ଟିମେୟର (passionate few)ର ହୃଦୟର ନିଧି ।

ତେବେ ବି ଦୁର୍ବୋଧତାର ଦୁହାଇ ଉଠିଥାଏ ଦୁଇଟି ଶ୍ରେଣୀର ପାଠକଙ୍କଠାରୁ । ପ୍ରଥମ ଶ୍ରେଣୀର ପାଠକ କାବ୍ୟ-ସଂସ୍କାରହୀନ (ଅର୍ଥାତ୍ କାବ୍ୟ-କବିତା ପଠନ ଓ ଆଲୋଚନାରେ ଆଗ୍ରହ ଆଉ ଅଭିଜ୍ଞତା ନଥିବା), ତେଣୁ ସୂକ୍ଷ୍ମତର କଳ୍ପନାଜାତ ଭାବାନୁଭୂତିକୁ ଗ୍ରହଣ କରିପାରେ ନାହିଁ । କବିତାପଠନରେ ମନୋନିବେଶ ନକରି ଉଚ୍ଛାରେ ମଧ୍ୟ ଦୁର୍ବୋଧତାର ଦୁହାଇ ଉଠାଇ ଥାଏ । ଏହି ଶ୍ରେଣୀର ପାଠକଙ୍କ ମତାମତ ଅନୁସାରେ କବିତାକୁ କଦାପି ଦୁର୍ବୋଧ କୁହାଯିବ ନାହିଁ । ମାତ୍ର ଦ୍ୱିତୀୟ ଶ୍ରେଣୀର ପାଠକ, କାବ୍ୟ ସଂସ୍କାର ପ୍ରାପ୍ତ ସହୃଦୟତା ଦ୍ୱାରା ଦୀକ୍ଷିତ ପାଠକ ନିକଟରେ କବିତା ଯେତେବେଳେ ତା'ର ଯଥାର୍ଥ ଆବେଦନ ହରାଏ, ପାଠକ ଆପଣାର ଅବବୋଧକୁ ସ୍ୱଚ୍ଛ ଦର୍ପଣଟିଏ କରି ରଖିଥିଲେ ମଧ୍ୟ କାବ୍ୟ-ବକ୍ତବ୍ୟର ସାର୍ଥକ ପ୍ରତିଫଳନ ଘଟିପାରେ ନାହିଁ, ସେତେବେଳେ କବିତାର ଦୁର୍ବୋଧତାକୁ ସ୍ୱୀକାର କରିବାକୁ ହେବ । ଏ କ୍ଷେତ୍ରରେ ଆଧୁନିକ ଓଡ଼ିଆ କବିତା ଯଦି ଦୁର୍ବୋଧ, ତେବେ ତା'ର କେତେଗୁଡ଼ିଏ କାରଣ ମଧ୍ୟ ରହିଛି ।

କବି ନିଜସ୍ୱ ଅନୁଭୂତିକୁ ସଂପ୍ରେଷଣ କରିବା ନିମିତ୍ତ ତାହାକୁ ଶବ୍ଦଗତ କରୁଛି । ବକ୍ତବ୍ୟ ଯଦି ତା'ର ଅନ୍ତଃଚକ୍ଷୁରେ ସ୍ପଷ୍ଟ ପ୍ରତ୍ୟକ୍ଷୀଭୂତ ହୋଇନାହିଁ, କ'ଣ କହିବାକୁ ଚାହୁଁଚି ସେ ସମ୍ପର୍କରେ କବି ସ୍ଥିରନିଶ୍ଚିତ ନୁହେଁ କିମ୍ବା ସେ ଯଦି ଆଙ୍ଗିକ କୌଶଳର ବାହାଦୁରି ନେବାକୁ ବସିଛି, ବାକ୍‌ଚାତୁରି ଦେଖାଉଛି, ସାଧନକୁ ଲକ୍ଷ୍ୟ ରୂପେ ପ୍ରତିଷ୍ଠିତ କରାଇବାର ଅପଚେଷ୍ଟା କରୁଛି, ତା'ହେଲେ କବିତାରେ ଦୁର୍ବୋଧତା ଆସିବ । ଏପ୍ରକାର ଦୁର୍ବୋଧତା ନିମିତ୍ତ କବିର ଦାୟିତ୍ୱହୀନତାକୁ ଚିହ୍ନିତ କରାଯାଇପାରେ ।

କବିତା ପ୍ରତି କବିର ଦାୟିତ୍ୱ ରହିଛି । କାରଣ ପ୍ରତ୍ୟେକ କବି ଅନ୍ୟଠାରେ ନିଜକୁ ବ୍ୟକ୍ତ କରିବା ପାଇଁ, ନିଜ ଅନୁଭୂତି ସହ ଅପରର ଅନୁଭୂତିର ଏକାତ୍ମତା ପରୀକ୍ଷା କରିବା ପାଇଁ ନିଜକୁ ପ୍ରକାଶ କରିଥାଏ । ଏହା ବ୍ୟତୀତ ପ୍ରକାଶ କରିବାର ପୃଷ୍ଠପଟରେ ଅନ୍ୟ କୌଣସି କାରଣ ବିଦ୍ୟମାନ ନୁହେଁ । ଯେତେ ଅଧିକ ସଂଖ୍ୟକ ବ୍ୟକ୍ତି କବିର ଅନୁଭୂତି ଓ ଅଭିବ୍ୟକ୍ତି ସହ ସହୃଦୟ ହୁଅନ୍ତି, ତା' ରଚନାର ରସାସ୍ୱାଦନ କରନ୍ତି, କବି ସେତିକି ଅଧିକ ଆନନ୍ଦ ପାଇଥାଏ । ତେଣୁ ନିର୍ଦ୍ଦିଷ୍ଟ ବକ୍ତବ୍ୟକୁ ଭାଷାର ଏକ ସୃଜନଶୀଳ ବିଶେଷ ବ୍ୟବହାର ଦ୍ୱାରା କବି ସଂପ୍ରେଷିତ କରିବା ଦରକାର । ଏହି ବ୍ୟବହାର ବାସ୍ତବତାକୁ ଅବଧାରଣ କରିବାନିମିତ୍ତ ବରାବର ନୂଆ ନୂଆ ବାଗରେ ଆବେଗ ଅନୁଭବର ଉନ୍ମୁଖତା ସହିତ ହାତ ମିଳାଏ, କାବ୍ୟିକ ସରସତା କବିତାର ପ୍ରାଣସ୍ୱରୂପ । ଏହି ପ୍ରାଣ-ଶକ୍ତିକୁ ବୁଝାଇ ନହେଲେ ବି ସହୃଦୟ ପାଠକମାନେ ଓ ସତ୍‌କବି ନିଜେ ଏହାକୁ ଚିହ୍ନିପାରି ଥାଆନ୍ତି ।

ଏହା ବ୍ୟତୀତ ଆଧୁନିକ କବିତା ଓ ପାରମ୍ପରିକ କବିତା ମଧ୍ୟରେ ଭିନ୍ନତା ବି ଦୁର୍ବୋଧତାର କାରଣ ହୋଇଛି । ଆଧୁନିକ ଜଗତରେ ବଞ୍ଚିଥିବା କବି ବିଗତଶତାବ୍ଦୀର କବିଠାରୁ ଏକ ଜଟିଳତର ପରିବେଶ ଓ ମୂଲ୍ୟବୋଧକୁ ସାମ୍ନା କରୁଛି । କାଳ ଓ ପରିବେଶର ପ୍ରଭାବରୁ କବି ନିଜ ସମ୍ପର୍କରେ ବେଶି ସଚେତନ ହେଉଛି, ବେଶି ବେଶି ନିଜ ଅନ୍ତଃକରଣକୁ ସ୍ପର୍ଶ କରିବାକୁ ଉନ୍ମୁଖତା ଦେଖାଉଛି । ତେଣୁ ନିଜକୁ କେତେକାଂଶରେ ବିଚ୍ଛିନ୍ନ କରିଦେଉଥିବା କବିର ବ୍ୟକ୍ତିବାଦୀ ଉଚ୍ଚାରଣ ଦୁର୍ବୋଧ ମନେହେବା ବିଚିତ୍ର ନୁହେଁ । ଏ କ୍ଷେତ୍ରରେ ପାଠକୀୟ ଅବବୋଧ ଓ କବିର ବ୍ୟକ୍ତିବାଦ ଭିତରେ ଯଥେଷ୍ଟ ସଂଯୋଗ ସୂତ୍ର ସ୍ଥାପିତ ହୋଇ ପାରୁ ନାହିଁ । ଆଧୁନିକ କବି ହୁଏତ ଏପରି ଜୀବନର ଚିତ୍ର ଆଙ୍କୁଛି, ଯେଉଁ ଚିତ୍ର ଜୀବନ ଯେପରି ହୋଇଛି, ଯେପରି ଚିତ୍ର ଉତ୍‌କାଙ୍କ୍ଷୀ ନକରି ଜୀବନ ଯେପରି ହୋଇ ପାରନ୍ତା, ଯେପରି ହେବା ସମ୍ଭବ, ତା'ର ଇଙ୍ଗିତ ଦେଉଛି । ପୁଣି ଅତୀତର ମୁହୂର୍ତ୍ତଟି, ଜୀବନରୁ ଝଡ଼ିପଡ଼ିଥିବା ମୁହୂର୍ତ୍ତଟି କାଳ-ପ୍ରବାହରୁ ଅଲଗା ହୋଇ ତ୍ରିକାଳର ଗୋଟିଏ ବିନ୍ଦୁରେ ସ୍ଥିର ହୋଇ ଦଣ୍ଡାୟମାନ ହୋଇ ରହିଥାଏ—ଏବଂ ବର୍ତ୍ତମାନ ଓ ଭବିଷ୍ୟତର ସତ୍ୟରୂପେ ପ୍ରତିଭାତ ହୁଏ । ଦୃଷ୍ଟି ଦ୍ୱାରା ନୁହେଁ, ଜ୍ଞାନଦ୍ୱାରା ନୁହେଁ, ସ୍ଥିତିର ସାମଗ୍ରିକତା ଦ୍ୱାରା ଏହାର ଅନୁଭବ ସାବ୍ୟସ୍ତ ହୋଇଥାଏ । ପୁନଶ୍ଚ

କବିତା ବ୍ୟକ୍ତିକୁ ତା'ର ଅନ୍ତର୍ନିହିତ ସତ୍ତା ପ୍ରତି ଧ୍ୟାନଶୀଳ କରାଏ । ସତ୍ତାର ମୂଳରେ ନିହିତ ଅପରିଚିତ ଅନୁଭବଗୁଡ଼ିକ ସହିତ ପରିଚୟ କରାଇ ଦିଏ । ଏହି ଅନ୍ତର୍ନିହିତ ସତ୍ତା ଓ ତା'ର ମୂଳ ଅନୁଭବଗୁଡ଼ିକୁ ଆଡ଼େଇ ଦେଇ ବଞ୍ଚିବାରେ ବ୍ୟକ୍ତି ପ୍ରାୟ ଅଭ୍ୟସ୍ତ ହୋଇ ଯାଇଥାଏ । ସେଥିପାଇଁ ପାଠକ ହୁଏତ କବିର ଇଙ୍ଗିତକୁ ବେଳେବେଳେ ବୁଝିବାକୁ ସମର୍ଥ ହୋଇପାରେ ନାହିଁ ।

କବିତା ଏକ ଭାଷାଗତ କଳା । ଭାଷାକୁ ଭାଙ୍ଗି, ଅସାଧାରଣ ଭାବେ ଖଞ୍ଜି କବି ସ୍ୱବକ୍ତବ୍ୟକୁ ଅଭିବ୍ୟଞ୍ଜିତ କରେ । ନହେଲେ ଯେଉଁ ଭାଷାରେ ଆମେ କଥାକହୁ, ବେପାର-ବଣିଜ ଚଳେ, ବିଜ୍ଞାନର ଅନୁଶୀଳନ କରାଯାଏ, ସେହି ସାଧାରଣ ଭାଷାହିଁ କବି ପାଖରେ ଥାଏ । କ୍ରମଶଃ ଏ ଯୁଗରେ ଏହି ଭାଷା କଠିନ ଓ ଯାନ୍ତ୍ରିକ ହେବାକୁ ଆରମ୍ଭ କରିଛି । ଫଳରେ ନିଜର ମାନବୀୟ ସମ୍ବେଦନା କେତେକାଂଶରେ ହରାଇ ବସିଛି । ଅଥଚ ଇନ୍ଦ୍ରିୟର ଗ୍ରହଣଶୀଳତା ବାହାରେ କବିର ଅନେକ ଅନୁଭୂତି ରହିଛି—ଯାହା ସୂକ୍ଷ୍ମ ସ୍ପନ୍ଦନ ଓ ଇଙ୍ଗିତ ମାଧ୍ୟମରେ ଅଭିବ୍ୟକ୍ତ ହେବାକୁ ବାଧ୍ୟ । ଫଳତଃ ଭାଷାର ଚିରାଚରିତ ପ୍ରୟୋଗକୁ ପରିହାର କରି ଏକ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରୟୋଗରେ କବି ଭାଷାର ସାମର୍ଥ୍ୟକୁ ବଢ଼ାଇବାର ଚେଷ୍ଟା କରୁଛି । ଆଙ୍ଗିକ କୌଶଳ ମାଧ୍ୟମରେ ସାଧାରଣ ଭାଷାକୁ ସ୍ୱତନ୍ତ୍ରଭାବେ ଅର୍ଥାନ୍ୱିତ କରୁଛି । ପରମ୍ପରାଶ୍ରୟୀ ପାଠକଗୋଷ୍ଠୀ ଏହି ନୂତନ ଆଙ୍ଗିକସହିତ ସଫଳ ଯୋଗାଯୋଗ ରଖିବାରେ ସମର୍ଥ ହୋଇପାରୁ ନାହିଁ ।

କାବ୍ୟ-ବକ୍ତବ୍ୟର ସଫଳତାର ପୃଷ୍ଠପଟରେ ଆଙ୍ଗିକର ଭୂମିକାକୁ ଅସ୍ୱୀକାର କରିହେବ ନାହିଁ । କାରଣ ଗୋଟିଏ ଭଲ କବିତା ଯେତିକି କହିଥାଏ, ତା' ଅପେକ୍ଷା ଇଙ୍ଗିତ ଦେଇଥାଏ ବହୁତ ବେଶୀ । ଭାଷାଦ୍ୱାରା ଉଚ୍ଚାରିତ ହୋଇଥାଏ ଯେତିକି, ଅଭିବ୍ୟଞ୍ଜିତ ହୋଇଥାଏ ଅହୁରି ଅନେକ କିଛି । କାରଣ କବି ଯାହା କହେ, ପାଠକ ଯାହା ବୁଝେ, କବିତା ତା'ଠାରୁ ଅଧିକ କିଛି । ଅନ୍ୟ ଅର୍ଥରେ କବିତା ତା'ର ବକ୍ତବ୍ୟକୁ ପ୍ରକାଶ କରି ପାରେ ହୁଏତ, କିନ୍ତୁ ପ୍ରକାଶିତ ସମୁଦାୟକୁ ସଂପ୍ରେଷିତ କରିପାରେ ନାହିଁ । କବିତାର ସଂରଚନା ଏଭଳି ରହସ୍ୟମୟ ଯେ, ଏହା ସଂପୂର୍ଣ୍ଣ ପ୍ରାଞ୍ଜଳ ହୋଇଯିବା ସମ୍ଭବ ନୁହେଁ । କିଛି କହିବା ଅନ୍ତରାଳରେ ଅନେକ କିଛିକୁ ଲୁଚାଇ ଦେବା କବିତାର ଲକ୍ଷ୍ୟ । ସହୃଦୟ ପାଠକ ଭଲ କବିତାଟି ପଢ଼ିଲାବେଳେ, ତାରାଟିଏକୁ ଦେଖି ଦେଖି ତାରାର ପଶ୍ଚାତ୍‌ଭାଗର ଅସରନ୍ତି ଅନ୍ଧାର ଓ ଶୂନ୍ୟତାକୁ ପ୍ରତ୍ୟକ୍ଷ କରିପାରେ । ତେଣୁ କବିତା ସମୁଦାୟ ବୋଧ ହୋଇଯିବା ସମ୍ଭବ ନୁହେଁ । ବରଂ ତାହା ପାଠକୀୟ ସାମର୍ଥ୍ୟକୁ ଅପେକ୍ଷା ରଖେ ।

ପୁଣି ଦୁର୍ବୋଧତାର ବିପରୀତରେ ଯେଉଁ ସରଳତା, ତାହା ମଧ୍ୟ ପ୍ରମାଦପୂର୍ଣ୍ଣ । ସମସ୍ତେ ବୁଝିବାପାଇଁ ନିତାନ୍ତ ସରଳଭାବରେ କହି କହି କବିତା ହୁଏତ ସୃଜନଶୀଳତାଠାରୁ

ଦୂରେଇଯାଇ ନଷ୍ଟ (flat) ହୋଇଯାଇ ପାରେ, ଅନୁଭୂତିର ଗଭୀରତା ସଙ୍କୁଚିତ ହୋଇଯାଇପାରେ । ବ୍ୟଞ୍ଜନାର୍ଥ ଜାହତ ହୋଇପାରେ । ଏପରି ସ୍ଥଳେ କବିତା ପ୍ରାଣ ହରାଇ ମୂର୍ଚ୍ଛାରହିଏ ପାଲଟି ଯିବା ବିଚିତ୍ର ନୁହେଁ । କବି ଅବଶ୍ୟ ସ୍ୱେଚ୍ଛାଗ୍ରସ୍ତ ବା ଦାୟିତ୍ୱହୀନ ହେବା ସ୍ପୃହଣୀୟ ନୁହେଁ । ସେ ମଧ୍ୟ ସ୍ୱାନୁଭୂତ ଭାବ ଓ ସୃଜନଶୀଳତାକୁ ଯଥାସମ୍ଭବ ଆବେଦନକ୍ଷମ କରିବାକୁ ଉଦ୍ୟମରତ ହେବା ଆବଶ୍ୟକ । କାରଣ ପାରମ୍ପରିକତା ସହ ନୂତନତାର ଆନୁପାତିକ ମିଶ୍ରଣରେ ପରିଚିତ କବିତା ଅଧିକ ଆବେଦନକ୍ଷମ । ମାତ୍ର କବିତାକୁ ଅଧିକରୁ ଅଧିକ ଆବେଦନକ୍ଷମ ବା ସର୍ବଜନବୋଧ କରିବାକୁ ଯାଇ କବି ଯଦି ତାହାକୁ ପଣ୍ୟ (Commodity)ର ପର୍ଯ୍ୟାୟରେ ପହଞ୍ଚାଇ ଦିଏ, ତେବେ କବିତା ହୁଏତ ଲୋକପ୍ରିୟ ଉପନ୍ୟାସ ସହିତ ତାଳଦେଇ ଭଲ ବିକ୍ରୀ ହେବ କିନ୍ତୁ ତା'ର କଳାଗତ ମୂଲ୍ୟ ରହିବ ନାହିଁ । ବଣିକସଭ୍ୟତାର ମୁଖାପେକ୍ଷୀ ହୋଇ କବି ବ୍ୟବସାୟିକ ଅର୍ଥରେ କବିତାକୁ ବ୍ୟବହାର କଲେ କବିତା ମାରାତ୍ମକ ଅବସ୍ଥାର ସମ୍ମୁଖୀନ ହେବ । ଅତଏବ ଅତ୍ୟନ୍ତ ପ୍ରାଞ୍ଜଳ ହେବା କବିତା ପକ୍ଷରେ ଦୋଷାବହ । ତେଣୁ ସମ୍ପୂର୍ଣ୍ଣ ବ୍ୟଞ୍ଜନା ମାଧ୍ୟମରେ କବିତା ଇଙ୍ଗିତ-ଧର୍ମୀ ହେବ ହିଁ ହେବ ।

ଆଧୁନିକ କବିତା ଦୁର୍ବୋଧ ହେବାର କେତେକ କାରଣ ଉପରେ ଆଲୋଚିତ ହୋଇଛି । ଏସବୁ ହେତୁ କବି ଓ ପାଠକ ମଧ୍ୟରେ ଯୋଗାଯୋଗ ବ୍ୟାହତ ହୋଇଥାଏ, ପୁଣି କବିତାରେ ଥାଏ ଏକ ସ୍ୱାଭାବିକ ଦୁର୍ବୋଧତା ତାହା 'ଅତିଶକ୍ତ ସରଳତା'ର ବିପକ୍ଷରେ କବିତାର କମନୀୟ ଗୁଣ ସ୍ୱରୂପ । ଏହିପ୍ରକାର ଦୁର୍ବୋଧତା ସକାଳର କୁହୁଡ଼ିଖଣ୍ଡେ ପରି ପାତଳ ଓ ହାଲୁକା—ଅସ୍ପଷ୍ଟତା ଭିତରେ ଆସ୍ତେ ଆସ୍ତେ ମିଳେଇବାରେ ଲାଗିଥାଏ । କାରଣ କବିତାର ସବୁକାଳେ ଅଧା ବୁଝା, ଅଧା ଅବୁଝା କିଛି କହେ, କିଛି ଠାରି ଦିଏ । ଏହି ଠାରଦେବା ହିଁ ବିପୁଳ ରସାଭିବ୍ୟକ୍ତିର ପରିଚାୟକ । ଏହି ଠାରକୁ ବୁଝିବାର ପ୍ରବଣତା ଥିଲେ ହିଁ ହୁଏ । କବିତାର ପ୍ରାଣସତ୍ତାରେ ଥିବା ଏହିପ୍ରକାର ସ୍ୱାଭାବିକର ଦୁର୍ବୋଧତା ହେଉଛି କବିତାର ରହସ୍ୟମୟତା । ଏହି ରହସ୍ୟମୟତା କବିତାକୁ ଆକର୍ଷଣୀୟ କରିବାରେ ଅତ୍ୟନ୍ତ ଜରୁରୀ ।

# ସାଂପ୍ରତକ କବିତାରେ ସୌନ୍ଦର୍ଯ୍ୟଚେତନା

ସୌନ୍ଦର୍ଯ୍ୟ ପ୍ରତି ମାନବର ହୃଦୟାବେଗ ସବୁବେଳେ ଉନ୍ମୁଖ । କବିତା ଜୀବନ-ସାଧନାରୁ ପ୍ରକଟିତ ହୁଏ ଓ ସତ୍ୟ-ଶିବ-ସୁନ୍ଦରର ଅଭିଳାଷକୁ ଚରିତାର୍ଥ କରେ । ଆମେ ସାଧାରଣତଃ ସୌନ୍ଦର୍ଯ୍ୟକୁ ଦେଖି, ଦେଖୁ ନାହିଁ, ସେଥିପ୍ରତି ଉଦାସୀନ ରହୁ । କିନ୍ତୁ କବି ଓ କଳାକାର ସୌନ୍ଦର୍ଯ୍ୟ-ସନ୍ଧାନରେ ସ୍ୱଆତ୍ମାକୁ ଉତ୍ସର୍ଗିତ କରିଥାଆନ୍ତି । କୌଣସି ବସ୍ତୁ, ଘଟଣା, ଚରିତ୍ର ବା ଭାବକୁ ଆଶ୍ରୟ କରିଥିବା ସ୍ୱାନୁଭୂତିକୁ (କବି ସଚେତନତା) ଶବ୍ଦଶିଳ୍ପ ମାଧ୍ୟମରେ ଅଙ୍କନ କରେ ଓ ବୋଧସମ୍ପନ୍ନ ପାଠକ ଉକ୍ତ କବିତାରୁ ସୌନ୍ଦର୍ଯ୍ୟାସ୍ୱାଦନ କରି ଭାବାଭିଭୂତ ହୋଇଥାଏ । ସୌନ୍ଦର୍ଯ୍ୟଚେତନା ଉପରୋକ୍ତ ମତେ କବିତାରେ କ୍ରିୟାଶୀଳ ହୋଇଥାଏ । କିନ୍ତୁ ସୌନ୍ଦର୍ଯ୍ୟ କେଉଁଠି ଥାଏ ? ନୟନାଭିରାମ ରୂପଶୋଭାରେ ନା ହୃଦୟୋଲ୍ଲାସକାରୀ ଭାବାନୁଭୂତିରେ ନିହିତ ଥାଏ ? ପ୍ରକୃତ ପକ୍ଷେ ରୂପଗତ ଓ ଭାବଗତ ସୌନ୍ଦର୍ଯ୍ୟ ମଧ୍ୟରେ ନିର୍ଦ୍ଦିଷ୍ଟ ସୀମାରେଖା ଟାଣିବା ସମ୍ଭବ ନୁହେଁ । ଏ ଦୁଇଟି ଏକ ଅନ୍ୟର ପରିପୂରକ । ସୌନ୍ଦର୍ଯ୍ୟ କେତେକାଂଶରେ ବସ୍ତୁ-ନିର୍ଭର, ଏହା ସତ୍ୟ । ମାତ୍ର ବର୍ଣ୍ଣିତ ହେବାକୁ ନିର୍ଦ୍ଦିଷ୍ଟ ଥିବା ବସ୍ତୁ ସହ କବି ସ୍ୱଆବେଗ, କଳ୍ପନା ଓ ଅନୁଭବ ଶକ୍ତି ସଂଯୋଗ କରି ବସ୍ତୁକୁ ବହୁ ଅଧିକ ସୌନ୍ଦର୍ଯ୍ୟରେ ରୂପାନ୍ତରିତ କରିଥାଏ । ବସ୍ତୁ ସହ ହୃଦୟାବେଗର ସଂଯୋଗ ଘଟିଲେ ସୌନ୍ଦର୍ଯ୍ୟାନୁଭୂତି ପରିପୂର୍ତ୍ତି ହୋଇଥାଏ । ପୁନଶ୍ଚ କଳାଗତ ରସାସ୍ୱାଦନରେ ପରିପୂର୍ତ୍ତିତାର ଅର୍ଥ ଆପେକ୍ଷିକ । (ରସଗ୍ରାହୀ ହୃଦୟର ଯୋଗ୍ୟତାନୁସାରେ ରସ ଗ୍ରହଣ ସମ୍ଭବ ହୋଇଥାଏ । ଆଧାର ବିଶେଷର ଗୁରୁତ୍ୱ ଏଠାରେ ସ୍ୱୀକାର୍ଯ୍ୟ । ବ୍ୟକ୍ତିମାନଙ୍କେ ତା'ର ସୌନ୍ଦର୍ଯ୍ୟ ଅବଧାରଣ କ୍ଷମତା ଅପରଠାରୁ ସ୍ୱତନ୍ତ୍ର । କବିମାନଙ୍କେ ତା'ର ସୌନ୍ଦର୍ଯ୍ୟ ପ୍ରକାଶକ୍ଷମତା ବି ଅପରଠାରୁ ସ୍ୱତନ୍ତ୍ର । ତେଣୁ ସୌନ୍ଦର୍ଯ୍ୟାସ୍ୱାଦନରେ ପରିପୂର୍ଣ୍ଣତା ଖୋଜିଲେ ମିଳି ନପାରେ । ପୁଣି ଏହି ସୌନ୍ଦର୍ଯ୍ୟାନୁଭୂତି ବସ୍ତୁର ଦୃଷ୍ଟ ରୂପ ଓ ସେହି ରୂପର ଉପଲବ୍ଧିଜନିତ ଆବେଗରୁ ଅଧିକ କିଛି । ସୌନ୍ଦର୍ଯ୍ୟାନୁଭୂତିଜନିତ ଏହି ସ୍ୱର୍ଗୀୟ ଆନନ୍ଦ ପୁଣି ଦୀର୍ଘକାଳ-ସ୍ଥାୟୀ ସୌନ୍ଦର୍ଯ୍ୟର ଅମରତ୍ୱକୁ ସ୍ୱୀକୃତିଦେଇ କବିତାର ସର୍ବଶ୍ରେଷ୍ଠ ସମାଲୋଚକ ନିନ୍ଦୁକ, ଦାର୍ଶନିକ Plato କହିଛନ୍ତି—Beauty is a password to immortality. By creating a thing of beauty we conquer death ଗୋଟିଏ ସୁନ୍ଦରତାକୁ ସୃଷ୍ଟି କରିବା ଦ୍ୱାରା

ସ୍ରଷ୍ଟା ମୃତ୍ୟୁକୁ ଜୟ କରିଥାଏ—କାରଣ ସୌନ୍ଦର୍ଯ୍ୟ ହିଁ ଅମରତ୍ୱ ଜଗତକୁ ଏକ ଗୋପନ-ପଥ । ସୌନ୍ଦର୍ଯ୍ୟଭୋକ୍ତା ସୌନ୍ଦର୍ଯ୍ୟାଶ୍ରୟୀ ବସ୍ତୁର ଅବର୍ତ୍ତିମାନରେ ହୁଏତ ପ୍ରକୃତିସ୍ଥ ହୋଇଯାଏ । ତଥାପି ସ୍ଥାୟୀ ଚିହ୍ନ ହୃଦୟ-ପଟରେ ଅଙ୍କିତ ହୋଇ ରହେ । ବାରବାର ଆସ୍ୱାଦନରେ ମଧ୍ୟ ସୌନ୍ଦର୍ଯ୍ୟ ତା'ର ନୂତନତ୍ୱ ହରାଏ ନାହିଁ । ସେଥିପାଇଁ ସୁନ୍ଦର ବସ୍ତୁ ଦୃଷ୍ଟପୂର୍ବ ହୋଇ ମଧ୍ୟ ଅପୂର୍ବ ମନେ ହୋଇଥାଏ । କବି ରାଧାନାଥ କହୁଥାନ୍ତି,

'ଦୃଷ୍ଟପୂର୍ବ ହୋଇ ଅଦୃଷ୍ଟ ପ୍ରତୀତ
ସୁନ୍ଦରପଣର ଚରନ୍ତନ ରୀତ ।'

## କାୟିକ ଓ ଆତ୍ମିକ ସୌନ୍ଦର୍ଯ୍ୟ

ସୌନ୍ଦର୍ଯ୍ୟଚେତନାକୁ କେବଳ ଦୃଷ୍ଟରୂପ ପ୍ରଭାବିତ କରେ ନାହିଁ । ଅନୁଭବ ସର୍ବସ୍ୱ ହୋଇ ଅଭିଜ୍ଞତା ସହ ସଂଯୁକ୍ତ ହୋଇଯାଏ । ସେଥିପାଇଁ ସନ୍ତାନ ଓ ଜନନୀ ରୂପରହିତ ହେଲେହେଁ ପରସ୍ପରର ନୟନାଭିରାମ ହୋଇଥାଆନ୍ତି । ଏ ସମ୍ପର୍କରେ ପ୍ରଭୁ ଗଣେଶଙ୍କ ରୂପ ବର୍ଣ୍ଣନା ଦେଖନ୍ତୁ—'ଖର୍ବଂ ସ୍ଥୂଳତନୁଂ ଗଜେନ୍ଦ୍ରବଦନଂ ଲମ୍ବୋଦରଂ ସୁନ୍ଦରଂ' । ଖର୍ବ, ସ୍ଥୂଳଶରୀର, ଗଜମୁଖ, ଦୀର୍ଘ ଉଦର, ତା'ସହିତ ପୁଣି ସୁନ୍ଦର—ଏହା କେବେ ରୂପଗତ ସୌନ୍ଦର୍ଯ୍ୟକୁ ବୁଝାଏ କି ? ବରଂ ଏସବୁ ସୁନ୍ଦରର ବିପରୀତକୁ ପ୍ରତୀକିତ କରିଥାଏ । ତଥାପି ଭକ୍ତ ସମକ୍ଷରେ ପ୍ରଭୁ ଗଜାନନ ସୁନ୍ଦର ରୂପେ ଉଦ୍ଭାସିତ ହୁଅନ୍ତି । ତାଙ୍କର ଜ୍ଞାନ ଓ ପାଣ୍ଡିତ୍ୟପୂର୍ଣ୍ଣ ହୃଦୟର ଓ ବିଦ୍ୱତ୍ତାର ସୌନ୍ଦର୍ଯ୍ୟକୁ ଏଥିରେ ଉପସ୍ଥାପିତ କରାଯାଇଛି । ଜ୍ଞାନ ଓ ପାଣ୍ଡିତ୍ୟର ଆକର୍ଷଣ ହେତୁ ଭକ୍ତ-ଚକ୍ଷୁରେ ସେ 'ସୁନ୍ଦର' ରୂପେ ପ୍ରତିଭାତ ହୋଇଛନ୍ତି । ସୌନ୍ଦର୍ଯ୍ୟ ତ କେବଳ ବ୍ୟକ୍ତି ବା ବସ୍ତୁର ଦୃଶ୍ୟରୂପ (ବହିରଙ୍ଗ ଭୂଷଣ) କୁ ବୁଝାଏ ନାହିଁ—ତା'ର ଆତ୍ମିକ ସୌନ୍ଦର୍ଯ୍ୟକୁ ମଧ୍ୟ ସୂଚିତ କରେ । ରୂପ-ସୌନ୍ଦର୍ଯ୍ୟ ସହ ଭାବସୌନ୍ଦର୍ଯ୍ୟର ଯୋଗାଯୋଗ ଅବିଚ୍ଛେଦ୍ୟ ହୋଇଥାଏ । ହୃଦୟରେ ପ୍ରେମଭାବ ଥିଲେ ରୂପହୀନ ଅପୂର୍ବ ରୂପବନ୍ତ ରୂପେ ପ୍ରତୀତ ହେବା କଥାଟି କାହାକୁ ଜଣା ନାହିଁ ? ଦୃଷ୍ଟରୂପ ସହ ଭାବ ସର୍ବଦା ଓତଃପ୍ରୋତ ଥାଏ । ହୃଦୟ ଯଦି ଶତଧା ବିଦୀର୍ଣ୍ଣ, ପ୍ରାଣ ଶୋକାକୁଳ—ଶରତର ଜହ୍ନରାତିଟିଏ ବି ପାଉଁଶରେ ପଲସ୍ତରା ହେଲାପରି ମନେହେବା ଆଶ୍ଚର୍ଯ୍ୟଜନକ ନୁହେଁ । ହୃଦୟ ଯଦି ପରିପୂର୍ଣ୍ଣ ଆବେଗ-ସଘନ ଓ ପ୍ରାଣ ପ୍ରେମବିହ୍ୱଳ, ସାଧାରଣ ଘଟଣା ବା ବସ୍ତୁଟିଏ ବି ସେହିପରି ଅସାଧାରଣ ଅର୍ଥମୟ ଓ ସୌନ୍ଦର୍ଯ୍ୟମୟ ହୋଇଉଠିବା ଅସ୍ୱାଭାବିକ ନୁହେଁ । ସାଧାରଣ ଅର୍ଥରେ ପ୍ରକୃତିର ରୂପଶୋଭା ଓ ନାରୀର ରୂପଶୋଭାରେ କବିଗଣ ସୌନ୍ଦର୍ଯ୍ୟ ଦର୍ଶନ କରିଥାଆନ୍ତି ।

## ରୂପସୀ ପ୍ରକୃତି ଓ ନାରୀ

କାବ୍ୟକାରଗଣ ପ୍ରକୃତିର ଓ ନାରୀର ରୂପଶୋଭା ବର୍ଣ୍ଣନା କରିବାରେ ଶତମୁଖ । ନିସର୍ଗ ସୌନ୍ଦର୍ଯ୍ୟର ଆକର୍ଷଣ ସର୍ବଦା ବିଦ୍ୟମାନ ଥିଲେହେଁ ନାରୀରୂପ ସମ୍ମୋହନର

ଅଙ୍ଗନାଲିପ୍ସା ତହୁଁ ବଳି ପ୍ରାଚୀନତର ଓ ଗଭୀରତର । କାରଣ କବିପୁରୁଷ ଦୃଷ୍ଟିରେ ନାରୀ ପ୍ରେମର ପ୍ରତିମା । ହୃଦୟୋଚ୍ଛ୍ୱାସର ଅବଲମ୍ବନ, ପୁଲକିତ ଆତ୍ମସତ୍ତାର ନମିତ୍ତ । କୋଉ କବି-କଣ୍ଠରୁ ପ୍ରେମବିହ୍ୱଳ ଧାଡ଼ିଟିଏ ଫିଟି ନ ପଡ଼ିଛି ? କୋଉ କବି ନାରୀରୂପର ସ୍ତବଗାନ କରି ନାହିଁ ? ଆଜିର ବସ୍ତୁବାଦୀ ସଂଘର୍ଷମୟ ଜୀବନାୟନରେ ମଧ୍ୟ କବି ସୌନ୍ଦର୍ଯ୍ୟ ପ୍ରତି ଉନ୍ମୁଖ ହୋଇଛି—ସୌନ୍ଦର୍ଯ୍ୟର ସମ୍ମୋହନରେ ତା'ର ମୁଗ୍ଧ ଉଚ୍ଚାରଣର ଝୁରି ଝୁରି ଉଦାହରଣ ମିଳିଥାଏ । ଗୋଟିଏ ଗ୍ରାମ୍ୟ ନଦୀର ରୂପ ବର୍ଣ୍ଣନା କରିବାକୁ ଯାଇ କବି ଗୁରୁପ୍ରସାଦ କହନ୍ତି—

'ଆଜି ଯେବେ ଶୁଭେ ଜନ୍ମେ ସେପାରିର ଅଡ଼ଡ଼ାରେ
ଆଲୁଅ ନରମ ହୁଏ ହଳଦୀ ପାଣିରେ ଗୋଳି
ଚରିର କଣ୍ଟା ଓ ଘାସ,
ଶଙ୍ଖଚିଲ ଡେଣା'

(ଶୀତୁଆ) ପ୍ରକୃତିର ଶୋଭାସମ୍ଭାରର ସ୍ଫୁର୍ତ୍ତି କବିଙ୍କ ରଚନାରେ ଚିତ୍ରମୟ ହୋଇଛି । ବେଳେବେଳେ ପ୍ରକୃତି ମଧ୍ୟ ଏକ ନିବିଡ଼ ରହସ୍ୟର ସମ୍ବେଦ୍ୟ ରୂପ ଧରି ଛିଡ଼ା ହୋଇଛି । ପ୍ରକୃତିର ରୂପସମ୍ଭାର ମଧ୍ୟରେ କବି ରାଜେନ୍ଦ୍ର ଏକ ଅସାଧାରଣ ଈଶ୍ୱର, ରହସ୍ୟର ଇଙ୍ଗିତ ଆଙ୍କି ବସନ୍ତି—

'ପାହାନ୍ତାରେ ନିଦମଳମଳ ଆଖିରେ
ବଗିଚାକୁ ଆସି ଦେଖିବୁ
କାରୁପର୍ଣ୍ଣୀ କୋଣରେ
ଉର୍ଣ୍ଣାଜାଲରେ ବିନ୍ଦୁ ବିନ୍ଦୁ ଶିଶିର
ପ୍ରତିଟି ବୁନ୍ଦାରେ ଝଲମଲ ସୂର୍ଯ୍ୟବିମ୍ବ
ଶିରଶିର ପବନରେ ଥିହରଗଲା ଜାଲ ଥରୁ ଥରୁ
ନିଘା ପଡ଼ିଯିବ ତୋ'ର ଶିକାରରତ
ରନ୍ଦୁ ବୁଢ଼ିଆଣୀ ଉପରେ ।'

"( ଝିଅପାଇଁ ଗୋଟିଏ କବିତା )"

ଏଠାରେ ପବନରେ ଦୋଳାୟିତ ଶିଶିରବିନ୍ଦୁ-ଯୁକ୍ତ ଉର୍ଣ୍ଣାଜାଲଟି—ପ୍ରତି ଶିଶିରବିନ୍ଦୁରେ ସୂର୍ଯ୍ୟ ଝଲମଲ ଦୃଶ୍ୟଟି ଏକ ନୟନ-ସମ୍ବେଦ୍ୟରୂପର ସମ୍ଭାର ତୋଳିଧରିବା ସହିତ ମାନବ ଜୀବନର ଅମୋଘ ଯନ୍ତ୍ରଣା ଓ ଉଲ୍ଲାସକୁ ସାକାର କରିବାର ଅପେକ୍ଷାରେ ରହିଛି । ପୁଣି କବି ରମାକାନ୍ତ 'ଶ୍ରୀରାଧା' କବିତାରେ ପରିବେଶର ସୌନ୍ଦର୍ଯ୍ୟକୁ ଆତ୍ମିକ ବିହ୍ୱଳତାରେ ଅନୁରଞ୍ଜିତ କରୁଛନ୍ତି । କୃଷ୍ଣଙ୍କର କଳ୍ପିତ ସାକ୍ଷାତ ଓ ସ୍ପର୍ଶରେ ଶ୍ରୀରାଧାଙ୍କ ଶରୀରର କଠିନତା ଲୋପ ପାଇଛି । ପୁରୁଣା ଅଭ୍ୟାସ, ଭୟ, ଦୁଃଖ, ସୁଖ, ଜରା, ମରଣ ଆଦି ମନ ଓ ଶରୀରର ସାଧାରଣ ଅବସ୍ଥା ବିଲୁପ୍ତ ହୋଇଛି । ଶ୍ରୀରାଧାଙ୍କ ପୁଲକିତ ସତ୍ତାର ରୂପାନ୍ତର ଘଟୁଛି—ତାହାର ଏକ ଦର୍ଶନଗ୍ରାହ୍ୟ ରୂପ କବି ଆଙ୍କିଛନ୍ତି—

'ତାପରେ ତରଳିଯାଇ ବ୍ରହ୍ମାଣ୍ଡ ଉପରେ
ବୋହିଗଲା ଯେପରି ମୁଁ ପର୍ବତ ଭିତରୁ
ସଦ୍ୟମୁକ୍ତ ହୋଇଥିବା ଚନ୍ଦ୍ରର କିରଣ'

ସୌନ୍ଦର୍ଯ୍ୟ ଦର୍ଶନରେ ଭୋକ୍ତାର ହୃଦୟପଟରେ ଉଦ୍ରେକ ଉଚ୍ଛ୍ୱସିତ ଭାବରାଜିକୁ ରୂପଗତ କରିଥିବାର ରୂପକଳ୍ପଟିଏ କବିଙ୍କ ରଚନାରେ—

'ସୁବାସିତ ଶୁଭ୍ରପରିବେଶ
ଧୂଳି ଧୂଳି କର୍ପୂରରେ ଝିବାକ୍ ଆକାଶ
ବାଲିସାରି କର୍ପୂରର ରେଣୁ
ଝାଉଁଗଛ ପନ୍ଦେ ପନ୍ଦେ
ଶ୍ଳେଟ ବଡ଼ ଲହରୀରେ ସମୁଦ୍ରଯାକରେ
ଝୁରୁ ଝୁରୁ ବାସ୍ନା ବାସ୍ନା
ବାସ୍ନା ମୋର ବିହ୍ୱଳ ଦେହରେ ।' (ଅତମ୍ଭୁଖମେଘ)

ନାରୀର ନୟନ-ସଂବେଦ୍ୟ ରୂପ ଓ ଏହି ନୟନ-ସଂବେଦ୍ୟ ରୂପକୁ ଅତିକ୍ରମ କରୁଥିବା ରୂପମୟତା (ଯାହା ପ୍ରକୃତ ରୂପ ଓ ରୂପପ୍ରାଣର ଆବେଗ ଏ ଦୁଇର ସଂଶ୍ଳେଷରେ ପ୍ରଣୀତ) ଏ ଉଭୟର ସମ୍ମିଳନରେ ସୌନ୍ଦର୍ଯ୍ୟ ନିଷ୍ପନ୍ନ ହୋଇଥାଏ । ପ୍ରାଚୀନ କବିତାର (ଆହମ୍ କବିତା—ତାମିଲ) ଅନୁବାଦରେ ଦେଖନ୍ତୁ—

'O chaste one, loosen your garment
...and with
excited heart drew the veil away
Like sword unsheathed, She shone
She blushed atonce.

(Ethos of Indian Lit. P 136)

ଏଠାରେ ଦୃଶ୍ୟସୌନ୍ଦର୍ଯ୍ୟ ଏକ ଚମକପ୍ରଦ ଚିତ୍ରପଟ—ନାୟକ ପ୍ରେମବିହ୍ୱଳ, ନବପରିଣୀତାକୁ ଅବଗୁଣ୍ଠନ ଉନ୍ମୋଚନ କରିବାକୁ ଅନୁରୋଧ ଜଣାଉଛି—ପୁଣି ପରମୁହୂର୍ତ୍ତରେ ଆବେଗାତିଶଯ୍ୟରେ ଅବଗୁଣ୍ଠନକୁ ସହସା ନିଜ ହାତରେ ଉନ୍ମୋଚନ କରୁଛି । ନବବଧୂର ଅର୍ଦ୍ଧାଧିକ ଶରୀର ଅନାବୃତ ହୋଇ ପଡ଼ୁଛି—କୋଷମୁକ୍ତ ତରବାରି ପରି ସୁନ୍ଦରୀ ନବୋଢ଼ାର ଶରୀର ଝଲସି ଉଠୁଛି । ସେ ରୂପର ଆବେଦନ ତରବାରି ପରି ଉଜ୍ଜ୍ୱଳ ଓ ତୀକ୍ଷ୍ଣ । ଠିକ୍ ସେତିକିବେଳକୁ ନବବଧୂ ଲଜ୍ଜାନତା ହୋଇପଡ଼ୁଛି । ଏଠାରେ ଏକ ବ୍ୟକ୍ତିଗତ ସଘନ ଆବେଗ ନୈର୍ବ୍ୟକ୍ତିକ ଓ ନାଟକୀୟ ଭାବେ ଉପସ୍ଥାପିତ ହୋଇଛି ।

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟରେ ଅସଂଖ୍ୟ ସୁନ୍ଦର ରୂପଚିତ୍ର ଅଙ୍କିତ ହୋଇଛି । କୁଞ୍ଜବନରେ ଗୋପୀକୁଳ ପୁଷ୍ପ-ବିଭୂଷିତ ହୋଇଛନ୍ତି । କେଶ, କପୋଳ, ଗ୍ରୀବା, ବକ୍ଷ, ବାହୁ, ମଣିବନ୍ଧ, କଟି ଓ ଚରଣଯାଏ ନାନାବିଧ ଫୁଲର ଭୂଷଣ । ବିଭୂଷିତା ଗୋପୀଗଣ ଗୋଟିଏ ଗୋଟିଏ ବିଚିତ୍ର ପୁଷ୍ପଦ୍ରୁମ ପରି ଦିଶୁଛନ୍ତି । କବି ଦେବଦୁର୍ଲ୍ଲଭଙ୍କ ଦୃଷ୍ଟିରେ—

‘ନିର୍ମଳ କପୋଳେ ରଞ୍ଜିଲେ ଅଳକ
ବାଳି ମଲ୍ଲିକଢ଼ି ଝଡ଼ାଗୋ
ବଦନ ଚନ୍ଦ୍ର ଉପରେ ଶୋଭିକି ଏ ବେଢ଼ି ଘନତଳେ ତାରି···
ନାନା କୁସୁମେ ତାଡ଼ ଚୂଡ଼ ସାଜିଲେ
ଭୁଜଲତାକୁ ବନାଇ
ବିଚିତ୍ର ପୁଷ୍ପଦ୍ରୁମ ପ୍ରାଏ ଦିଶିଲେ ସମସ୍ତେ ଦିଅ ଅନାଇଁ···’

(ରହସ୍ୟମଞ୍ଜରୀ)

## ସୁନ୍ଦର, ରହସ୍ୟମୟ

ସୌନ୍ଦର୍ଯ୍ୟ ଅଙ୍କନ କଦାପି ଏକ ସହଜ କର୍ମ ନୁହେଁ । ମୋର ତ ମନେହୁଏ, କବି ସୁମହାନ୍ କବିତ୍ୱର ଅଧିକାରୀ ହୋଇଥିଲେ ହେଁ, ବିପୁଳ ପ୍ରତିଭା-ସମ୍ପନ୍ନ ହୋଇଥିଲେହେଁ ସୌନ୍ଦର୍ଯ୍ୟକୁ ପରିପୂର୍ଣ୍ଣ ରୂପ ପ୍ରଦାନ କରିବା, ଦୃଶ୍ୟକୁ ସ୍ୱୟଂସମ୍ପୂର୍ଣ୍ଣ କରିପାରିବା ତା’ପକ୍ଷେ ସମ୍ଭବ ହୋଇପାରେ ନାହିଁ । ସୁନ୍ଦର ଦୃଶ୍ୟଟିଏ ଅସଂଖ୍ୟ ଭାବ ଅଭିବ୍ୟକ୍ତ କରିଥାଏ । ଅସାଧାରଣ କବି ଜଣେ ହୁଏତ ସେଥିରୁ ଗୋଟିଏ କିମ୍ବା ଅଳ୍ପ କେତୋଟି ଭାବକୁ ଗ୍ରହଣ କରେ ଓ ଅଙ୍କନ କରିବାରେ ପ୍ରୟାସୀ ହୋଇଥାଏ । ପୁନଶ୍ଚ କବି ଯେତିକି ଅବଗତ ହୋଇଥାଏ, ଅଙ୍କନରେ ତାହା ଆହୁରି ହ୍ରାସ ହୋଇଯାଏ । ତେଣୁ କପରି କହିହେବ ଯେ, ପ୍ରତ୍ୟକ୍ଷୀଭୂତ ରୂପସୌନ୍ଦର୍ଯ୍ୟକୁ କବି ସ୍ୱୟଂ ସମ୍ପୂର୍ଣ୍ଣ ଆଙ୍କି ଦେଇପାରେ ? ସୌନ୍ଦର୍ଯ୍ୟ ସବୁକାଳେ ରହସ୍ୟଗୁମ୍ଫିତ । ସୁନ୍ଦର ଠାରେ କେଉଁଠି ନା କେଉଁଠି ରହସ୍ୟ ଛପି ରହି-ଥାଏ । ରହସ୍ୟ ତ କଦାପି ପୂର୍ଣ୍ଣ ବୋଧଗମ୍ୟ ହୁଏନା, ପୂର୍ଣ୍ଣବ୍ୟକ୍ତ ମଧ୍ୟ ହୋଇ ପାରେନା । ସୌନ୍ଦର୍ଯ୍ୟ ତେଣୁ କେତେକାଂଶରେ ଅବ୍ୟକ୍ତ ରହିଯାଏ ।

ପଶ୍ଚିମଘାଟ ପର୍ବତମାଳାର ଅଗ୍ନାଅଗି ବନସ୍ତ ଭିତରେ ଅଧା ଦିଶି ଅଧା ଲୁଚି ଘନନିର୍ଘୋଷରେ ଝରିପଡ଼ୁଥିବା ସେଇ ଝରଣା ‘ଦୁଧସାଗର’—ସେ ତ ଝରଣାଟିଏ ମାତ୍ର ନୁହେଁ, ରହସ୍ୟଗର୍ଭିତ ଜ୍ୟୋତିର୍ମୟ ଏକ ରୂପଶିଖା । ସେହି ଶିଖାର କମ୍ପନ ଓ ଅଣୁରଶ୍ମିକୁ କୋଉ କବି ଯଥାର୍ଥଭାବେ ଲେଖିଦେଇ ପାରିବ ? ରହସ୍ୟକୁ ବିଶ୍ଳେଷଣ କରିପାରିବାର ଅଧିକାର କବିର କେତେଦୂର ସାବ୍ୟସ୍ତ ହୋଇପାରେ ? ହୃଦୟର ପ୍ରତିଟି ଅଣୁକୁ, ଦେହର ପ୍ରତିଟି ଲୋମକୂପକୁ ଉନ୍ମୁଖ କରିପାରିବାର କ୍ଷମତାରେ ଯେଉଁ ରୂପ ମହିମାମୟ, କୋଉ କବି ଆଙ୍କିପାରିବ ସେହି ରୂପକୁ ?

ସୁନଷ୍ଟ କବିତାରେ ଅଙ୍କିତ ରୂପ ତ ସର୍ବଦା ଶବ୍ଦ-ନିର୍ଭର । ସେହି ଶବ୍ଦମାନେ କପଟୀ ଦଗାବାଜ—ଉପଯୁକ୍ତ ସମୟରେ ଯଥାର୍ଥ ଆସନ୍ତି ନାହିଁ—ସେହିମାନଙ୍କୁ ନେଇ କବିର ପ୍ରକାଶ-ଗୌରବ, କବିକର୍ମର ସଫଳତା, କବିର ଶବ୍ଦ-ଶିଳ୍ପରେ ହୁଏତ ପ୍ରକୃତିଶୋଭାର ଖଣ୍ଡିତ ଚିତ୍ରଟିଏ ଫିଟିପଡ଼ିବ—ପାଠକ ସମକ୍ଷରେ ତାହା ଶୋଭିବନ୍ତି ଚିତ୍ରଟିଏ ଆଙ୍କିବାକୁ ସମର୍ଥ ହେବ ନିଶ୍ଚୟ । କିନ୍ତୁ ସେହି ଚିତ୍ରଟି ନିସର୍ଗରଚିତ ଚିତ୍ରଠାରୁ କିଛିଟା ନ୍ୟୂନ ହୋଇଯିବ ନାହିଁ କି ? ଯେ ତ ମାନବୀୟ ଅପାରଗତା । ମାଟି ମୁଠାକରୁ ନାନାରଙ୍ଗର ଓ ଗନ୍ଧର ଫୁଲ (ଗେଣ୍ଡୁ, ଗୋଲାପ, ରଜନୀଗନ୍ଧାଦି) ସୃଜିପାରୁଥିବା ମହାନ୍ ସ୍ରଷ୍ଟାର ସୃଜନକଳାକୁ କବି-ମଣିଷଟି କେତେଯାଏ ଆୟତ୍ତ କରିପାରିବ ? ସେହି ଅପାରଗତାଠାରୁ କବିର ମୁକ୍ତି ନାହିଁ । କବିର ଏତାଦୃଶ ଅପାରଗତାକୁ ଗଭୀରଭାବେ ଅନୁଭବ କରି ହୁଏତ ସାଂପ୍ରତିକ ଯଶସ୍ୱୀ କବି ସୀତାକାନ୍ତ ମହାପାତ୍ର ନିଜକୁ ନିଜେ ବୁଝାନ୍ତି—

‘ ..ସାରା ଜୀବନଟା
ମିଛଟାରେ ମଣିଷଟେ ମାତିଅଛୁ ପିଲାଙ୍କ ଖେଳରେ
ଶବ୍ଦ ସିନା ଗ୍ରୁପ୍‌ଥାଂନଟ, ଜାଲଛବି
ବାସ୍ତବତା କେବେହେଲେ ଛୁଇଁହୁଏ
ଶବ୍ଦର ହାତରେ ।’

(ଆରଦୃଶ୍ୟ)

ଶବ୍ଦ-ବିଧୃତ ଚିତ୍ରର ନ୍ୟୂନତା ଆଙ୍କିବାକୁ ଯାଇ କବି ଏଠାରେ ସରଚନା କର୍ମକୁ ‘ପିଲାଖେଳ’ ବୋଲି ଝେକ୍‌ଠୋକ୍ କହିଛନ୍ତି । ପୁଣି କହନ୍ତି—

‘ଶବ୍ଦ କାହିଁ, ଶବ୍ଦ କାହିଁ କବି
ନିବିଡ଼ତମ ଗୋପନ ଶୋକ ପାଇଁ ।’

(ଆରଦୃଶ୍ୟ)

ବାସ୍ତବିକ ନିବିଡ଼ତମ ଅନୁଭୂତିର ଉଚ୍ଚାରଣ ପାଇଁ ଶବ୍ଦର ନିଅଣ୍ଟପଣ କେଉଁ କବି ଭୋଗିନାହିଁ ? ଅନୁଭବର ତୀବ୍ରତା ଶବ୍ଦ ମାଧ୍ୟମରେ ଖର୍ବ ହୋଇଯିବାର ଅଭିଜ୍ଞତା କେଉଁ କବି ହାସଲ କରିନାହିଁ ? ଶବ୍ଦ-ବିଧୃତ ଚିତ୍ର ବାସ୍ତବ ଚିତ୍ରଠାରୁ କିଛିଟା ଉଣା ରହିବ । ବାସ୍ତବ ସୌନ୍ଦର୍ଯ୍ୟ ଶବ୍ଦ ମାଧ୍ୟମରେ ବିମୂର୍ତ୍ତି ହୋଇପାରିବ ନାହିଁ । ଏହି ଅପାରଗତାକୁ ଆଖି ଆଗରେ ରଖି କବିର ସୌନ୍ଦର୍ଯ୍ୟ ଅଙ୍କନ କର୍ମକୁ ବିଶ୍ଳେଷଣ କରିବାକୁ ଆମେ ବାଧ୍ୟ ।

ରହସ୍ୟ ସର୍ବଦା ପ୍ରକାଶର ଊର୍ଦ୍ଧ୍ୱରେ ରହୁଥିବାରୁ ଓ ସୁନ୍ଦରତମ ସହ ରହସ୍ୟମୟତାର ଅବିଚ୍ଛେଦ୍ୟ ସଂଶ୍ଳେଷ ହେତୁରୁ କବିର ଚିତ୍ରାଙ୍କନ ପରିପୂର୍ଣ୍ଣତା ହାସଲ କରି ପାରିବ ନାହିଁ । ନାରୀସୌନ୍ଦର୍ଯ୍ୟର ଯଥାର୍ଥ ଅଙ୍କନ ପ୍ରୟାସରେ ଚଳିତ ଶତାବ୍ଦୀର ଦୁଇଜଣ

ବିଶିଷ୍ଟ କବି କପରି ରହସ୍ୟମୟତାକୁ ସ୍ୱୀକାର କରିନେଇଛନ୍ତି, ଏଠାରେ ତାହା ଲକ୍ଷ୍ୟ କରାଯାଇ ପାରେ । ନାରୀର ଦୃଷ୍ଟରୂପର ଅନ୍ତରାଳରେ ଏକ ବିପୁଳତର ରୂପର ସ୍ପନ୍ଦନ ଅନୁଭବ କରି ସେମାନେ ଚମତ୍କୃତ ହୋଇଛନ୍ତି ଓ ସେହି ଅନୁଭବକୁ ରୂପଦେବାକୁ ଅଭିଜ୍ଞତା ଓ ଶବ୍ଦ ଉଭୟ ଅଯଥେଷ୍ଟ ମନେହୋଇଥିବାର ହୃଦୟଙ୍ଗମ କରିଛନ୍ତି । ନାରୀରୂପବହ୍ୱଳ ବିଶ୍ୱକବି ରବୀନ୍ଦ୍ରନାଥ କହିଥିଲେ, 'ଅର୍ଦ୍ଧେକ ମାନବୀ ତୁମି, ଅର୍ଦ୍ଧେକ କଲ୍ପନା'···ବାସ୍ତବିକ୍ ସୌନ୍ଦର୍ଯ୍ୟ-ଦର୍ଶନ-ଜାତ ଉଲ୍ଲାସକୁ କେତେ ପରିମାଣରେ ସାକାର କରିବାକୁ କବି ଯୋଗ୍ୟ ହୋଇପାରେ ? ସୌନ୍ଦର୍ଯ୍ୟ ପୁଣି ରହସ୍ୟ ଘନ, ସୁନ୍ଦରୀ ନାରୀ ଏଠାରେ ଅନୁଭବର ବହୁ ନୂତନ ଦିଗନ୍ତ ଉନ୍ମୋଚିତ କରେ । ତାକୁ ଚିତ୍ରିବାକୁ କବିର ଶକ୍ତି କାହିଁ, ଭାଷା ବା କାହିଁ ? ମାନବୀୟତାକୁ ଅତିକ୍ରମ କରିଯାଉଥିବା ସେହି ଅନିର୍ବଚନୀୟ ସୌନ୍ଦର୍ଯ୍ୟାଭିବ୍ୟକ୍ତି ପାଇଁ କବିଚିତ୍ତ କଲ୍ପନାର ଶରଣାପନ୍ନ ହୋଇ ନିଷ୍କୃତି ଲୋଡ଼େ । ସେହିପରି ଜ୍ଞାନପୀଠ ପୁରସ୍କାର ବିଜେତା କବି ସ୍ୱର୍ଗତ ରାମଧାରୀ ସିଂହ ଦିନକର ଦ୍ୟୁଲୋକ ରୂପସୀ ଉର୍ବଶୀଙ୍କ ରୂପଶୋଭା ବର୍ଣ୍ଣନା କରିବାକୁ ଯାଇ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଛନ୍ତି । ସେ ତ ସାଧାରଣ ସୌନ୍ଦର୍ଯ୍ୟ ନୁହେଁ । ରହସ୍ୟ-ଗୁମ୍ଫିତ, ଆତ୍ମଉଦ୍‌ବୋଧକ ଏହି ସୌନ୍ଦର୍ଯ୍ୟ ଯେ ଦେଶ-କାଳ-ପାତ୍ରକୁ ଲଙ୍ଘି ଯାଉଛି—ଲଙ୍ଘି ଯାଉଛି କବିର ଦେହର ସ୍ପନ୍ଦନକୁ, ଆତ୍ମାର ଉଲ୍ଲାସକୁ, ଅବାଙ୍ମାନସଗୋଚର ଏକ ଅଦୃଷ୍ଟପୂର୍ବ ତନ୍ମୟତାରେ ଆକାଶ-ପୃଥିବୀ ରୂପାନ୍ତରିତ ହୋଇଯାଉଛି । ପ୍ରେମବହ୍ୱଳ ପୁରୁରବା ସ୍ୱର୍ଗୋଦ୍ୟାନରେ ଉର୍ବଶୀଙ୍କୁ ଦେଖି ମୁଗ୍‌ଧ ଦୃଷ୍ଟିରେ ପ୍ରଶ୍ନ କରୁଛନ୍ତି—

'କ୍ୟା ନାରୀ ବନ୍‌କର୍ ନିକଲ୍ ପଡ଼ୀ ତୁମ୍
ନାରାୟଣ୍ କୀ ମହାକଲ୍‌ପନା ସେ
ଏକାଏକ୍ ମନ୍ ସେ···'

ଏଠାରେ ସୌନ୍ଦର୍ଯ୍ୟର ରସଘନ ଚିତ୍ର ନିକଟରେ ବାସ୍ତବତା ପରାସ୍ତ—କଲ୍ପନାହିଁ ଏକମାତ୍ର ଚିତ୍ରକାର । ସୌନ୍ଦର୍ଯ୍ୟଦର୍ଶନର ସାମଗ୍ରିକତା କଳ୍ପନାର ବିନାଶ୍ରୟରେ ପରିସ୍ଫୁଟ ହୋଇପାରୁ ନାହିଁ । ପୁଣି ମାନବୀୟ କଲ୍ପନାରେ ଏ ସୌନ୍ଦର୍ଯ୍ୟ ଅବଧାରିତ ହୋଇପାରୁ ନାହିଁ—ଐଶୀ କଲ୍ପନାର ସହାୟତା ଲୋଡ଼ୁଛି । ଉପଲବ୍‌ଧି ଏଠାରେ ଦୃଷ୍ଟ ରୂପକୁ ଲଙ୍ଘନ କରିଛି । ଅନୁଭୂତି ଏଠାରେ ବିପୁଳ ଓ ରହସ୍ୟ ଜଡ଼ିତ । ଦୃଷ୍ଟିରେ ଅବଧାରିତ ସୌନ୍ଦର୍ଯ୍ୟଠାରୁ କଲ୍ପନାର ସାହଚର୍ଯ୍ୟରେ ସାକାର ସୌନ୍ଦର୍ଯ୍ୟ ମୂର୍ତ୍ତି ଏଠାରେ ବିପୁଳତର—ଅନୁଭୂତିର ଅସଂଖ୍ୟ ରୁଦ୍ଧ ଦ୍ୱାରକୁ ଉନ୍ମୋଚନ କରିବାରେ ସମର୍ଥ । ସୁନ୍ଦରୀ ନାରୀଠାରୁ ସୌନ୍ଦର୍ଯ୍ୟ ବିକୀରିତ ହୋଇ ଦିଗ୍‌ବିଦିଗ ପ୍ରସରି ଯାଉଛି । ସୌନ୍ଦର୍ଯ୍ୟର ସେ ମହା ସଞ୍ଚରଣ ମଧ୍ୟରେ ଦ୍ରଷ୍ଟା ଅଭିଭୂତ । ସ୍ୱାନୁଭବକୁ ଶବ୍ଦଗତ କରିବାରେ ତା'ର ଅକ୍ଷମତା ଅନେକ । ଶବ୍ଦଗତ ହୋଇ ନପାରିଥିବା ଅଂଶତକ ଏଠାରେ କଲ୍ପନାଶ୍ରୟୀ ହୋଇପଡ଼ିଛି ।

## ସୌନ୍ଦର୍ଯ୍ୟ ଓ ଶୃଙ୍ଖଳା

କବିତା ଯାହା ଉଚ୍ଚାରଣ କରେ, ତାହା ସତ୍ୟର ଏକ ରୂପ । ସତ୍ୟ ପୁଣି ଅବିକଳ୍ପ । ତେଣୁ ଏଠାରେ କବିତାର ସମ୍ମୋହନ-ଶକ୍ତି ହିଁ କବିତାର ସତ୍ୟ । କବି କୀଟ୍‌ସ୍‌ଙ୍କ ବକ୍ତବ୍ୟ ଏଇ ପରିପ୍ରେକ୍ଷୀରେ ସ୍ୱୀକୃତ 'Beauty is truth, truthl beauty...' ସତ୍ୟ ଯେଉଁଠି, ଶୃଙ୍ଖଳା ହିଁ ସେଠାରେ ବିଦ୍ୟମାନ—ସୌନ୍ଦର୍ଯ୍ୟସହ ଶୃଙ୍ଖଳାର ଅବସ୍ଥାନ ସର୍ବସମ୍ମତ । କବିତାର ଆତ୍ମିକ ଓ ଆଙ୍ଗିକ ଯେତେବେଳେ ପରସ୍ପରର ସର୍ବାଧିକ ସହାୟକ ହୁଅନ୍ତି, ସେତେବେଳେ ହିଁ ଶୃଙ୍ଖଳା ପ୍ରତିଷ୍ଠିତ ହୋଇଥାଏ । ଚିତ୍ତବୃତ୍ତିଗତ ଗଭୀରତା ଓ ସ୍ୱଚ୍ଛତା ସହ ଆଙ୍ଗିକର ଉପଯୁକ୍ତ ପ୍ରୟୋଗ ଶୃଙ୍ଖଳା ପ୍ରତିଷ୍ଠା କରେ । ଏହି ଶୃଙ୍ଖଳା ହିଁ ସୌନ୍ଦର୍ଯ୍ୟର ଜନନୀ । ଉପଲବ୍‌ଧିର ସ୍ୱଚ୍ଛତା ଓ ଗଭୀରତା ସର୍ବୋତ୍ତମ ଆଙ୍ଗିକକୁ ଆକର୍ଷଣ କରିଥାଏ । ଏଠାରେ କବିର ଅନ୍ତର୍ଜଗତର ଉପଲବ୍‌ଧିର ଶାଣିତତା ଓ ସେହି ଉପଲବ୍‌ଧିର ରୂପାୟନ-ଦକ୍ଷତାକୁ 'ଶୃଙ୍ଖଳା' ରୂପେ ଗ୍ରହଣ କରାଯାଉଛି । ଗଭୀର ଅନୁଭବକୁ ମୂର୍ତ୍ତି କରିବାକୁ ଶବ୍ଦ ଓ ଛନ୍ଦ ଅନାୟାସରେ ଅବତରଣ କରିଥାଆନ୍ତି । ଯେଉଁଠି ଅନୁଭବ ଅଗଭୀର ଓ କ୍ଳିଷ୍ଟ, ପ୍ରକାଶ ସେଠାରେ ପ୍ରଭାବଶାଳୀ ହୋଇପାରେ ନାହିଁ । ଫଳରେ ଶୃଙ୍ଖଳା ବ୍ୟାହତ ହୋଇଥାଏ, ସୌନ୍ଦର୍ଯ୍ୟ ରହେ ଅନୁପସ୍ଥିତ । ଗଭୀର ଅନୁଭବର ଆକର୍ଷଣରେ ଶବ୍ଦ ଓ ଛନ୍ଦ ସ୍ୱତଃ ଓହ୍ଲାଇ ଆସିଥାଆନ୍ତି ଦୃଶ୍ୟଜଗତକୁ । ସୌନ୍ଦର୍ଯ୍ୟ ନିଷ୍ପତ୍ତି ପାଇଁ ଶୃଙ୍ଖଳା ଅନିବାର୍ଯ୍ୟ । ଆତ୍ମିକ ଅନୁଭବ ଓ ପ୍ରଭାବଶାଳୀ ରୂପରଚନାର ମଣିକାଞ୍ଚନ ସଂଯୋଗ ହିଁ କାବ୍ୟିକ ଶୃଙ୍ଖଳା ରୂପେ ସର୍ବଜନବିଦିତ ।

ପୃଥିବୀର ଯେ କୌଣସି ବସ୍ତୁ ବା ପରିବେଶ ହଜାର ହଜାର ବର୍ଷ ଧରି କବିତାର ଉପଜୀବ୍ୟ ହେଲେହେଁ ସେଗୁଡ଼ିକ ନୂତନତା ହରାନ୍ତି ନାହିଁ । କାରଣ ସାଧାରଣଭାବେ ସମସ୍ତେ ଜାଣିଥିବା ଘଟଣା କବି ଆମକୁ ଜଣାଇବାକୁ ଯାଏ ନାହିଁ । ସର୍ବଜନଜ୍ଞାତ ସେ ଘଟଣାର ଯେଉଁପରି ମୂଲ୍ୟାୟନ କବି କରିଥାଏ, ସେହିପ୍ରକାର ମୂଲ୍ୟାୟନ ହିଁ ତା'ର ଅଭିବ୍ୟକ୍ତି ମଧ୍ୟରେ ପ୍ରକଟିତ ହୋଇଥାଏ । ପ୍ରେମ, ଘୃଣା, ଜୀବନ, ମୃତ୍ୟୁ ଆଦି ଘଟଣାକୁ ସାଧାରଣଭାବେ ଆମେ ଯେପରି ଜାଣୁ, କବି ଠିକ୍ ସେହିପରି କହି ନଥାଏ । ପ୍ରେମ, ଘୃଣା, ମୃତ୍ୟୁ ଆଦିର ଯେଉଁ ଚେହେରା କବିର ସଚେତନ ମାନସପଟରେ ଅଙ୍କିତ ହୋଇଥାଏ—ସେହି ଚେହେରାକୁ ସେ ଆମ ସମ୍ମୁଖରେ ଉପସ୍ଥାପିତ କରିଥାଏ । ଆମେ ସବୁ ଯାହା ଦେଖି ନଥାଉ, ଅନୁଭବ କରି ନଥାଉ, କବି ସେସବୁକୁ ପ୍ରତ୍ୟକ୍ଷୀଭୂତ କରାଇ ଆମ ଅଭିଜ୍ଞତାର ପରିସରକୁ ପ୍ରଶସ୍ତ କରେ । ପୁରାଣଯୁଗରୁ ବିଦ୍ୟମାନ ସେହି ସକଳ ବସ୍ତୁ, ପରିବେଶ, ଘଟଣା ବା ଚରିତ୍ର ବା ଆବେଗକୁ ସ୍ୱ-ବ୍ୟକ୍ତିବାଦିତାରେ ସେ ରୂପାନ୍ତରିତ କରିଥାଏ—ସେହି ରୂପାନ୍ତର ଆମେ ଦେଖୁ ।

## ବାସ୍ତବ ଓ ଆଦର୍ଶ

ସଂସାରର ସକଳ ଧକ୍କା, ପ୍ରତାରଣା, ଦୁଃଖ ଓ ହାହାକାର ଭିତରେ କବି ତଥାପି ଜୀବନସହ ବୁଝାମଣାର ସୂତ୍ର ଖୋଜୁଥାଏ । ଅସୁନ୍ଦରକୁ ସ୍ୱ-ଆତ୍ମାର ରଙ୍ଗରେ ଅନୁରଞ୍ଜିତ କରିବାର ପ୍ରୟାସ ରଖେ ଏବଂ ହିଂସ୍ର, କୁତ୍ସିତ ପଶୁକୁ, ଶୃଙ୍ଖଳିତ ଓ ଆୟତ୍ତାଧୀନ କରିବାର ସ୍ୱପ୍ନ ଦେଖେ । ଏହି ସ୍ୱପ୍ନ ଭଙ୍ଗୁର ହୋଇପାରେ—ତଥାପି କବିର ଜଗତ ସ୍ୱପ୍ନର ଜଗତ । ସ୍ୱପ୍ନର ଜଗତ ବୋଲି ଯେ ବାସ୍ତବଜଗତ ସହ ତା'ର କୌଣସି ଯୋଗାଯୋଗ ନାହିଁ—ଏହା ବୁଝିବା ଭୁଲ୍ ହେବ । ବାସ୍ତବ ଜଗତ କବିର ଅଭିଜ୍ଞତାର ଜଗତ—ସ୍ୱପ୍ନର ଜଗତ ତା'ର ଅଭିଜ୍ଞତାରୁ ଉଦ୍ଭୂତ ସୂକ୍ଷ୍ମ ଏକ ଅନୁଭବର ଜଗତ । ଏହି ଜଗତ ବାସ୍ତବ ଜଗତର ପରିପୂରକ—କବିର କାମ୍ୟ । କବିର ଆଦର୍ଶ ଜଗତ । ମାତ୍ର .. ବାସ୍ତବ ଜଗତର ଅପୂର୍ଣ୍ଣତାର ପୃଷ୍ଠଭୂମିରେ ପରିପୂର୍ଣ୍ଣତାର ସମ୍ଭାବନା ଧରି ସ୍ୱପ୍ନର ଜଗତ ଗଢ଼ିଉଠେ । ଏହି ଜଗତ ମାନବମାତ୍ରର ଈପ୍‌ସିତ, ଆନନ୍ଦଦାୟୀ । ସାଂପ୍ରତିକ କାଳର ମନୁଷ୍ୟ ସ୍ୱପ୍ନଭଙ୍ଗ, ଅବିଶ୍ୱାସ, ସନ୍ଦେହ ଓ ଅଶାନ୍ତିରେ ଘାରି ହେଉଛି—ଆକଣ୍ଠ ବୁଡ଼ି ରହିଛି ପ୍ରାୟ । ଅଥଚ ମଣିଷ ଜୀବନର ଲକ୍ଷ୍ୟ ହେଉଛି ବିଶ୍ୱାସ, ପ୍ରେମ ଓ ଶାନ୍ତି ମଧ୍ୟରେ ବଞ୍ଚିରହିବା । ପ୍ରତି ମୁହୂର୍ତ୍ତରେ ମଣିଷ ତା'ର ମୌଳିକ ଆବେଗଠାରୁ ବଞ୍ଚିତ ହେଉଛି—ମୌଳିକ ଅଭୀପ୍‌ସାଠାରୁ ଦୂରବର୍ତ୍ତୀ ହେଉଛି । ତେଣୁ ତା'ର ଚିର ଈପ୍‌ସିତ ଧନଲାଗି ସେ ବ୍ୟାକୁଳ, ଛଟପଟ ହେଉଛି । ବିଶ୍ୱାସ, ପ୍ରେମ ଓ ଶାନ୍ତି ଦ୍ୱାରା ଗଠିତ ଏକ ବରଣୀୟ ଜଗତରେ ବାସକରିବା ନିମିତ୍ତ କାମନା କରୁଛି । ସଚେତନ ବ୍ୟକ୍ତିଟିଏ ଭାବରେ କବିର ଏହି କାମନା ଅତୀବ ତୀବ୍ର । ବାସ୍ତବରେ ଯାହା ତା' ପାଇଁ ଦୁର୍ଲଭ । ସ୍ୱପ୍ନର ଜଗତ ସେହି ଦୁର୍ଲଭ ଧନରେ ପରିପୂର୍ଣ୍ଣ । ଅସୌନ୍ଦର୍ଯ୍ୟର ନିଦୃତ କୋଳାହଳ ଭିତରେ କବିର ଦୃଷ୍ଟି ସୌନ୍ଦର୍ଯ୍ୟ ସନ୍ଧାନରେ ବ୍ୟାପୃତ ରହି ଯେଉଁ ବାସ୍ତବ ସୌନ୍ଦର୍ଯ୍ୟ ପ୍ରତ୍ୟକ୍ଷ କରୁଛି ପୁଣି ଯେଉଁ ସୌନ୍ଦର୍ଯ୍ୟ ବାସ୍ତବ ହେବାକୁ ଉଦ୍ୟମରତ—ଏହି ଦୁଇ ପ୍ରକାର ସୌନ୍ଦର୍ଯ୍ୟର ଉପାସନାରେ ତା'ର କବି ଜୀବନ ଅନୁବ୍ରତୀ ହୋଇଛି ।

## ସୌନ୍ଦର୍ଯ୍ୟ ଓ ସମ୍ମୋହନ

ସୌନ୍ଦର୍ଯ୍ୟ ମାତ୍ରେ ଆନନ୍ଦଦାୟୀ । ଆନନ୍ଦ ଏଠାରେ କାବ୍ୟାନନ୍ଦର ରସାସ୍ୱାଦନ-ଜନିତ ଅଦ୍‌ଭୂତଭାବ ବା ଆହ୍ଲାଦ ଅର୍ଥରେ ଗ୍ରହଣ କରାଯାଉଛି, କିନ୍ତୁ କବିତା କ'ଣ କେବଳ ସୌନ୍ଦର୍ଯ୍ୟର ଉପାସନା କରେ ? ନନ୍ଦନବନର ଶୋଭା କେବଳ ଆଙ୍କିବସେ ? ନର୍କର ଭୟାବହତାକୁ ରୂପଦେବା କ'ଣ ତା'ର କବି କର୍ମର ବହିର୍ଭୂତ ? ନର୍କର ବର୍ଣ୍ଣନା କେବଳ କୁତ୍ସିତ, ବୀଭତ୍ସ ବା ଭୟଙ୍କର ହେବ, ସୁନ୍ଦର ହୋଇ ପାରିବ ନାହିଁ—ଏହା ଏକପ୍ରକାର ଯୁକ୍ତି ହୋଇପାରେ । କିନ୍ତୁ ଘଟଣା ବା ଦୃଶ୍ୟକୁ ଯଥାର୍ଥଭାବେ ଅଙ୍କନ କରି ବାସ୍ତବରୂପେ ପ୍ରତୀତ କରାଇବା କବିତାର ପ୍ରକୃତ ସୌନ୍ଦର୍ଯ୍ୟ । କବିତାରେ ନନ୍ଦନତତ୍ତ୍ୱ

ଅର୍ଥ କେବଳ କାବ୍ୟବର୍ଣ୍ଣିତ ସୌନ୍ଦର୍ଯ୍ୟ ଚନ୍ଦ୍ର ନୁହେଁ । ନନ୍ଦନତତ୍ତ୍ୱ କବିତାର ସମ୍ମୋହନ ଶକ୍ତିକୁ ସୂଚିତ କରେ । ଏହି ଶକ୍ତି ବକ୍ତବ୍ୟକୁ କବିତା ପଦବାଚ୍ୟ କରିଥାଏ । ବକ୍ତବ୍ୟକୁ ଅସାଧାରଣତ୍ୱ ପ୍ରଦାନ କରିଥାଏ । ତେଣୁ କବିତାର ସୌନ୍ଦର୍ଯ୍ୟ ହିଁ ତା'ର ସମ୍ମୋହକ ଶକ୍ତି । କବିତା ନାରୀର ରୂପଶୋଭା ଅଙ୍କିପାରେ, ଚନ୍ଦିପାରେ ପ୍ରକୃତିର ସାୟଂକାଳୀନ ବର୍ଣ୍ଣୋତ୍ସବ, ପ୍ରସ୍ତୁତ ବି କରିପାରେ ନର୍କର ଭୟଙ୍କର ପରିବେଶ, ଅନ୍ଧକାରର ଅତଳ ଗହ୍ୱରକୁ ମଧ୍ୟ ପ୍ରତ୍ୟକ୍ଷୀଭୂତ କରାଇ ପାରେ । ତେଣୁ ସାର୍ଥକ ସର୍ଜନା ହିଁ ସୁନ୍ଦର । ସୌନ୍ଦର୍ଯ୍ୟ ଯେ କେବଳ ବେପଥୁ ସୃଷ୍ଟି କରିବାକୁ ସମର୍ଥ ହୁଏ, ତାହା ନୁହେଁ, ଦୁଃଖପୂର୍ଣ୍ଣ, ବିୟୋଗାନ୍ତକ କବିତା ମଧ୍ୟ ଶରୀରକୁ ରୋମାଞ୍ଚିତ କରେ—ହୃଦୟରେ ଭରିଦିଏ ରସମୟ ଆହ୍ଲାଦ । କବିତାର ଯେଉଁ ଗୁଣ ପାଠକକୁ ବିମୋହିତ ବା ବିଚଳିତ (affected) କରେ ବା ପାଠକର ଉପଲବ୍‌ଧିର ସକଳ ଦ୍ୱାରକୁ ଖୋଲିଦିଏ—ଶବ୍ଦ ଗଠିତ ଏକ ରୂପକୁ ଇନ୍ଦ୍ରିୟଗ୍ରାହ୍ୟ କରାଏ—ସେହି ଗୁଣହିଁ କବିତାର ସୌନ୍ଦର୍ଯ୍ୟ । ତେଣୁ ଯଥାର୍ଥରେ ନୟନାଭିରାମ ରୂପର ଅଙ୍କନ କେବଳ ସୁନ୍ଦର ହୋଇ ନ ପାରେ । ବୀଭତ୍ସତାର ଅଙ୍କନରେ ଯେତେବେଳେ ବୋଧଶୀଳ ପାଠକ ବୀଭତ୍ସ ଅନୁଭବରେ ଥରି ଉଠେ, ଶିହରି ଉଠେ, ସେତେବେଳେ ହିଁ ବୀଭତ୍ସରସ ଆସ୍ୱାଦିତ ହୁଏ ଓ ବୀଭତ୍ସ ରସାଶ୍ରୟୀ କବିତାର ତାହାହିଁ ଯଥାର୍ଥ ସୌନ୍ଦର୍ଯ୍ୟ । ଅନୁଭବକୁ ସଞ୍ଚିତ୍ ଓ ପରିପୁଷ୍ଟ କରିବା କବିତାର ସମ୍ମୋହକ ଶକ୍ତିର କର୍ମ । କବି କାଳାନୁଗତ ଦୁଃଖ, ଦୁଃସ୍ଥିତିର ଚନ୍ଦ୍ର ଆଙ୍କୁ ବା କାଳାତିକ୍ରମ୍ୟ ଅଭୀପ୍ସାକୁ ସାକାର କରୁ—ଉଭୟ କ୍ଷେତ୍ରରେ ଏହି କବିତାତ୍ୱ ହିଁ କବିତାର ସାର୍ଥକତା କବିତାର ସୌନ୍ଦର୍ଯ୍ୟ । କବିତାର ସୌନ୍ଦର୍ଯ୍ୟ ଦୃଷ୍ଟି ଯଥାର୍ଥରେ କବିତାର ରସସଞ୍ଚାର ଯୋଗ୍ୟତାକୁ ବୁଝାଏ । ମୃତ୍ୟୁ ବା ଭୟଙ୍କର ପରିବେଶର ସାର୍ଥକ ଚନ୍ଦ୍ରଣକୁ ବିଶ୍ଳେଷଣ କରାଯାଉ । ଭୟଙ୍କର ଓ ନୈରାଶ୍ୟଜନକ ମୃତ୍ୟୁକବଳିତ ଏକ ପରିବେଶର ସଫଳ ଚନ୍ଦ୍ର କବି ରମାକାନ୍ତଙ୍କ ଅଙ୍କନରେ—

'ଅନ୍ଧାର ବରଗଛଟିଏ, ଦର୍କା ନାହିଁ ତା'ର
ତା' ଭିତର ଭୀଷଣ କାକର
ସେ ବରଗ ଦେଖାଯାଏ ମୋର ଆତ୍ମା ପରି
କମ୍ବା ଆତ୍ମହତ୍ୟା ପରି, ସେ ବରଗ ଗଛଟିଏ ତା'ର
ଡାଳ ଭାଙ୍ଗିଯାଏ କଳା ଡାଳମୂଳ ଭରରେ
ସେ ଡାଳମୂ ତୋଳିବାକୁ ହାତ ଲମ୍ବିଯାଏ
ମରିଯାଇଥିବା ଶ୍ରେଷ୍ଠ ବନ୍ଧୁମାନଙ୍କର—'

(ସଚିତ୍ର ଅନ୍ଧାର ପୃ : ୧୬୨)

ଏହା କେବଳ ଏକ ପରିତ୍ୟକ୍ତ ଅଶୁଭ ବରଗ ନୁହେଁ, କବିଙ୍କ ଆତ୍ମାର ଚେହେରା ସହ ଏହି ବରଗର ସାଦୃଶ୍ୟ ରହିଛି । ଏହି ପରିବେଶରୁ ଭୟାବହତା ଓ ନୈରାଶ୍ୟ ତୀବ୍ର

ବେଗରେ ବିଚ୍ଛୁରିତ ହୋଇ ପଡ଼ୁଛି ଯେତେବେଳେ ମୃତ ଶିଶୁଙ୍କ ହାତ କଳା ଡାଳମୂଳ ତୋଳିବାକୁ ନଇଁ ଆସୁଛି । ବିଫଳତାର ଏପରି ରୋମହର୍ଷକ ଚିତ୍ରରେ ପାଠକ ଶିହରିତ, ବିଚଳିତ ହୋଇ ପଡ଼ିବା ଅନିବାର୍ଯ୍ୟ । ତେବେ ଏହି ରସସିକ୍ତ କବିତାଂଶଟି ସୌନ୍ଦର୍ଯ୍ୟର ଝଲକଟିଏ ନହେବ କାହିଁକି ? ଯଦୁବଂଶ ଧ୍ୱଂସସୂଚକ ସେହି ଭୟାନକ ଅଭିଶାପର ସ୍ୱରୂପ କବି ସୀତାକାନ୍ତ ଚିତ୍ରଣ କରନ୍ତି—

'ଚମକି ଗୁହିଁଲେ ଋଷି ଅଗ୍ନିଶର୍ମା
ହଠାତ୍ ପଡ଼ିଲି ବଜ୍ର, ଥରିଗଲି ଆକାଶ ମେଦିନୀ
ନୀଳ ଆକାଶ ଓ ମେଘ ସବୁ ଗଲି ଅଗ୍ନିକି ଜଳି
ଖେଳ, ସ୍ମୃତି, ସ୍ୱପ୍ନ ସବୁ ଅପଘାତେ ମରିଗଲି
ଆକାଶେ ଉଠିଲି ଜଳି ଅଗ୍ନିର କୁଣ୍ଡଳୀ
ତରବାରି ଝଲସିଲି,ଭୂମିକମ୍ପେ ସାଗର ଫାଟିଲି
କଣ୍ଟାମୁଣ୍ଡ ସୂଅ ଛୁଟେ ଗାଁଆଁ ଦାଣ୍ଡେ—
ବ୍ୟବହୃତ ପଇଡ଼ର ପରି' ।

(ଯୁନନ୍ଦସ୍ବର ଉପକଥା)

ଏହି ଅଭିଶାପରେ ଏକ ପ୍ରଖ୍ୟାତ ରାଜବଂଶ ଧ୍ୱଂସ ହେବ—ସେହି ଅଭିଶାପ ଏକ ଅଦ୍ଭୁତ ଅଗ୍ନିପରି ଆକାଶକୁ, ମେଘକୁ ଜାଳି ଦେଉଛି—ସମୁଦ୍ର ବି ଫାଟି ଯାଉଛି ଭୂକମ୍ପରେ । ବ୍ୟବହୃତ ହୋଇ ସାରିଥିବା ପଇଡ଼ ଗଡ଼ିଲି ପରି କଣ୍ଟାମୁଣ୍ଡ ଗଡ଼ୁଛି । ଦୃଷ୍ଟି ସମକ୍ଷରେ ଅଭିଶାପର ଏକ ସୂଚନାତ୍ମକ ଚିତ୍ର ଆଙ୍କିଦେଉଥିବା ଏହି ଅଙ୍କନଟି ଅତୀବ ସୁନ୍ଦର ଓ ସାର୍ଥକ ନୁହେଁ କି ? ଏହାକୁ ସୌନ୍ଦର୍ଯ୍ୟ ବ୍ୟତୀତ ଆଉ କ'ଣ ବୋଲି ଅଭିହିତ କରାଯିବ ? ଦକ୍ଷିଣ ଆଫ୍ରିକାର ଦଳିତ ଜନତାର ସ୍ୱାଧିକାର ନିମିତ୍ତ ସ୍ୱରୋତ୍ତୋଳନ କରିଥିବା କବି ବେଞ୍ଜାମିନ୍ ମୋଲେସ୍‌ଙ୍କ ପାଇଁ ରଚିତ ନିମ୍ନୋକ୍ତ ପଂକ୍ତିଗୁଡ଼ିକରେ ନିଷ୍ଠୁରତା, ହିଂସ୍ରତା ଓ ବୀଭତ୍ସତାର ଭୟାବହ ଚିତ୍ରକୁ ନିରୀକ୍ଷଣ କରାଯାଉ—

'କଳା କଳା ମାଟିର ଗାଲରେ ଅବାଞ୍ଛିତ ଧଳା ଛଉ
କଳା ଭଅଁର ପାଣି ଉପରେ ଧଳା ଧଳା ବିଷ
ମୁଖର ସଫେଦ ଦାନ୍ତରେ ଚପ୍ ଚପ୍ ରକ୍ତ
ଜଲ୍ଲାଦ ହାତରେ କଣ୍ଟା ମୁଣ୍ଡ କବରି ।'

(କବର କଣ୍ଟା ମୁଣ୍ଡରେ ଜଳୁଛି ସୂର୍ଯ୍ୟ—ଆଶୁତୋଷ ପରିଡ଼ା)

ନିଷ୍ଠୁରତା ଓ ହିଂସ୍ରତାକୁ ସାକାର କରୁଥିବା ଏହି ପଂକ୍ତିଗୁଡ଼ିକ ସାର୍ଥକ ସୁନ୍ଦର ହୋଇ ପାରିଛନ୍ତି ।

ଈର୍ଷାଯୁକ୍ତ ମନର ଏକ ପ୍ରାଞ୍ଜଳ ଅଥଚ ହୃଦସ୍ପ-ସଂବେଦ୍ୟ କରୁଣ ଚିତ୍ର ଆଙ୍କନ୍ତି କବି ହରପ୍ରସାଦ । ଏଠାରେ ଅମୂର୍ତ୍ତି, ଶବ୍ଦରେ ମୂର୍ତ୍ତି ହୋଇ ଜୀବନର ସୌନ୍ଦର୍ଯ୍ୟ ଲାଭ କରିଥିବାର ଦେଖିବାକୁ ମିଳିଥାଏ—

'ସାଗୁଆନର ଫାର୍ଷା ଚଳାଇ
କେବଳ ଈର୍ଷାରେ
ବଢ଼ିଯାଉଥିବା ଅମଙ୍ଗଳଟାର
ମୁଣ୍ଡ ହାଣିବା କାମ
ରାତିରେ, ଶୋଇବା ଘରର
ଚଟାଣ ତଳେ
ଚେର ବ୍ୟାପିଯିବାର ଭ୍ରମ ।'

## ସୌନ୍ଦର୍ଯ୍ୟ ଓ କବି କୌଶଳ

କବିତାର ଏହି ସମ୍ମୋହନ କବିର ଶୈଳ୍ପିକ ଗୁରୁଣି ଉପରେ ଅନେକାଂଶରେ ନିର୍ଭରଶୀଳ । କବିତାର ଅଭିବ୍ୟକ୍ତ ପ୍ରେମ, ମୃତ୍ୟୁ, ସାମାଜିକ ପ୍ରତିବଦ୍ଧତା, ଯାହା ହେଉନା କାହିଁକି, ଏହି ସମ୍ମୋହକ-ଶକ୍ତି ରହିତ ହେଲେ କବିତା ତା'ର କଳାତ୍ମକ ମୂଲ୍ୟ ହରାଇ ବସେ । ଶବ୍ଦ ଓ ଛନ୍ଦକୁ କବି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ ବ୍ୟବହାର କରେ । ସ୍ୱର୍ଗ, ନର୍କ, ସୁଗନ୍ଧଯୁକ୍ତ ପୁଷ୍ପ, କୁତ୍ସିତ ମୃତ ଶରୀର—ଏସବୁର ଯଥାର୍ଥ ରୂପ ଦେବାକୁ ଯାଇ କବି ତଦନୁରୂପ ଶବ୍ଦ ଓ ଛନ୍ଦ ବ୍ୟବହାର କରିଥାଏ । ସାମ୍ପ୍ରତିକ କାଳର କବି ଅନେକ ବୈପ୍ଳବିକ ଧାରାକୁ ରୂପାୟିତ କରେ । କବିତାରେ ଶବ୍ଦକୁ ଅର୍ଥମୟତା ପ୍ରଦାନ କରି ସ୍ୱ-କବିକୌଶଳ ପ୍ରକଟିତ କରିବାରେ ସେ ଉଦ୍ୟମରତ । ପ୍ରତୀକ ସଂଯୋଜନା (ଗୋଟିଏ ବସ୍ତୁ ବା ଭାବ ମଧ୍ୟରେ ଅନ୍ୟ ଏକ ବସ୍ତୁ ବା ଭାବକୁ ଉପସ୍ଥାପନ କରିବା), ରୂପକାତ୍ମକ ଚିତ୍ରର ଅଙ୍କନ (ରୂପ ବା ଭାବଗତ ଚମତ୍କାରିତା ସଂଯୋଗରେ ଏକ ଇନ୍ଦ୍ରିୟ-ସମ୍ବେଦ୍ୟ ରୂପ ସୃଜିବା), ପରୋକ୍ଷ ବକ୍ତବ୍ୟର ସଂଯୋଜନା ଓ ଜାଗତିକ ଜୀବନର ଦୃଶ୍ୟ, ଘଟଣାଠାରୁ ସ୍ୱପ୍ନ ଉପାଦାନକୁ ଅଧିକ ଗୁରୁତ୍ୱ ଦେବା (ବାସ୍ତବର ଅସାମଞ୍ଜସ୍ୟକୁ ଆକ୍ଷେପ କରି ସ୍ୱପ୍ନ ମାଧ୍ୟମରେ ଈପ୍‌ସିତ ବାସ୍ତବତାର ସୂଚନା ଦେବା) ଆଜିର କବିତାର କଳାଗତ ଧର୍ମ । ଭାଷା ଏଠାରେ ଆଶ୍ଚର୍ଯ୍ୟଜନକ ଭାବେ ଗୁରୁତ୍ୱପୂର୍ଣ୍ଣ । ଶବ୍ଦ ଏଠାରେ ଅସାଧାରଣ ଅର୍ଥମୟ । କବିମାନେ ଶବ୍ଦର ଅନ୍ତର୍ହିତ ଶକ୍ତିକୁ ଅନୁଭବ କରିଥାଆନ୍ତି । କବିତାରେ ଶବ୍ଦ ତା'ର ଆକ୍ଷରିକ ଅର୍ଥ ପ୍ରକଟନ ପରେ ନୀରବ ରହିଯାଏ ନାହିଁ । ତାହା ଆକ୍ଷରିକ ଅର୍ଥଠାରୁ ଅଧିକ କିଛି ପ୍ରକଟ କରିଥାଏ । ରସବୋଧ-ସମ୍ପନ୍ନ ବିଦ୍ୱାନମାନଙ୍କ ଶବ୍ଦର ବ୍ୟଞ୍ଜନାର୍ଥ ବହୁ ଅର୍ଥ ପ୍ରତୀତ କରାଇପାରେ । ଶବ୍ଦର ବ୍ୟଞ୍ଜନାଶକ୍ତି ଏକ ସମୟରେ ରସଗ୍ରାହୀ ପାଠକର ବିବିଧ ଅନୁଭୂତିର ଦ୍ୱାର ଉନ୍ମୋଚିତ କରିଥାଏ । ସୁପ୍ରଯୁକ୍ତ ଶବ୍ଦର

ଶକ୍ତି ବିଷୟରେ ସୂଚନା ଦେବାକୁ ଯାଇ ବୈଦିକ ଋଷି ସେଦିନ ଘୋଷଣା କରିଥିଲେ—

'ଏକଃ ଶବ୍ଦଃ ସମ୍ୟକ୍ ଜ୍ଞାତଃ ସମ୍ୟକ୍ ସଂପ୍ରଯୁକ୍ତଃ ସ୍ୱର୍ଗେ ଲୋକେ ଚ କାମଧୁକ୍ ଭବତି ।'

ଅର୍ଥମୟ ଏକ ଶବ୍ଦ ସୁ-ପ୍ରଯୁକ୍ତ ହୋଇ ପାରିଲେ ଇହଲୋକରେ ତ ଫଳଦାୟୀ ହୋଇ-ଥାଏ । ପରଲୋକରେ ମଧ୍ୟ ମଙ୍ଗଳ ସାଧନ କରିଥାଏ । ଦୃଶ୍ୟ ରୂପ ଓ ଅଦୃଶ୍ୟ ରୂପ—ଏହି ଉଭୟବିଧ ରୂପର ବର୍ଣ୍ଣନା ସେହି ସାଧା ଶବ୍ଦ ମାଧ୍ୟମରେ ହୋଇଥାଏ, ଯେଉଁ ଶବ୍ଦର ଆକ୍ଷରିକ ଅର୍ଥ ସହ ଆମେ ପରିଚିତ । ସୁତରାଂ ସାଧାରଣ ଭାଷା ମଧ୍ୟ ଦେଇ ଅସାଧାରଣ ଭାବ ଅଭିବ୍ୟକ୍ତ ହୋଇଥାଏ । ଏହି ଅସାଧାରଣ ଅଭିବ୍ୟକ୍ତି ଶବ୍ଦର ବ୍ୟଞ୍ଜନାଧର୍ମ ଉପରେ ନିର୍ଭରଶୀଳ । ବ୍ୟଞ୍ଜନାଧର୍ମ ହିଁ ଭାଷାକୁ ରସଯୁକ୍ତ କରି କାବ୍ୟୋପଯୋଗୀ କରାଏ । କବିତାକୁ ସମ୍ମୋହନ-ଶକ୍ତି ପ୍ରଦାନ କରେ ।

ସଫଳ କବିତାରେ ଶବ୍ଦର ଗୁରୁତ୍ୱ ସାଧାରଣ ଅର୍ଥରେ ବିଲୁପ୍ତ ହୋଇଯାଏ । ପ୍ରତିଟି ଶବ୍ଦ ନିଜ ନିଜର ସ୍ୱତନ୍ତ୍ର ସତ୍ତା ହରାଇ ବିଶେଷ ଭାବେ ଅର୍ଥମୟ ହୋଇ ଉଠିଥା'ନ୍ତି ଏବଂ ସମ୍ମିଳିତ ଭାବେ ଚିତ୍ରଟିଏ ତୋଳି ଧରନ୍ତି । ଯେପରି ମାଟିରୁ ତିଆରି ଫୁଲଦାନୀରେ ମାଟି ଆଉ ମୁଖ୍ୟ ହୋଇ ନଥାଏ—ମାଟିର ଅନ୍ୟ ଏକ ରୂପ ପ୍ରତିଭାତ ହୁଏ । ମାଟି, ଫୁଲଦାନୀର ଆକାର, ରଙ୍ଗ ଓ ଚିତ୍ର ଅଭିନ୍ନ ଏକତ୍ୱ ଲାଭ କରିଥାଆନ୍ତି । ସେହିପରି ଶବ୍ଦ, ଛନ୍ଦ, ପ୍ରତୀକ ଓ ରୂପକ, ଚିତ୍ରକଳ୍ପ କବିତାଟିର ଉପାଦାନ ହେଲେହେଁ କବିତାର ସାମଗ୍ରିକ ରସାନୁଭୂତି ମଧ୍ୟରେ ଏଗୁଡ଼ିକ ନିଜ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ବିସର୍ଜିଦେଇ-ଥାଆନ୍ତି । ଗୋଟିଏ ରୂପକୁ ବା ଭାବକୁ ସଂପୂର୍ଣ୍ଣ କରିବାର ପ୍ରଚେଷ୍ଟାରେ ହିଁ ସେମାନଙ୍କର ସାର୍ଥକତା ଏବଂ ଏହି ସାର୍ଥକତା କବିତାର ସୁନ୍ଦରପଣ ବୋଲି ବୁଝିବାକୁ ହେବ ।

ଏହି ପରିପ୍ରେକ୍ଷୀରେ ସାଂପ୍ରତିକ ଓଡ଼ିଆ କବିତାରେ ପ୍ରକଟିତ ରାଶିରାଶି ଆକର୍ଷଣୀୟ, ତୀବ୍ର ରସାନୁଭୂତିରୁ ଅଳ୍ପ କେତୋଟିକୁ ବିଶ୍ଳେଷଣ କରାଯାଉ । ଏକ ଅଜଣା ମୂଳକର ପ୍ରଲୋଭନରେ, ଏକ ଅଶ୍ରୁତ ଡାକର ଆଦେଶରେ ଅନ୍ତରାତ୍ମା ସାରା ଜୀବନ ଛଟପଟ ହେଉଛି । ସେହି ଡାକର ଚିରନ୍ତନତା, କାରୁଣ୍ୟ ଓ ନିଃସଙ୍ଗତା ବୁଝାଇବା ନିମିତ୍ତ କବି ନିମ୍ନୋକ୍ତ ପଂକ୍ତିମାଳାରେ ରୂପଚିତ୍ରଟିଏ ତୋଳି ଧରିଲେ—

'ଡେଙ୍ଗା ଝାଉଁଗଛ ଡାଳଙ୍କ ସନ୍ଧିରେ
ତାରାଟିଏ ଦପ୍ ଦପ୍ କରୁଥିବା ମୁହୂର୍ତ୍ତିରେ
ଜଣାଯାଏ କିଏ
ବାରମ୍ବାର ମତେ ଡାକେ' ।

(ସଚିତ୍ର ଅନ୍ଧାର—ରମାକାନ୍ତ ରଥ)

ହୃଦୟର ନଗଣ୍ଯ ପୁଲକ ଓ ଅଶାନ୍ତି ଅନୁଭବକୁ ଶବ୍ଦ ମାଧ୍ୟମରେ ଗଢ଼ି ଯୋଇବା କବିର ବାହାଦୂରି । ସେହି ସଂରଚନା ଭାବ-ଉଦ୍‌ବୋଧକ ହେଲେ ହିଁ ସୌନ୍ଦର୍ଯ୍ୟ ପ୍ରକଟିତ ହୋଇ ପ୍ରସରିଯାଏ । କବି ସୌଭାଗ୍ୟଙ୍କ କବିତାରେ ଦୁଷ୍ମନ୍ତଙ୍କ ଦ୍ୱାରା ଅସ୍ୱୀକୃତ, ଆପଣା ଦୁଃଖ, ଗ୍ଲାନିରେ ଜର୍ଜରିତା ପ୍ରଣୟିନୀ ଶକୁନ୍ତଳାଙ୍କ ପ୍ରେମର ପରାକାଷ୍ଠା ପରିପ୍ରକାଶ ଲାଭ କରିଛି—

'କ୍ଲାନ୍ତଶ୍ରାନ୍ତ ପାରିଧିରୁ ସେ ଫେରୁଥିବେ, ମୁହଁ ଧୋଇବେ ଝରଣାରେ
ମୁଁ ଗୋଟେ ଝରଣା ପରି ବୋହି ଯାଉଥାଏ
ତାଙ୍କ ଵିବର୍ଣ୍ଣ ସ୍ମୃତିର ଅନ୍ଧାର ଭିତରେ
ମୁଁ ତାଙ୍କ ମନଲାଖି ଗୀତଟିଏ ଗାଉଥିଲି
କେବେ ବି ଚାଣୁ ନଥିଲି ଦେଖିବାକୁ
ଟିକିଏ ସ୍ନେହ ସୂର୍ଯ୍ୟାଲୋକର କୋଳରେ ଝୁଲି କେମିତି
ବନ୍ଦୀ ଏ ଲୁହ ମୋର ଚକ୍ ଚକ୍ କରୁଛି ଗୋପନରେ' ।

(ଶକୁନ୍ତଳା)

ଉପରୋକ୍ତ ସୁନ୍ଦର ଚରଣଗୁଡ଼ିକରେ ଶବ୍ଦ ଓ ଛନ୍ଦ ପରସ୍ପରର ନିକଟତମ ସାହଚର୍ଯ୍ୟ ଲାଭ କରିଛନ୍ତି ଓ ପ୍ରତ୍ୟେକ ଶବ୍ଦ ସୁପ୍ରଯୁକ୍ତ ହୋଇ ଏକ ସାମଗ୍ରିକ ରସାନୁଭୂତିରେ ସହାୟକ ହୋଇପାରିଛନ୍ତି । ସୌନ୍ଦର୍ଯ୍ୟାନୁଭୂତି ହିଁ ରସାନୁଭୂତିର ଅନ୍ୟନାମ । କାବ୍ୟ ପଠନ ମାତ୍ରେ କାବ୍ୟର ଯେଉଁ ଯୋଗ୍ୟତା ପାଠକକୁ କ୍ଷଣକ ପାଇଁ ହେଲେ ବି ଏକ ଚମତ୍କାରପ୍ରଦ, ନୂତନ ଅନୁଭବରେ ରସାଣିତ କରେ, ଉପସ୍ଥିତ ପରିବେଶରୁ ଆକର୍ଷିତ କରିନେଇ ଏକ ଅଙ୍କିତ ପରିବେଶରେ ଅଭିଷିକ୍ତ କରିଦେଇ ପାରେ ତାହା ହିଁ କାବ୍ୟର ସୌନ୍ଦର୍ଯ୍ୟରୂପେ ସ୍ୱୀକୃତ ହୋଇଥାଏ । ନୟନ ମନଲୋଭା, ହୃଦୟୋଲ୍ଲାସକାରିଣୀ ଅପ୍‌ସରି ହେଉ ବା ଭୟଙ୍କର, କୁଳମାନ ନର୍କ ହେଉ—କବିତାରେ ଏ ଉଭୟର ସାର୍ଥକ ବର୍ଣ୍ଣନା ହିଁ ସୌନ୍ଦର୍ଯ୍ୟ ବା ସମ୍ମୋହନ ରୂପେ ସର୍ବଜନବନ୍ଦିତ । ଏହି ସମ୍ମୋହନ ଅଭିବ୍ୟକ୍ତିକୁ କବିତା ପର୍ଯ୍ୟାୟକୁ ଉନ୍ନୀତ କରିଥାଏ ।

# ସାଂପ୍ରତକ କବତାରେ ସମାଜଚେତନା

କବିତା କବିର ଜୀବନାନୁଭୂତିର ବାଙ୍ମୟ ରୂପ । ବ୍ୟକ୍ତି ମଣିଷର ଗଭୀରତମ ଚିନ୍ତା କବିତା ମାଧ୍ୟମରେ ଅଭିବ୍ୟକ୍ତ ହୁଏ । କବି ଭିତରେ ରହିଛି ଏଇ ସମାଜର ଅସ୍ତିତ୍ୱ, ଠିକ୍ ଯେମିତି ସମାଜ ଭିତରେ ରହିଛି କବିର ଅସ୍ତିତ୍ୱ । କବି ଯାହା କହେ, ସମାଜକୁ ହିଁ କହେ । ସମାଜ ଭିତରେ ତା'ର ସଂରଚନାର ସୃଷ୍ଟି ଓ ସମାଜ ମାଧ୍ୟମରେ ହିଁ ସେ ସଂରଚନା ସଂପ୍ରେଷିତ ହୁଏ ବା ଅନ୍ୟଠି ପହଞ୍ଚେ । ପୁଣି କବିର ରଚନା ପରିସ୍ଥିତି ଦ୍ୱାରା ପ୍ରଭାବିତ । ପରିସ୍ଥିତି ସମାଜର ସ୍ଥିତି ଭିନ୍ନ ଅନ୍ୟ କିଛି ନୁହେଁ । ସଂରଚନା ମଧ୍ୟରେ ପ୍ରକଟିତ ସମାଜଚେତନା ଖୁବ୍ ସମ୍ଭବତଃ ସମାଜର ସ୍ଥିତି, ଲକ୍ଷ୍ୟ ଓ ପ୍ରଗତିକୁ ବୁଝାଏ । ସେହି ଦାୟିତ୍ୱ ମଧ୍ୟ ନିର୍ଦ୍ଧାରିତ କବିର ଯେ ସେ ଅନ୍ୟ ନିକଟରେ ପହଞ୍ଚିବ ଓ ସେଇଥିପାଇଁ ସେ ସମାଜ ସଂପର୍କରେ ସଜାଗ ରହେ । ଆପଣାର ଭାଷା ଓ ଭାବକୁ, ସମ୍ବେଦନକୁ ସମାଜର ଉପଯୋଗୀ କରିବା ନିଜର ସ୍ୱାଭାବିକ କର୍ମଭାବେ ଗ୍ରହଣ କରିଥାଏ କବିତା ହୃଦୟର ବ୍ୟାପାର । ସମ୍ବେଦନଶୀଳ ସମାଜରେ ଏହାର ସୃଷ୍ଟି ଓ ବ୍ୟକ୍ତି ଆଉ ସମାଜକୁ ପରସ୍ପରର ବୁଝାମଣାରେ କବିତା ଏକ କରିଦିଏ । କବିତାର ବ୍ୟକ୍ତିଗତତା ସମାଜର ପ୍ରତୀକ ହୋଇଯାଏ । ବ୍ୟକ୍ତି ସହ ବ୍ୟଷ୍ଟିକୁ ସଂଯୁକ୍ତ କରେ କବିତା ।

କବିର ସମାଜ ଏକ ସମୟଖଣ୍ଡର ସମାଜ ହେଲେହେଁ, ସେହି ସମୟଖଣ୍ଡରେ ପରମ୍ପରାର ଓ ପ୍ରଗତିର ଜୀବସତ୍ତା ନିହିତ ଥାଏ । କିନ୍ତୁ ସମୟଖଣ୍ଡଟି ଯାହା, ତା'ର କଳାଗତ ରୂପ ଠିକ୍ ସେଇଆ ନୁହେଁ । ସେଇଥିପାଇଁ ସମାଜକୁ ଚିତ୍ରଣ କଲାବେଳେ କବିତା ସମାଜର କେବଳ ପ୍ରତିଫଳନକୁ ଧାରଣ କରେ ନାହିଁ, ସମାଜର ଅନ୍ତର୍ନିହିତ ରୂପାନ୍ତରଣକୁ ମଧ୍ୟ ଧାରଣ କରିଥାଏ । ଭାବପ୍ରବଣ ମାଧ୍ୟମଟିଏ ହୋଇଥିବାରୁ କବିତା ସମାଜକୁ ପ୍ରତିଫଳିତ କରେ, ବିକୃତ କରେ ଓ ପ୍ରଭାବିତ ମଧ୍ୟ କରିଥାଏ । କବିତା ବାସ୍ତବଜୀବନର ଦର୍ପଣ ମାତ୍ର ନୁହେଁ, ଏହା ବାସ୍ତବତାକୁ ଆଲୋକିତ କରିଥାଏ । ପାଠକ ଜାଣେ ଯେ, ବାସ୍ତବଜୀବନ ଯାହା କବିତାଟି ଠିକ୍ ସେଇଆ ନୁହେଁ, ବରଂ ଦ୍ରବ୍ୟଦୃଷ୍ଟିର ସଂଯୋଗରେ କଳାଗତ ଉତ୍କର୍ଷ ଦ୍ୱାରା ଏଥିରେ ଜୀବନକୁ ରୂପାୟିତ କରାଯାଇଛି । ଜୀବନ, କଳା ଓ ପାଠକ ମଧ୍ୟରେ ଘନିଷ୍ଠତା ସ୍ଥାପନ କରିବା କବିତାର କୃତିତ୍ୱ । ସମାଜର ନାନା

ଦୁର୍ବଳତା, ମଣିଷର ଆଶାଭଙ୍ଗ, ଘଟଣାବଳୀର ଅଭିଳାଷ ଉପରେ ପ୍ରାଧାନ୍ୟ—ଏସବୁ କବିର ଚିନ୍ତା ଓ ଅନୁଭବକୁ ବହୁଭାବେ ଆନ୍ଦୋଳିତ କରେ ।

ବ୍ୟକ୍ତିପାଇଁ ସମାଜ କେବଳ ଆର୍ଥିକ ସମ୍ପର୍କର ଜାଲ ନୁହେଁ,- ଆତ୍ମିକ ସମ୍ପର୍କର ଜାଲ ମଧ୍ୟ । ସମାଜ ମଧ୍ୟରେ କାବ୍ୟାଭିବ୍ୟକ୍ତିର ସଂପ୍ରେଷଣ କ୍ରିୟା ସମ୍ପନ୍ନ ହେଉଥିବାରୁ ବ୍ୟକ୍ତି ଓ ସମାଜର ଆର୍ଥିକ ଓ ଆତ୍ମିକ ଉଭୟ ସମ୍ପର୍କର ସ୍ୱରୂପ କବିତାରେ ପ୍ରକଟିତ ହୁଏ । ସ୍ଥିତିର ଚିତ୍ର ଆଙ୍କି, ତାହାର ବିଷମତା ଓ ଅସ୍ପୃହଣୀୟତାକୁ ଦେଖାଇ କବି ସମାଜର ଲକ୍ଷ୍ୟ, ପ୍ରଗତି ଓ ଆତ୍ମିକ ଅଭୀପ୍ସାକୁ ସ୍ପଷ୍ଟ କରିଦିଏ । କିନ୍ତୁ ସମାଜର ଲକ୍ଷ୍ୟ ଓ ଅଭୀପ୍ସା କ'ଣ, ପ୍ରଗତିର ସ୍ୱରୂପ କେଉଁପରି ହୋଇପାରେ, ତାହା ସର୍ବାଦୌ କବିଦ୍ୱାରା ସ୍ଥିରୀକୃତ ହେବା ବାଞ୍ଛନୀୟ । ଉଦାହରଣ ସ୍ୱରୂପ, ଏକ ନିର୍ଦ୍ଦିଷ୍ଟ ଆର୍ଥିକ ଓ ପ୍ରଶାସନିକ ବ୍ୟବସ୍ଥାକୁ ସମାଜର ଲକ୍ଷ୍ୟ ବୋଲି କେହି କେହି ନିର୍ଦ୍ଧାରଣ କରୁଥିଲେ ମଧ୍ୟ କବି କୌଣସି ଦଳ ବା ଗୋଷ୍ଠୀର ମତବାଦକୁ ଆଖିବୁଜି ମାନିନେବା ଉଚିତ ନୁହେଁ । କାରଣ କୌଣସି ମତବାଦର ବାହକ ବା ପ୍ରଚାରକ ହେବା କବିର କାମ ନୁହେଁ । ସେ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ରୁଚିକୁ ଉପସ୍ଥାପିତ କରିବାରେ ବିଭ୍ରାନ୍ତି ଓ ବିପଦ ଥାଏ । ଉଦାହରଣ ସ୍ୱରୂପ—ସାମନ୍ତବାଦୀ ସଭ୍ୟତାର ଦାବୀରୁ ସୃଷ୍ଟ ଓଡ଼ିଆ କାବ୍ୟସାହିତ୍ୟକୁ ଗ୍ରହଣ କରିଯାଇପାରେ । ଏହି କାବ୍ୟ ସମ୍ଭାର ରୀତିଯୁଗରେ ବିସ୍ତାରଲାଭ କରିଥିଲା । ଏଥିରେ ମୁଖ୍ୟତଃ ନାରୀରୂପ ବର୍ଣ୍ଣନା, ଶୃଙ୍ଗାର ଚର୍ଚ୍ଚା, ରାଜସଭାର ଓ ରାଜପରିବାରର ଆଡ଼ମ୍ବର ପ୍ରାଧାନ୍ୟଲାଭ କରି ରାଜବର୍ଗଙ୍କ ମନୋରଞ୍ଜନ କରୁଥିଲା । ମଣିଷ ଜୀବନର ଓ ପ୍ରକୃତିର ବିପୁଳବ୍ୟାପ୍ତି ପ୍ରତି ଏହି କାବ୍ୟସାହିତ୍ୟ ପ୍ରାୟ ଆଖିବୁଜି ଦେଇଥିଲା । ଗୋଟିଏ ଗୋଷ୍ଠୀର ରୁଚିକୁ ସନ୍ତୁଷ୍ଟ କରିବାକୁ ଯାଇ ସମଗ୍ର ସମାଜର ରୁଚି ଓ ଅଭୀପ୍ସା ପ୍ରତି ଉଦାସୀନ ରହିଥିଲା । ତେଣୁ ସମାଜର ରୁଚି ଓ ଲକ୍ଷ୍ୟ କ'ଣ ତାହା କବି ନିଜେ ନିଜର ଚିନ୍ତା ଓ ଉପଲବ୍ଧି ଦ୍ୱାରା ସ୍ଥିର କରିବା ଉଚିତ । ନହେଲେ ସମାଜର ଅମଙ୍ଗଳ ଘଟିବା କିମ୍ବା କବିତାର ଅମର୍ଯ୍ୟାଦା ହେବା କିମ୍ବା ଉଭୟେ ହେବା ଅନିବାର୍ଯ୍ୟ । ସେଥିପାଇଁ ସମାଜର ଲକ୍ଷ୍ୟ ଓ ଅଭୀପ୍ସାକୁ ନିର୍ଣ୍ଣୟ କଲାବେଳେ କବି ଏହାକୁ ଆପଣାର ବିବେକର ଅଗ୍ନିରେ ଶୋଧନକରିବା ଉଚିତ । ତାହାହେଲେ ହିଁ ଜୀବନ ସମାଜର ଅଧିକ ଗଭୀର, ଅର୍ଥମୟ ଓ ସମୃଦ୍ଧ ମୂଲ୍ୟବୋଧ ସେ ଅନ୍ୟଠାରେ ପହଞ୍ଚାଇ ପାରିବ । ସମାଜକୁ ପୂର୍ଣ୍ଣଭାବେ ଓ ଅଭ୍ରାନ୍ତ-ଭାବେ ଚିହ୍ନି ତା'ର ଲକ୍ଷ୍ୟ ପୂରଣ ଦିଗରେ କବି ସହଯୋଗ କଲେ ହିଁ ଅନୁରୂପ ମୂଲ୍ୟବୋଧର ଚେତନା ସମାଜରେ ଜାଗ୍ରତ ହେବ ।

କଳାକୃତି ମଧ୍ୟରେ ସମାଜଟିଏ ଚିରକାଳ ବଞ୍ଚିଥାଏ ଓ ସ୍ପନ୍ଦିତ ହେଉଥାଏ । କବି ଚିରକାଳ ପାଇଁ ଲେଖେ । ସେ ଯେଉଁ ସମୟଖଣ୍ଡରେ ବଞ୍ଚେ, ତା'ର ସମସ୍ୟାଠାରୁ ମଣିଷର ଚିରନ୍ତନ ସମସ୍ୟା ତା'ପାଇଁ ଅଧିକ ଗୁରୁତ୍ୱପୂର୍ଣ୍ଣ । କବି କାଳର ସଂସାର ନେଇ କବିମଣିଷଟି ଜନ୍ମଗ୍ରହଣ କରିଥାଏ । ସେହି ସଂସ୍କାର ପ୍ରତି ଚେତନା ଉପରେ ବଞ୍ଚିଥିବା

କାଳର (ତତ୍କାଳର) ପ୍ରଭାବ କିଛି ପ୍ରକଟିତ ହୁଏ । ବିଭିନ୍ନ ରୂପାନ୍ତରଣ ମାଧ୍ୟମରେ ତତ୍କାଳର ପ୍ରଭାବ ରହେ, ତେବେ କବିତାରେ ସମାଜ ଓ ଜୀବନର ସ୍ୱରୂପ ପ୍ରକଟନର ପରିସର ଖୁବ୍ ପ୍ରଶସ୍ତ ନୁହେଁ । ବରଂ ଗଦ୍ୟରେ, ଉପନ୍ୟାସରେ ଘଟଣା ଓ ଚରିତ୍ରର ବିପୁଳ ସମାବେଶର ସୁଯୋଗ ଅଧିକ ଥାଏ ଓ ପୃଷ୍ଠପଟଟି ପ୍ରଶସ୍ତ ହୋଇଥାଏ । ତେଣୁ ସମାଜର ପ୍ରତିବିମ୍ବ ବହନ କରିବାରେ ଉପନ୍ୟାସ, ଗଳ୍ପ ଓ ନାଟକର ସାମର୍ଥ୍ୟ ପ୍ରଚୁର । ମଣିଷ କିପରି ପ୍ରେମ କରେ, ବିବାହ କରେ, ସମାଜରେ ଏକାଠି ରହେ, ଘରକରି ଚଳେ, ମଣିଷର ନିଜ ବିଷୟରେ, ଈଶ୍ୱରଙ୍କ ବିଷୟରେ, ପରିବାର, ରାଜନୀତି ବିଷୟରେ ଥିବା ଚିନ୍ତାଧାରାଗୁଡ଼ିକ ଏଥିରେ ପ୍ରକାଶ ପାଇବାର ବିସ୍ତୃତ କ୍ଷେତ୍ର ପାଏ । ସମାଜରେ କେଉଁ ମୂଲ୍ୟବୋଧଟି ପ୍ରଚଳିତ ଓ କେଉଁ ମୂଲ୍ୟବୋଧର ପ୍ରଚଳନ ଆବଶ୍ୟକ, ଉପନ୍ୟାସ ମାଧ୍ୟମରେ ସେ ବିଷୟରେ ଲୋକଙ୍କ ଚିନ୍ତାଧାରାକୁ ଗଠନ କରାଯାଇ ପାରେ । କିନ୍ତୁ କବିତା ଦୃଶ୍ୟର, ଘଟଣାର, ଅନୁଭବର ନିର୍ଯ୍ୟାସ ମାତ୍ର । ତେଣୁ ଏଥିରେ ପ୍ରକଟିତ ସମାଜର ସ୍ୱର ଅଧିକମାତ୍ରାରେ ଇଙ୍ଗିତଧର୍ମୀ । ସମାଜର ଦାରିଦ୍ର୍ୟ, ଶଠତା, ସୁବିଧାବାଦ, ପ୍ରେମପ୍ରବଣତା, ଲୋକବିଶ୍ୱାସ ଇତ୍ୟାଦିର ପରିପ୍ରେକ୍ଷୀରେ ସମାଜର ପ୍ରଗତି ଅଭୀପ୍ସାକୁ ଖୁବ୍ ସୂକ୍ଷ୍ମ ଦୃଷ୍ଟିସମ୍ପନ୍ନ କବିଶ୍ରେଣୀ ରୂପାୟିତ କରିଥାଆନ୍ତି ।

ତଥାପି, କବିତାରେ ସମାଜର ସ୍ୱରୂପ ଓ ଅଭୀପ୍ସା ଅଙ୍କନ କରିବାର ଗୋଟିଏ ଅନୁପାତ ରହିବହିଁ ରହିବ । ସମାଜରେ ଜନ୍ମହୋଇ, ସଂସ୍କାରପ୍ରାପ୍ତ ହୋଇ ବଞ୍ଚିରହି, ସ୍ୱଚିନ୍ତା ଓ ଆବେଗକୁ ସମାଜ ମାଧ୍ୟମରେ ସଂପ୍ରେଷିତ କରୁଥିବା କବି ସମାଜର ଆଶା, ଅଭିଳାଷକୁ କଦାପି ଆଡ଼େଇଯାଇ ପାରିବ ନାହିଁ ! ତେବେ ସେ ପ୍ରତିଫଳନର ନିର୍ଦ୍ଦିଷ୍ଟ ସୀମା ମଧ୍ୟ ରହିଛି । ସମାଜରେ ପ୍ରଚଳିତ ଧାରଣା, ବିଶ୍ୱାସ, ଦୃଷ୍ଟିକୋଣ ଓ ଚିନ୍ତାଧାରାର ସିଧାସଳଖ ବିବୃତି ଦେବା କଳାକୃତିର ଯୋଗ୍ୟତା ନୁହେଁ । ଯଦି ସିଧାସଳଖ ବିବୃତି ହେବ, ଯଦି ଘଟଣାଟିଏ ସାଧାରଣଭାବେ ବର୍ଣ୍ଣିତ ହୋଇଯିବ, ସେଠାରେ ତଥ୍ୟ ହୋଇଯିବ, କବିତା ହେବ ନାହିଁ । ସିଧାସଳଖ ଘଟଣା ବା ତଥ୍ୟର ବର୍ଣ୍ଣନା ବାସ୍ତବ ହୋଇପାରେ, ମାତ୍ର ତାହା ଖବରକାଗଜର ସମ୍ବାଦ ପରିବେଷଣ ହୋଇଯିବ । ତେଣୁ ସମାଜ ଓ ଜୀବନର ବାସ୍ତବ ଚିତ୍ର କବିତା ମଧ୍ୟରୁ କେତେ ପରିମାଣରେ ମିଳିପାରିବ, ତାହା ପରୀକ୍ଷା କରାଯାଇପାରେ ।

## କଳା ଓ ସମାଜ

ସମାଜ ପ୍ରତି କଳାର ଦାୟିତ୍ୱ ରହିଛି । କବିତା ଶବ୍ଦଗତ କଳା । ତେଣୁ କବିତାର ଶୈଳୀ ଓ ଭାବ-ଉପାଦାନରେ ପରିବେଶ ଓ ପରିସ୍ଥିତିର ପ୍ରଭାବ ପଡ଼ିବ ହିଁ ପଡ଼ିବ । ଯେତେବଡ଼ କଳ୍ପନାବିଳାସୀ ହେଲେ ବି ବ୍ୟକ୍ତି କଦାପି ତା'ର ପରିବେଶକୁ ଘେରି ରହିଥିବା ଘଟଣାବଳୀ ଓ ଚରିତ୍ରମାନଙ୍କୁ ଆଡ଼େଇ ଯାଇପାରିବ ନାହିଁ । କବିତାର

ଶୈଳୀ ମଧ୍ୟ ସମସ୍ତ ଓ ସମସ୍ତର ଗ୍ରହଣ ଦ୍ୱାରା ନିର୍ଣ୍ଣୀତ ହୋଇଯିବ । ଉଦାହରଣ ସ୍ୱରୂପ ଆମେ ସାରଳା ମହାଭାରତର 'ଦାଣ୍ଡିବୃତ୍ତ'କୁ ଗ୍ରହଣ କରିପାରିବା । ସାରଳାଙ୍କ ଯୁଗରେ ମୁଦ୍ରିତ ପୁସ୍ତକ ନଥିଲା, ଜନସାଧାରଣ ମଧ୍ୟ କୃଷିଜୀବୀ, ପାଠକ ହେବାର ଯୋଗ୍ୟତା ଅନେକଙ୍କର ନଥିଲା । ସେଥିନିମିତ୍ତ ଗୁରୁଲଘୁ ଶବ୍ଦସମ୍ଭାରକୁ ବହନ କରି ଆବୃତ୍ତି ବା ଗାୟନ ଯୋଗ୍ୟତା ଥିବା ଏକ ବୃତ୍ତ ସେକାଳରେ ଆବଶ୍ୟକ ଥିଲା ଓ ବ୍ୟକ୍ତି-ନିରପେକ୍ଷ ଧର୍ମ, ନୀତି, ମୁକ୍ତିବିଗ୍ରହର ବର୍ଣ୍ଣନା ସେଥିରେ ଅଭିବ୍ୟକ୍ତ ହୋଇ ପ୍ରସାରଲାଭ କରିବା ସହଜ ହୋଇଥିଲା । ତେବେ, କବିତାର ଚିରନ୍ତନ ଭାବ-ଉପାଦାନରେ ସମସ୍ତ ବିଶେଷ ପରିବର୍ତ୍ତନ ଆଣିପାରେ ନାହିଁ । ବିଭିନ୍ନ ଯୁଗରେ ମଣିଷଚେତନାର ଯେଉଁ ପରିବର୍ତ୍ତନ ସଂଘଟିତ ହୁଏ, ଯଥା:—ବ୍ୟକ୍ତି ଓ ସମାଜରେ ଚରିତ୍ରର ଓ ବିଶ୍ୱାସର ଅବମୂଲ୍ୟାୟନ, ତୀବ୍ର ସ୍ୱାର୍ଥପରତା—-ଏସବୁ ତତ୍‌କାଳର ରଚନାରେ ପ୍ରକାଶ ଲାଭକରେ । କଳା ବା କବିତା ଜୀବନରୁ ପ୍ରେରଣା ଲାଭ କରି ଜୀବନର (ବାସ୍ତବର) ପୃଷ୍ଠଭୂମିରେ ଠିଆହୁଏ ସତ, ମାତ୍ର କଳାରେ ବା କବିତାରେ ବାସ୍ତବ ପ୍ରକଟନର ଏକ ସୀମା ରହିଥାଏ । କେତେକ ଆଲୋଚକ କହନ୍ତି ଯେ, ଉଚ୍ଚମାନର ସାହିତ୍ୟଠାରୁ ନିମ୍ନମାନର ସାହିତ୍ୟ ଜୀବନର ଅଧିକ ନିକଟବର୍ତ୍ତୀ । ଏପରି ସ୍ଥଳେ କବିତାର କଳାତ୍ମକ ମାନ ଏବଂ କବିର ସମାଜ-ସଚେତନତା ଓ ତା'ର ରୂପାୟନ ପରସ୍ପରର ପ୍ରତିକୂଳାଚରଣ କଲାପରି ପ୍ରତୀତ ହୁଏ ।

ତେବେ କବିତା ସହ ଜୀବନର ମୂଳ ସମ୍ପର୍କଟି କ'ଣ ? ସମାଜବିଜ୍ଞାନୀ Elmerstoll କହିଲେ କଳା ଓ ଜୀବନ ଉଭୟେ ପରସ୍ପରଠି ପ୍ରତିଫଳିତ ହୁଅନ୍ତି । ଆଉ କେହି ସମାଲୋଚକ କହନ୍ତି, କଳା ଜୀବନକୁ ପ୍ରତିବିମ୍ବିତ କଲାବେଳେ, ଜୀବନ ମଧ୍ୟ କଳାକୁ ନିର୍ଦ୍ଧାରିତ କରେ । କବିତା ସମାଜର ସବୁଠୁ ସକ୍ରିୟ ସମର୍ଥ ଦର୍ପଣ, ପୁଣି ସମାଜ ଓ ସଂସ୍କୃତି ମଧ୍ୟ କବିତା ଦ୍ୱାରା ସମୃଦ୍ଧ ହୁଏ । ଜୀବନ ଯେମିତି କବିତାର କଳ୍ପନାନୁରଞ୍ଜିତ ଜଗତ ସମ୍ପର୍କରେ ଆସି ଐଶ୍ୱର୍ଯ୍ୟମଣ୍ଡିତ ହୁଏ, କବି ସେମିତି ସୃଷ୍ଟିପାଇଁ ଜୀବନରୁ ମହତ୍ତମ ପ୍ରେରଣା ଲାଭ କରେ । ଏକଥା ସତ ଯେ, କବିମାନେ ବେଳେବେଳେ ସ୍ୱକାଳର ଆତ୍ମାକୁ ଚିଳିଣି ଓ ଧାରାକୁ ଅସ୍ୱୀକାର କରନ୍ତି । ଆଦିମ ଯୁଗର କଥାବସ୍ତୁକୁ ଆଣି ସୁପ୍ରାଚୀନ ଶୈଳୀରେ ଲେଖିବାକୁ ପସନ୍ଦ କରନ୍ତି । ଆଉ କେତେକ କବି ମଧ୍ୟ ପୁରୁଣା ପ୍ରଥାକୁ ଭାଙ୍ଗିବାର ପ୍ରୟତ୍ନ କରିଥାଆନ୍ତି । କେତେକ ସ୍ଥଳରେ କବି ସ୍ୱ-କାଳ ଓ ପରିବେଶର ସତ୍ୟଚିତ୍ର ନଦେଇ ଏକ ସମ୍ଭାବନାର ଚିତ୍ର ଦେଇଥାଆନ୍ତି । ଏଥିରେ କଳ୍ପନାର ଶକ୍ତିମତ୍ତା ବିଶେଷଭାବେ ପ୍ରମୂର୍ତ୍ତ ଥାଏ । ମାତ୍ର ସେ କଳ୍ପନା ଏହି ଜୀବନର ପୃଷ୍ଠଭୂମି ଉପରେ ହିଁ ଦଣ୍ଡାୟମାନ—ଜୀବନର ଅନ୍ତଃବିନ୍ଦୁକୁ ଚହ୍ଲାଇବାକୁ ସଚେଷ୍ଟ । ଏ କ୍ଷେତ୍ରରେ କଳ୍ପନା ମଧ୍ୟ ବାସ୍ତବଠୁ ସଂପୂର୍ଣ୍ଣ ଅଲଗା ନୁହେଁ । ବାସ୍ତବ ଜୀବନ ସହ କଳାର ସମ୍ପର୍କକୁ ଆମେ ଦୁଇଟି ଦିଗରୁ ଦେଖିପାରିବା । ପ୍ରଥମ ଦିଗଟି କଳାତ୍ମକ ଦୃଷ୍ଟିକୋଣ—ଏହି ଦୃଷ୍ଟି ବୁଝାଇଦିଏ ଯେ, କବିତା ଓ ବାସ୍ତବଜୀବନ ମଧ୍ୟରେ କିଛି ସମ୍ପର୍କ ନାହିଁ । ଦ୍ୱିତୀୟ ଦିଗଟି

ଅଧିକ ରାଜନୀତିକ ମତବାଦ ହୋଇପାରେ—ତାହା କହେ, କବିତା ଓ ଜୀବନ ମଧ୍ୟରେ କୌଣସି ବ୍ୟବଧାନ ନାହିଁ । ମାତ୍ର ଏହି ଦୁଇଟିଯାକ ମତ ଚରମ ମତବାଦ । କୌଣସିଟି ସମ୍ପୂର୍ଣ୍ଣ ସତ୍ୟ ନୁହେଁ । କବି ପାବ୍ଲୋ ନେରୁଦାଙ୍କ ମତରେ—ବାସ୍ତବତାଠାରୁ ଦୂରରେ ଥିବା କବିତା ଯେଉଁପରି ମୃତ, କେବଳ ବାସ୍ତବତାକୁ ରୂପାୟିତ କରୁଥିବା କବିତା ମଧ୍ୟ ସେହିପରି ମୃତ । ପ୍ରକୃତପକ୍ଷେ କଳା ଜୀବନକୁ ସମ୍ପୂର୍ଣ୍ଣ ଆଡ଼େଇ ଯାଇପାରିବ ନାହିଁ କି ଜୀବନସହ କଦାପି ଏକ ଓ ଅଭିନ୍ନ ହୋଇପାରିବ ନାହିଁ ।

## ରୂପାନ୍ତରିତ ବାସ୍ତବତା

କଳାର ସତ୍ୟ ବହିର୍ଜଗତର ସତ୍ୟ ମାତ୍ର ନୁହେଁ, ତାହାଠାରୁ ଅଧିକ କିଛି । ଅର୍ଥାତ୍ ବହିର୍ଜଗତର ସତ୍ୟକୁ ଅନ୍ତର୍ଜଗତରେ ପ୍ରତ୍ୟକ୍ଷୀଭୂତ ଓ ପରୀକ୍ଷିତ କରିଥାଏ କଳା । ସେଥିପାଇଁ କବିତାର ସତ୍ୟ ବାସ୍ତବ ସତ୍ୟଠାରୁ ଭିନ୍ନ ବସ୍ତୁ । ସାହିତ୍ୟର ସତ୍ୟ ତଥ୍ୟସାପେକ୍ଷ ନୁହେଁ, ଏହିସତ୍ୟ ଉପଲବ୍ଧ ସତ୍ୟ । ତଥ୍ୟ ଓ ବାସ୍ତବକୁ ଅତିକ୍ରମ କରିଯାଏ ଯେଉଁସତ୍ୟ, ତାହା ଅନୁଭୂତିଲଭ୍ୟ, ତାହାହିଁ କଳାଗତ ସତ୍ୟ । ବାସ୍ତବ ଜଗତର ତଥ୍ୟକୁ ଅସ୍ୱୀକାର କରି କବି ସମ୍ଭାବ୍ୟ ଜଗତର ଚିତ୍ର ମଧ୍ୟ ଆଙ୍କିପାରେ । ବାସ୍ତବକୁ ସୃଷ୍ଟିଶୀଳ ଅନ୍ତଃଦୃଷ୍ଟି ଦ୍ୱାରା ନିରୀକ୍ଷଣ କରି ତାହା ଭିତରେ ସାର୍ବଜନୀନତାର ସନ୍ଧାନ କରେ । ଯାହା ଦୃଶ୍ୟ, ଯାହା ଅଦୃଶ୍ୟ, ଯାହା ଅନ୍ତରାଳରେ ରହିଥାଏ—ଏ ଉଭୟକୁ ଦେଖାଇବାରେ କଳାସୃଷ୍ଟି ତତ୍ପର ଓ ଏ ଉଭୟ କଳାପାଇଁ ସତ୍ୟ । ତେଣୁ କବିତାରେ ଅଙ୍କିତ ବାସ୍ତବତା ଏକ ରୂପାନ୍ତରିତ ବାସ୍ତବତା ।

କବିତାରେ ବର୍ଣ୍ଣିତ ବାସ୍ତବତା ଜୀବନର ସିଧାସଳଖ ବର୍ଣ୍ଣନା କଦାପି ନୁହେଁ । ଆମେ ଏକଥା ମଧ୍ୟ ଜାଣିଛେ ଯେ, ପ୍ରକୃତି ବା ମଣିଷର ବାସ୍ତବ ଚିତ୍ର ଗୋଟିଏ ଫଟୋଗ୍ରାଫି, ତାହା କବିତା ହୋଇପାରେନା । କବିତା ହେବାକୁ ହେଲେ ବାସ୍ତବତା କବି-ବ୍ୟକ୍ତିତ୍ୱର ସ୍ୱତନ୍ତ୍ର ଉପଲବ୍ଧି ଓ ନିରୀକ୍ଷଣର ମାଧ୍ୟମ ଦେଇ ପ୍ରକଟିତ ହୁଏ । ଏହିଠାରେ ସାମାଜିକ ବାସ୍ତବତା କଳାଗତ ବାସ୍ତବତାରେ ରୂପାନ୍ତରିତ ହୁଏ । ଏହି ଜଟିଳ ପ୍ରକ୍ରିୟାରେ ରସ୍ଥ ଥାଏ । ହୁଏତ ବାସ୍ତବତାର ଯଥାର୍ଥ ରୂପାନ୍ତରଣ ନହୋଇ ପାରିଲେ କବିତା ପ୍ରଚାରଧର୍ମୀ ସ୍ଲୋଗାନ ହୋଇଯାଏ । କବିତାରେ ବାସ୍ତବତାର ପ୍ରକଟନକୁ ଲେଖକ ଓସ୍କାର ଓ୍ୱାଇଲ୍ଡ ସିଧାସଳଖ ନାପସନ୍ଦ କରିଛନ୍ତି—'Literature should not imitate life and facts, ratherlie through imagination. Decay of lying means decay of art. …' ତାଙ୍କ ମତରେ 'କବିତାରେ କଳ୍ପନା ମାଧ୍ୟମରେ ମିଥ୍ୟା କୁହାଗଲେ ଭଲ । ନଚେତ୍ କଳାତ୍ମକତା ବ୍ୟାହତ ହେବ ହିଁ ହେବ ।' ଏହାସତ୍ତ୍ୱେ କବିତାର କଞ୍ଚାମାଲ ଜୀବନର ବାସ୍ତବତା ଭିନ୍ନ ଅନ୍ୟ କିଛି ନୁହେଁ । କିନ୍ତୁ ଏହି ସ୍ଥୂଳ କଞ୍ଚାମାଲ କଳାକୃତିରେ ସହଯୋଗ କଲାବେଳେ କଳାତ୍ମକ ଏକମୁଖୀନତାରେ

ରୂପାନ୍ତରିତ ହୋଇଯାଏ । ପ୍ରତ୍ୟକ୍ଷଭାବେ ଆଖିରେ ଦେଖୁଥିବା, କାନରେ ଶୁଣୁଥିବା, ଇନ୍ଦ୍ରିୟମାନଙ୍କ ମାଧ୍ୟମରେ ଭୋଗୁଥିବା ବସ୍ତୁ, ଘଟଣା, ଦୃଶ୍ୟ ସତ୍ୟ ହେଲେ ମଧ୍ୟ ତାହା କଳାର ଆସନରେ ଅଭିଷିକ୍ତ ହେବାପାଇଁ ସୃଜନଶୀଳ ଉପସ୍ଥାପନାର ଅପେକ୍ଷା ରଖେ । ପାଠକ କବିତାରେ ପ୍ରକାଶିତ ଅଭିଜ୍ଞତା ବା ଚିନ୍ତାକୁ କେବଳ ପସନ୍ଦ କରେନା, ଉଚ୍ଚାରଣର ବିଶେଷ ବାଗକୁ ମଧ୍ୟ ପସନ୍ଦ କରେ । ବ୍ୟକ୍ତ କରିବାର ବାଗଦ୍ୱାରା ଜୀବନଚିନ୍ତାର ରୂପାନ୍ତରଣ ମଧ୍ୟ ସମ୍ଭବ ହୋଇପାରେ ।

## କଳା ଓ ବିପ୍ଳବ

ସ୍ୱରଚନା ମାଧ୍ୟମରେ କବି ଯାନ୍ତ୍ରିକ ଜୀବନର କୁତ୍ସିତତା ଉପରେ ଆଲୋକପାତ କରେ, ସଂଘର୍ଷ ଭିତରେ ସୌନ୍ଦର୍ଯ୍ୟଦର୍ଶନ କରେ ଏବଂ ସମାଜର ବିଭଙ୍ଗତା, ଅବିଚାର ବିରୋଧରେ ପାଠକକୁ ସଚେତନ କରାଏ । କବିତା ମାଧ୍ୟମରେ ପୃଥିବୀକୁ ବଦଳାଇବାକୁ ଚାହେଁ । ଯଥାର୍ଥରେ କବିତାରେ ସମାଜର ଅଭୀପ୍‌ସାର ପ୍ରତିଫଳନର ଐତିହାସିକ ଆବଶ୍ୟକତା ଏତିକି । ମାତ୍ର ସମାଜକ୍ଷେତ୍ରରେ ପରିବର୍ତ୍ତନ ଆଣିବାକୁ କବିତା କେବେ ପ୍ରତ୍ୟକ୍ଷଭାବରେ ସମର୍ଥ ହୋଇଛି କି ? କବିତାର ସେ କ୍ଷମତା ସୀମିତ ମଧ୍ୟ । କବିତା କେବଳ ସାମାଜିକ ସ୍ଥିତି ଓ ବ୍ୟବସ୍ଥା ବିରୋଧରେ ପ୍ରତିବାଦର ସ୍ୱର ଶୁଣାଇପାରେ । କିନ୍ତୁ ସମାଜର ପରିବର୍ତ୍ତନପାଇଁ ବିପ୍ଳବ ଅନିବାର୍ଯ୍ୟ । ବିପ୍ଳବର ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ, ହାରିଏଟ୍ ଷ୍ଟୋଙ୍କ ରଚିତ ଗୋଟିଏ 'ଟମକକାଙ୍କ କୁଟୀର' ବା ମାକ୍‌ସିମ୍ ଗର୍କୀଙ୍କ ଗୋଟିଏ 'ମଦର' ଉପନ୍ୟାସ ଦ୍ୱାରା ସମାଜର ପରିବର୍ତ୍ତନ ଘଟିନାହିଁ । କ୍ରୀତଦାସ ପ୍ରଥାର ବିଲୋପ ପାଇଁ ଆବ୍ରାହମ୍ ଲିଙ୍କନଙ୍କୁ ଓ ଅନ୍ୟକେତେକ ରଥୀଙ୍କୁ ପ୍ରାଣବଳି ଦେବାକୁ ପଡ଼ିଛି । ରୁଷ୍ ବିପ୍ଳବରେ ଅନେକ ରକ୍ତପାତ ଘଟିଛି । ସେହିପରି, ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ ଓ ଗୋପବନ୍ଧୁ ଇତ୍ୟାଦିଙ୍କ ଦେଶାତ୍ମବୋଧ-କବିତା ସତ୍ତ୍ୱେ ଭାରତ କଦାପି ସ୍ୱାଧୀନ ହୋଇପାରି ନଥାନ୍ତା ଯଦି ସ୍ୱାଧୀନତା ଆନ୍ଦୋଳନରେ ବର୍ଷ ବର୍ଷ ଧରି ବିପ୍ଳବୀ-ମାନେ ଆତ୍ମାହୁତି ଦେଇ ନଥାନ୍ତେ । କବିତା ସାମାଜିକ ପରିବର୍ତ୍ତନ ଦିଗରେ ସଚେତନତା ସୃଷ୍ଟି କରିପାରେ ଏବଂ ସ୍ଥଳବିଶେଷରେ ବିପ୍ଳବକୁ କିଛିଟା ତ୍ୱରାନ୍ୱିତ କରିପାରେ—ସେତିକି ତା'ର ସାମର୍ଥ୍ୟ । ପୁଣି ଏହି ପ୍ରକାର କାବ୍ୟକବିତାର ମୂଲ୍ୟ ସୀମିତ—ଦେଶ, ଜାତି ଓ ସମାଜର ଗୋଟିଏ ନିର୍ଦ୍ଦିଷ୍ଟକାଳ ମଧ୍ୟରେ ଏଗୁଡ଼ିକର ମୂଲ୍ୟ ବିଶେଷ ସ୍ୱୀକୃତ ହୋଇଥାଏ ।

ଚିଲିର କବି ପାବ୍ଲୋନେରୁଦା ଓ ରୁଷ୍‌ର କବି ମାୟାକୋଭସ୍କିଙ୍କୁ ଖୁବ୍ ସମାଜ-ସଚେତନ କବିଭାବେ ବିଶ୍ୱସାହିତ୍ୟରେ ଗ୍ରହଣ କରାଯାଏ । ସମାଜ ପ୍ରତି ଗଭୀର ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ, ସମାଜର ଅଭୀପ୍‌ସା ସହ ଅଭ୍ରାନ୍ତ ପରିଚୟ ଓ ନୈର୍ବ୍ୟକ୍ତିକ ନିରୀକ୍ଷଣ-ଶକ୍ତି ହେତୁରୁ ଏମାନଙ୍କ କବିତା କଳାଗତ ସୌନ୍ଦର୍ଯ୍ୟରେ ମଣ୍ଡିତ ହେବା ସଙ୍ଗେ ସଙ୍ଗେ ସାଧାରଣ ମଣିଷର ଅଭିଳାଷକୁ ବ୍ୟକ୍ତ କରିବାରେ ସମର୍ଥ ହୋଇପାରିଛି ।

## ଓଡ଼ିଆ କବିତାରେ ସମାଜର ପ୍ରତିଫଳନ

ଅତଏବ କବିତାରେ ସମାଜର ସ୍ଥିତି, ବିଶ୍ୱାସ ଓ ଅଭିପ୍ସାର ଚିତ୍ର ପ୍ରଚ୍ଛନ୍ନଭାବେ ରହିଥାଏ—କେବେ ହୃଦୟସ୍ପର୍ଶୀ ସମ୍ବେଦନାଭାବରେ ତ କେବେ ବିପୁଳ ସମ୍ଭାବନା ପ୍ରତି ହିନ୍ଦୋଳିତ ରୂପରେ, ଆଉ କେବେ ବିଶ୍ୱାସ ଓ ଦିବ୍ୟଦୃଷ୍ଟିର ବାତାବରଣକୁ ଜନ୍ମଦେବାରେ, କେବେ ବା ବ୍ୟଙ୍ଗୋକ୍ତିର ଶରସନ୍ଧାନ ମାଧ୍ୟମରେ କବି ସମାଜ ପ୍ରତି ତା'ର ଆତ୍ମିକ ସମ୍ପର୍କକୁ ପ୍ରକଟିତ କରିଥାଏ । ଏହି ପରିପ୍ରେକ୍ଷୀରେ ସାଂପ୍ରତିକ କାଳରେ ରଚିତ ଓଡ଼ିଆ କବିତାକୁ ପର୍ଯ୍ୟାଲୋଚନା କଲେ ସେଥିରେ ବ୍ୟକ୍ତି ଓ ସମାଜର ଯେଉଁ ବାହ୍ୟ ତଥା ଅନ୍ତଃପ୍ରତିଫଳନ ସ୍ପଷ୍ଟ ହୋଇଉଠେ, ତାହାର ବିଶ୍ଳେଷଣ ଏଠାରେ ପ୍ରାସଙ୍ଗିକ ହେବ ବୋଲି ଭାବୁଛି । ସାଂପ୍ରତିକ ଓଡ଼ିଆ କବିତାକୁ ବିଶ୍ଳେଷଣ କଲାବେଳେ ମୁଁ ଦୃଢ଼ଭାବେ ବୁଝିଛି ଯେ, ସାମ୍ପ୍ରତିକ ସମାଜର ରୀତିନୀତି, ଚଳଣି, ପରମ୍ପରା, ଲୋକବିଶ୍ୱାସ, ପ୍ରବଞ୍ଚନା, ପ୍ରେମପ୍ରବଣତା, ରାଜନୀତିର ପୃଷ୍ଠପଟ ଉପରେ କବିର ବକ୍ତବ୍ୟ ସଙ୍ଗଠିତ ହୋଇଛି । ପ୍ରଥମତଃ ସାମାଜିକ ପୃଷ୍ଠଭୂମି ସଂସ୍କାର ରୂପରେ କବିଚେତନାକୁ ଦୀକ୍ଷିତ କରିଛି । ସମାଜର ଅଭିପ୍ସା କେଉଁଠି ସ୍ପଷ୍ଟ ଓ କେଉଁଠି ପ୍ରଚ୍ଛନ୍ନ ଭାବେ କବିତାରେ ଉପସ୍ଥିତ ଅଛି ।

ଆମେ ଯେଉଁ ସମୟ ଓ ପରିବେଶରେ ବଞ୍ଚୁଛେ, ତାହାର ଦୁଃସ୍ଥିତି ପ୍ରତି, ବ୍ୟାଧି ପ୍ରତି କେବେ ବ୍ୟଙ୍ଗ, କେବେ ବା ପ୍ରତିବାଦ ମାଧ୍ୟମରେ କବି ତା'ର ପ୍ରତିକ୍ରିୟା ଜଣାଉଛି । ବ୍ରାନ୍ତିର ସ୍ୱପ୍ନଭାବରେ କେବେ, କେବେ ବା କାରୁଣ୍ୟ ମଧ୍ୟରେ କବିର ସମ୍ବେଦନା ପ୍ରମୂର୍ତ୍ତି ହେଉଛି । ଉଦ୍‌ବୋଧନ ଓ ଉଦ୍‌ଘୋଷଣାର ସ୍ୱରରେ ମଧ୍ୟ ତାହା ଉଚ୍ଚାରିତ ହେଉଛି । ଏହି ପରିପ୍ରେକ୍ଷୀରେ ଏ ଯୁଗରେ ବିଡ଼ମ୍ବିତ ପ୍ରେମର ଚିତ୍ର, କଷ୍ଟାର୍ଜିତ ଅସାଧୁ ଦାମ୍ପତ୍ୟ, ବସ୍ତୁବାଦର ଅନ୍ଧାରି ଆକର୍ଷଣ ତଳେ ପ୍ରେମର ନିଷ୍ପ୍ରଭ ରଙ୍ଗକୁ ସାମ୍ପ୍ରତିକ କବି ଖୁବ୍ ଖୋଲ୍‌ଠୋକ୍ ଭାବେ ରଞ୍ଜିତ କରୁଛନ୍ତି । କବି ଗୁରୁପ୍ରସାଦ ମହାନ୍ତିଙ୍କ ମତରେ ସାଧାରଣ ଘଟଣାମାନଙ୍କ ଭଳି ପ୍ରେମରେ ପଡ଼ିବା ମଧ୍ୟ ଗୋଟିଏ ଘଟଣା—

"ମନେପଡ଼େ ଦେଢ଼ବର୍ଷ ତଳେ
ପ୍ରେମରେ ମୁଁ ପଡ଼ିଥିଲି ପଞ୍ଚମରେ ଶୁକ୍ର ଅବା ଶନି
ନବମରେ ବୃହସ୍ପତି କେଉଁ କ୍ଷେତ୍ରେ ରାହୁ ପୁଣି ଚନ୍ଦ୍ରର ଚଳନ" × × ×

ପ୍ରେମରେ ପଡ଼ିଲାବେଳକୁ ପୁଣି ପ୍ରେମିକର ଖଡ଼ିରତ୍ନଙ୍କ ଭବିଷ୍ୟବାଣୀ ମନେ ପଡ଼ୁଛି— ନାରୀସହ ସହବାସରେ ଅଙ୍ଗହାନି, ଆୟୁହାନି ହେବ । ସେ ପ୍ରେମ କେବଳ ସହବାସ ମୁଖାପେକ୍ଷୀ ଓ ଏଥିସହିତ ପାପବୋଧର ଚେତାବନୀ ମନକୁ ଆସେ । 'ଭଲପାଏ' କହିଲାବେଳକୁ ବାମଅଙ୍ଗ ପଙ୍ଗୁ ହୋଇଯାଏ । କୌଣସି କୋମଳ ଭାବର ନିଷ୍ପତ୍ତି ହୋଇପାରେ ନାହିଁ । ପୁଣି ଦାମ୍ପତ୍ୟରେ ଅସାଧୁତାର ଯଥେଷ୍ଟ ଅବକାଶ ରହେ । ସ୍ୱାମୀ ଟୁର୍‌ରେ ବଡ଼ ଅଫିସର, କେବେ କେଉଁଠି ତାଙ୍କ ଗୋଡ଼ ଖସିଯାଏ । କେଉଁ ଗୃହକର-

ଜୀବିକା ନାଶ ଘଟଣାକ୍ରମେ ତାଙ୍କ ନିକଟବର୍ତ୍ତୀ ନା ହୋଇଯାଏ । କିନ୍ତୁ ପତ୍ନୀ ମଧ୍ୟ ସପ୍ତାହର ସାଜ ପୋଷାକ ମାତ୍ର ପିନ୍ଧିଥାଏ—

'ଜାଣୁଚୁ ଡେପୁଟୀ କାମ
ଦିନ ଦିନ ମାସ ମାସ ରାସ୍ତା ରାସ୍ତା ପଦାରେ ପଦାରେ
ସେଥିରେ ତା' ଗୋଡ଼ ଯଦି ଖସିଗଲା
କେତେବେଳେ ବର୍ଷାପାଣି ପଡ଼ିବା ବେଳପାରେ
× × ×ସେ ଗଲା ସି.ଏଲ୍. ନେଇ କୋଉ ନର୍ସ୍ ମାଷ୍ଟରାଣୀ ଆଡ଼େ
ସେ ତ ପୁଣି ଜାଣିନାହିଁ ପୁଅ ତୋର ନୁହେଁ ତା'ର
ସେ ପୁଣି ତ ଆସ୍ଥା ରଖେ
ତୋର ସଫା ଧଳା ସପ୍ତାହରେ ।'

(କାଳସ୍ୱରୂପ)

'ପ୍ରେମ ଫ୍ରେମ ବାଜେ ସବୁ' ମଧ୍ୟରେ ଆବେଗ ଓ ସମ୍ପୃକ୍ତିରହିତ ପ୍ରେମର ଅବତାରଣା କରାଯାଇଛି ।

ପ୍ରେମ ମାନବ-ହୃଦୟର ଏକ ମହତ୍ତମ ଭାବାବେଗ ହେଲେ ବି ବିଂଶ ଶତକର ଉତ୍ତରାର୍ଦ୍ଧରେ ଆଜି ଜଟିଳ ଜୀବନ-ଜିଜ୍ଞାସା ସାମ୍ନାରେ ସେ ଭାବାବେଗର ସ୍ଥିତି ବିପନ୍ନ । ଯଦିବା କେବେ ତାହା ମଣିଷ-ହୃଦୟରେ ମୁଣ୍ଡ ଟେକିବାକୁ ଜିଦ୍ ଧରେ, ସୁକୁମାରତ୍ୱ ନଥାଏ ତା'ଠି । ରମାକାନ୍ତ ରଥ ପ୍ରେମର ପ୍ରତୀକ ରାଧାକୃଷ୍ଣଙ୍କ ପ୍ରତି କଟାକ୍ଷ ନିକ୍ଷେପ କରିଛନ୍ତି—ଏହି ତୀବ୍ର ବ୍ୟଙ୍ଗ ମଧ୍ୟରେ ଭାବାବେଗର ସତ୍ତା କେଉଁଠି ?

''ଖରାବେଳେ ନିଘୁଞ୍ଚିଆ
ବୃନ୍ଦାବନ ସହରର ବାଟ
ଉପରର ଟହ ଟହ
ହସ ମଝେ ପ୍ରେମିକ ସମ୍ରାଟ
ଆଖିରେ ପ୍ରତକ୍ଷୁ ଏବଂ ହାତରେ ମୁରଲୀ
ଧରି ଡାକୁଛନ୍ତି ରାଧା ଆସ ଆସ ବୋଲି'' ।

ସାଂପ୍ରତିକ ଜୀବନରେ ପ୍ରଚଣ୍ଡ ପ୍ରତିଯୋଗିତା, ଅଣନିଃଶ୍ୱାସୀ ଦୌଡ଼, ସ୍ୱାର୍ଥପାଇଁ ହିଂସା, ଦ୍ୱେଷ, କ୍ରୋଧ, ଯୁଦ୍ଧଂଦେହି ଡାକ ଓ ଆସନ୍ନ ବିପଦ ମଝିରେ ମଣିଷର ସ୍ଥିତି ନିତାନ୍ତ ଅସହାୟ ହୋଇପଡ଼ୁଛି । ଆଜିଠାରୁ ବହୁବର୍ଷ ପରେ ଯଦି କେହି କବିତା ପଢ଼ୁ ପଢ଼ୁ ସାମ୍ପ୍ରତିକ ଜୀବନର ଛବିକୁ ପାଇଯାଏ, ତା' ଆଗରେ ବର୍ତ୍ତମାନର ଚିତ୍ର ବେଶ୍ ପ୍ରାଞ୍ଜଳ ହୋଇ ଉଠିବ—ଏହି ଚିତ୍ର କେବେ ସମ୍ବେଦନା ମାଧ୍ୟମରେ ବା କେବେ ବ୍ୟଙ୍ଗ ମାଧ୍ୟମରେ ଶାଣିତ ହୋଇ ପାରିଛି । ରାଜନୀତିର ବିଷମ ଅବସ୍ଥା, ନଗରବାସୀ ତଥା

ଗ୍ରାମୀଣଙ୍କର ରାଜନୀତି ପ୍ରତି ଅନ୍ଧ ଉନ୍ମୁଖତା ଆମ ଦେଶରେ ଏକ ଜଟିଳ ସମସ୍ୟା ସୃଷ୍ଟି କରିଛି । କ୍ଷମତା-ରାଜନୀତିର ଖେଳରେ ମାତି ଯୁବକକୁଳ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ହୋଇ ପଡ଼ିଛନ୍ତି—ଏଥିକୁ ସୌଭାଗ୍ୟ ମିଶ୍ର ଲେଖିଲେ—

"ଛୁରି ଭୁଜାଲି ଫାଇବର ଧରି ଲଗିଗଲେ ଓ
ନସୀର ମିଆଁ ଇତ୍ୟାଦିଙ୍କ ଅଣ୍ଟାଝୁଡ଼ି ଉଠାଇ ଫିଙ୍ଗିଦେଲେ
ବିଚରା ରାମ ପାନଦୋକାନର
ସବୁତକ ସୋଡ଼ା-ବୋତଲ ଫିଙ୍ଗାହେଲା
ସୁଲ୍‌ସ୍ ଓ ବାଟା ଦୋକାନର କାଚ ଶୋ'କେଶ୍ ଉପରକୁ
ସର୍ବୋପରି ବସ୍ ପାଇଁ ଅପେକ୍ଷାରତା ଅଧ୍ୟାପିକାଙ୍କ
ବିପନ୍ନ ଯୌବନ ଉପରକୁ" ।

ଅନୁରୂପ ଆଶଙ୍କିତ ଅବସ୍ଥାର ଚିତ୍ର ମିଳିଥାଏ ସୀତାକାନ୍ତ ମହାପାତ୍ରଙ୍କ 'କାହାକୁ ପୁଛିବା କହ' କବିତାରେ । କ୍ଷମତାପନ୍ନ ରାଜନୀତିକ ନେତାର ଓ ଭ୍ରଷ୍ଟାଚାରଖୋର ଅଫିସରର ଆଭ୍ୟନ୍ତରୀଣ ରୂପକୁ ବ୍ୟଙ୍ଗ କରନ୍ତି ରାଜେନ୍ଦ୍ର ପଣ୍ଡା—

"ଦୁର୍ବାସା, ତୁମେ ମାଲଗୋଦାମରୁ, ଷ୍ଟକ୍ ଏକ୍‌ସଚେଞ୍ଜରୁ
କେତେଲକ୍ଷ ପାଉଣା ନିଅ—କାହିଁ ସେଠିକି ତ
ଯାଅନାହିଁ କେବେ ହେ କ୍ରୋଧସାଗର" ।

ତାଙ୍କର ଗୋଲାମ ଦାସ କହେ—

"ଗ୍ରେଟ୍ ସାହେବ ଜିନ୍ଦାବାଦ
ବଡ଼ା ସାହେବ ଜିନ୍ଦାବାଦ" ।

ଆପଣାର କ୍ଷମତା-ଗର୍ବରେ ବିଧାତା ବୋଲାଉଥିବା ଅଫିସରମାନଙ୍କୁ ବ୍ୟଙ୍ଗ କରନ୍ତି ସେ—'ଉପରକର ଚୌକିଧନ୍ୟ ମୁରବି' ପରି ପଂକ୍ତିମାନଙ୍କରେ । ଏହି ଧନୀ କ୍ଷମତାପନ୍ନ ବ୍ୟକ୍ତିଗଣ ଯାହା କହନ୍ତି—ତାଙ୍କ ଅଭିବ୍ୟକ୍ତ ଶବ୍ଦଗୁଡ଼ିକ ତାଙ୍କ ଉଦ୍ଦେଶ୍ୟର ବିପରୀତ ଅର୍ଥ ସୂଚାଇ ଥାଆନ୍ତି । କପଟାଚାରୀଗଣ ଧନସମ୍ପଦ ଲାଳସା ଚରିତାର୍ଥ କରିବାର ଉପାୟକୁ ଅନ୍ତରାଳରେ ରଖି ଥାଆନ୍ତି ଓ କୌଶଳପୂର୍ଣ୍ଣଭାବେ ପ୍ରବଞ୍ଚନା, ହିଂସ୍ରତା ସଂଘଟିତ କରି ଥାଆନ୍ତି । ରମାକାନ୍ତଙ୍କ କବିତାରେ ଏହାର ଯଥାର୍ଥ ଉପସ୍ଥାପନା—

"× ×କୁର୍ତ୍ତାତଳେ ଥିବା
ଗ୍ରେଟ୍ ଛୁରିଟିଏ ବଡ଼ କୌଶଳରେ ବ୍ୟବହାର କରି
ଏବଂ ବ୍ୟବହାର କରି କହି ଶବ୍ଦ ଯାହା ଆପଣଙ୍କ
ଉଦ୍ଦେଶ୍ୟର ପୂରାପୂରି ବିପରୀତ ଅର୍ଥ ସୂଚାଇଲେ

ଆଖିପିଛୁଳାକେ କେତେବଡ଼ ସମ୍ପତ୍ତିର ମାଲିକାନା
ଆପଣ ପାଇଲେ" ।

(ଧନୀ ପ୍ରତି ଭୃତ୍ୟର ଉକ୍ତି)

ବର୍ତ୍ତମାନର ଜଟିଳ ଜୀବନ-ଜିଜ୍ଞାସାର ଚକ୍ରମୁହାଣିରେ ବିବ୍ରତ, ତଥାପି ଆଶାରେ ପ୍ରଦୀପ୍ତ କବି ଭାବୀ ଜୀବନର ଜନଙ୍କ, ମୁକ୍ତ ତଥା ମାନବିକ ଅଧିକାରମାନଙ୍କ ଚିତ୍ର ଆଙ୍କନ୍ତି—

"ମୋର ପରବର୍ତ୍ତୀ କବିତା ଆସିବ ହାତରେ ଶାଣିତ ଶବ୍ଦମାଳାକୁ ସାଉଁଟି ନିର୍ବିରୋଧ ଜନଙ୍କ ସହଜ ଓ ସ୍ୱତଃସ୍ଫୂର୍ତ୍ତ ମାତ୍ରା ଓ ଛନ୍ଦର ବନ୍ଧନକୁ ଏଡ଼ାଇ ସାଧା-କାଗଜର ସ୍ୱାୟତ୍ତ ସାମ୍ରାଜ୍ୟରେ ବଞ୍ଚିବାର ଅଧିକାରମାନଙ୍କୁ ସ୍ୱତଃସିଦ୍ଧ କରି" ।

(ପରବର୍ତ୍ତୀ କବିତା—ଆହ୍ନିକ—ଜଗନ୍ନାଥ ପ୍ରସାଦ ଦାସ)

ଏ ଯୁଗର ସଙ୍କୀର୍ଣ୍ଣମନା, ସ୍ୱାର୍ଥସର୍ବସ୍ୱ, ଦେଶ, ଜାତି ଓ ମହତ ବ୍ୟକ୍ତିତ୍ୱ ପ୍ରତି ଭ୍ରୂକ୍ଷେପ ନକରୁଥିବା ଆଜିର ନାଗରିକଙ୍କୁ କବି ଖୁବ୍ ନିର୍ଭୀକ ପ୍ରଚ୍ଛନ୍ନ ବିଦ୍ରୂପ ମାଧ୍ୟମରେ ଚିତ୍ରଣ କରିଛନ୍ତି—

"ରାସ୍ତାରେ ଲୋକ ଚାଲିଯାଉଛନ୍ତି ଦେଖ
ସେ ଆଡ଼କୁ ନ ଅନାଇଁ
ପକେଟର ରେଜା ପଇସାକୁ ସମ୍ଭାଳି
ଗିରିଶିଖରକୁ କାହାର ଲକ୍ଷ୍ୟ ନାହିଁ
ସମସ୍ତଙ୍କ ଆଖି ନିଜ ଉପରେ ନିବିଦ୍ଧ" ।

(ଗୋପବନ୍ଧୁ)

ଏହି ଗଣତନ୍ତ୍ର ଯୁଗରେ ଖଦଡ଼-ପରିହିତ ଲୋକପ୍ରତିନିଧି ଶାସକଙ୍କର ରାଜତନ୍ତ୍ରର ସେଇ ଅତ୍ୟାଚାର, ସେଇ ଶୋଷଣ, ସେଇ ସ୍ୱାର୍ଥାନ୍ଧତା ଜାରି ରହିଛି । ଖାଲି ଯାହା ଭେକରେ ସେସବୁର ଭିନ୍ନତା । ତା'ର ଚିତ୍ରଟିଏ ଦେଲେ କବି ଦୀପକ ମିଶ୍ର—

"ପାଖେ ପାଖେ ବସିଛନ୍ତି
ସଭାପତି, ଉପସଭାପତି, କୋଷାଧ୍ୟକ୍ଷ
ମହାମନ୍ତ୍ରୀ, କାଉନ୍‌ସିଲି ଓ କାନକୁହା ବିଦୂଷକ × × ×
ଲମ୍ବିଥିବା ରାସ୍ତାରେ
ଥୁଣ୍ଟା ଇଲେକ୍‌ଟ୍ରିକ୍ ଖମ୍ବ
ଜଳା କଳା ଅନ୍ଧାରରେ

ଡାହାଣୀ ଆଲୁଅ
ଖଦଡ଼ ରାଜାଙ୍କ ଆଜ
ଅନ୍ଧାର ବଳୟ" ।

(ଅନ୍ଧାର ବଳେ—ଅନଘା)

ସାମ୍ପ୍ରତିକ ରାଜନୀତି ଓ ଶାସନତନ୍ତ୍ରକୁ ବିଶ୍ଳେଷଣ କରି ତାହାର ପତମାନ ଅଂଶକୁ ଇଙ୍ଗିତ କରିଛନ୍ତି ସରୋଜରଞ୍ଜନ ମହାନ୍ତି—

"ସମସ୍ତ ତ
ଲୁଗା ପାଲଟିବା ପରି
ବିଶ୍ୱାସ ଓ ଆନୁଗତ୍ୟକୁ
ସୁଯୋଗ ଦେଖି
ବଦଳାଇ ଦେଉଥିବା
ଲୋକ ପ୍ରତିନିଧି ନୁହେଁ ଯେ
ତା' ମୁହଁରେ
ପଟି ବାନ୍ଧି ଦେଇଥିବ
ମୋଟା ଅଙ୍କର
ମୁଦ୍ରା ବିନିମୟରେ ବା କିଛି
ଦରକାରି ସୁବିଧାର
ପ୍ରତିଶ୍ରୁତି ଦେଇ" ।

(ସମସ୍ତଙ୍କର କୁଟିଳ ହସରେ)

ଏହି ସମାଜ-ବ୍ୟବସ୍ଥାରେ ରାଜନୀତିକ ନେତାର ଅସଲ ଭୂମିକାକୁ ଅଭିବ୍ୟଞ୍ଜିତ କରନ୍ତି ସୌଭାଗ୍ୟ ମିଶ୍ର—

"ସୂର୍ଯ୍ୟ କୌଣସି ରାଜନୀତିକ ଦଳର ସ୍ୱେଚ୍ଛାସ୍ୱ ନୁହେଁ
ମନ୍ତ୍ରିତ୍ୱ ତା'ର ଅନିର୍ଦ୍ଦିଷ୍ଟ
ସେ ସ୍ୱରସ୍ଥାନ ନେତାର ସ୍ୱରକୁ
ଆହୁରି କ୍ଷୀଣ କରିଦିଏ" ।

ରାଜନୀତିକ ଜୀବନରେ କେହି କାହାର ଗୁରୁ ନୁହେଁ କି ଶିଷ୍ୟ ନୁହେଁ । ସେଠାରେ ଶ୍ରଦ୍ଧା ବା କୃତଜ୍ଞତାର ଲେଶମାତ୍ର ନାହିଁ । 'ରାଜନୀତିର ବାଘନଖୀ ଖେଳ' (ଭୁବନେଶ୍ୱର, ରାଜେନ୍ଦ୍ର ପଣ୍ଡା) ଶିବାଜୀ ଓ ଆଫଜଲ୍ ଖାଁଙ୍କ ବନ୍ଧୁତ୍ୱ ବିନିମୟର ସୂତ୍ରକୁ ଉପସ୍ଥାପନ କରେ । କ୍ଷମତା-ରାଜନୀତିର ପ୍ରାଦ୍ଧାତ ଚଢ଼ିବାର ମୂଳ କୌଶଳକୁ ରେକ୍‌ଟୋକ୍ ପ୍ରକାଶ କରିପାରନ୍ତି କବି—

"ଯେଉଁ ସିଡ଼ିରେ ଚଢ଼ି ଆସିଥିଲ ତାକୁ ଖସାଇ ଦେବା ପାଇଁ
ଧକ୍କା ମାରୁଥାଅ ବାରମ୍ବାର
ଆରମ୍ଭରୁ ହିଁ ସନ୍ଦେହୀ ଅସ୍ତିତ୍ୱଟି ତୁମେ…" ।

(ଇନ୍ଦ୍ରୋଚିତ—ଆଶୁତୋଷ ପରିଡ଼ା)

ଅର୍ଥସର୍ବସ୍ୱ ଏହି ଶତାବ୍ଦୀରେ ମଣିଷ ପାପପୁଣ୍ୟର ସ୍ୱତନ୍ତ୍ର ଊର୍ଦ୍ଧ୍ୱରେ ଟଙ୍କାକୁ ପ୍ରତିଷ୍ଠା ଦେଇଛି । କଳାବଜାରୀ, ମୁନାଫାଖୋରୀର ସପକ୍ଷରେ ଏହି ନୈତିକତାକୁ ସେ କଟାକ୍ଷ କରନ୍ତି—

"କେତେ ନିଦ୍ରିତ ରାତିରେ ମାତ୍ର
ଟଙ୍କାର ରମଣୀ ଗର୍ଭବତୀ ହୁଏ
କଳାକାରର ନିର୍ଜନ ଗୃହରେ
ସେ ପ୍ରସବ କରୁଥାଏ ଟଙ୍କା
ସୌଦାଗର ଜଗିବସିଥାଏ ଧାଇଟିଏ ପରି
× × × ପାପକୁ କିଣିନେଇ ଥାପିଦେଲେ ସିଂହାସନରେ
ପାପ ହୋଇଯାଏ ଆଜ୍ଞାବହ" ।

(ସୌଦାଗର—ଆଶୁତୋଷ ପରିଡ଼ା)

ଅନୁରୂପ ଏକ ଧପ୍‌ପାବାଜର ଅଭିବ୍ୟକ୍ତ ସୌଭାଗ୍ୟଙ୍କ କବିତାରେ—

" × × × ସେତିକି ଅନାବଶ୍ୟକ
ଅଫିମଭର୍ତ୍ତି ବାକ୍‌ସକୁ ମୋର ନୁହେଁ ବୋଲି କହିଦବା ଷ୍ଟେସନ୍‌ରେ
ଯାଞ୍ଚ୍ କଲାବାଲା ଅଫିସରମାନଙ୍କୁ" ।

ଏ ଯୁଗରେ ମଣିଷର ଚେତନା ଜଗତ କମ୍ ସଙ୍କଟର ସମ୍ମୁଖୀନ ହୋଇନାହିଁ । ସାହିତ୍ୟିକ ବାତାବରଣ ରୁଚିହୀନ ଆତ୍ମମ୍ଭରିତା ଦ୍ୱାରା କଦାକାର ହୋଇପଡ଼ିଛି । କଠୋର ବ୍ୟଙ୍ଗର ଛୁରିକାରେ ଏହାକୁ ବ୍ୟବଚ୍ଛେଦ କରନ୍ତି ରାଜେନ୍ଦ୍ର ପଣ୍ଡା—

"ମୁଁ ଖାତିର କରେନା
ଶିରପା, ମୁଦି, ମକରକୁଣ୍ଡଳ ପାଇଁ କନ୍ଦଳ କରୁଥିବା
ସାହିତ୍ୟର ସିଆଣା ସୌଦାଗର ମାନଙ୍କୁ" ।

କମ୍ବା

"ପୁତ୍ର ନାମକ ନର୍କରୁ ଖାଲି ତ୍ରାହି ପାଇଲେ ହେଲା ?
କବି କେମିତି ହବ ଓଡ଼ିଆ ସାହିତ୍ୟର ଇତିହାସରେ
ଶ୍ରୀରାମଚନ୍ଦ୍ର ଭବନରେ ନିଜ ପ୍ରତିକୃତି

ଝୁଲାଇବାର ଝର୍ଣାଦ୍ଧ ବହନ ପାଇଁ ଯୋଗ୍ୟ
ପୁଅଟେ ଯଦ୍ଧ ଗୁଞ୍ଜ ନଯିବ ପୃଥିବୀରେ ?"

ଫୁଟପାଥିର ମଣିଷ, ଦୁଃସ୍ଥ, ରୁଗ୍‌ଣ ଶିଶୁ, ଦଳିତ ଶୋଷିତର କରୁଣ ସ୍ଥିତି ଆଜିର ସଚେତନ ସମ୍ବେଦନଶୀଳ ବ୍ୟକ୍ତିର ପ୍ରାଣକୁ କାତର ଅସ୍ଥିର କରିପକାଉଛି । ସବୁଠୁ ଜାଗ୍ରତ ହୃଦମାନ କବି-ଅନ୍ତର ସିକ୍ତ ହେଉଛି କେବେ କାରୁଣ୍ୟରେ ତ କେବେ ପ୍ରତିବାଦରେ । ତେଣୁ ନିଜର ସମବେଦନା ଓ ଦରଦ ପ୍ରକାଶରେ କେବେ ସେ ଜଣେ ବ୍ୟଙ୍ଗକାର ତ କେବେ ହତାଶା ଓ ମାର୍ମିକ ଅବସାଦର ପ୍ରବକ୍ତା । ନୀତି ଓ ଉଦରପୂରଣର ସଂଘର୍ଷପୀଡ଼ିତା ଚନ୍ଦ୍ରମା ରମାକାନ୍ତଙ୍କର ଏକ ପ୍ରତୀକ ଚରିତ୍ର । କବିଙ୍କ ଅନେକ କବିତାରେ ଦୁଃସ୍ଥ ଦଳିତ ନିପୀଡ଼ିତ ପ୍ରତି ସମବେଦନାର ସ୍ୱର ଗଭୀର ମାର୍ମିକ ଅବବୋଧ ମାଧ୍ୟମରେ ଅଭିବ୍ୟକ୍ତ । ଓଡ଼ିଶା କହିଲେ ଏକ ଉତ୍କଟ ଦାରିଦ୍ର୍ୟର ଛବି ଫୁଟିଉଠେ କବିଙ୍କ ଆଖିରେ । ସ୍ନେହ, ମାୟା, ନୀତି ଓ ସୌନ୍ଦର୍ଯ୍ୟ ସେ ଛବିରେ ସବୁକିଛି ବିପର୍ଯ୍ୟସ୍ତ । ତାଙ୍କ କଲମରେ—

"ଯେ ମୁହଁ ରାସ୍ତାରେ ଗୁଲେ
ଡୋଲ୍‌ପେଟ ଅସ୍ଥିଚର୍ମ ସାର ପିଲ୍‌ପର
ସେ ମୁହଁ ମାଗୁଛି ଭିକ
ସେ ମୁହଁ ହାଣୁଛି—
କଟାକ୍ଷ, ଲୁଆଙ୍କୁ ବିକ
ହସି ହସି ବୁଲୁଥିବା ବେଶ୍ୟାର" ।

ଧନୀଲୋକେ ଧୂର୍ତ୍ତ । ଅବିବେକୀ ଲୋକେ ଆଜି ଏ ସମାଜର କର୍ଣ୍ଣଧାର । କବି ମନେକରନ୍ତି ଯେ, ନିକଟଭବିଷ୍ୟତରେ ଏହି ଅବିବେକୀଗଣ ପ୍ରଭାବଶାଳୀ ହେବେ ଅଧିକରୁ ଅଧିକ । କ୍ଷୁଧାର୍ତ୍ତ ଶିଶୁ ଚିରଦିନ କ୍ଷୁଧାର୍ତ୍ତ ହିଁ ରହିବ । ହୁଏତ ରାସ୍ତାକଡ଼ରେ ମୃତ୍ୟୁ ହିଁ ତା'ର ଏକମାତ୍ର ରକ୍ଷାକବଚ ହେବ । ଏହି ଅବିବେକୀ, ନିଜରକ୍ତ ନୀଳବର୍ଣ୍ଣ ବୋଲି ବିଶ୍ୱାସ କରୁଥିବା ଲୋକଙ୍କ କ୍ଷମତାଚକ୍ର ତଳେ ପେଷିହୋଇଯିବ ସାଧାରଣ ମଣିଷ । ସହାନୁଭୂତି-ରହିତ ଏହି ମଣିଷ-ଗୋଷ୍ଠୀର ଭୟଙ୍କର ପରିଚୟକୁ ଉପସ୍ଥାପିତ କରନ୍ତି ସେ—

"ଏତିକି ଶୋଚନା ଆଜି
ଯେଉଁମାନେ ରହିଗଲେ ତାଙ୍କର ମୁରବୀ
ହେବେ ଅବିବେକୀ ଲୋକେ, ଯେଉଁମାନେ ଚମକି ନିଦରୁ
ଉଠନ୍ତିନ, ମୁଣ୍ଡ ବାଡ଼ାନ୍ତିନ
ଯଦିଓ ଅନେକ କଥା ବିଗିଡ଼ିଗଲା ଓ
ଯଦିଓ ରୋଗିଣା ପିଲା

କଲେ କଲେ ଦୁଧ ଖାଇ ତାରାଙ୍କ ଥନରୁ
ଶୋଇଗଲେ, ସକାଳ ପାହିଲେ
ଆଉ ଖାଦ୍ୟ ମିଳିବନି
ପୃଥିବୀରୁ କିମ୍ବା ଆକାଶରୁ" ।

(ଧୀବର, ରମାକାନ୍ତ ରଥ)

ଉପରୋକ୍ତ ପ୍ରକାର ନୃଶଂସତାକୁ ହୃଦୟଙ୍ଗମ କଲାବେଳେ କବିଙ୍କ ସାମ୍ନାରେ ଆଉ କୌଣସି ସମ୍ଭାବନା ଅବଶିଷ୍ଟ ରହେ ନାହିଁ ।

ସାଧାରଣ ଜନତା ଯୂପକାଠରେ ବଳିପଶୁ—ଧନିକ କ୍ଷମତାପନ୍ନଙ୍କ ଅତ୍ୟାଚାରରେ କବଳିତ । ରାଜନୀତିକ ନ୍ୟାୟ ବିଚାର, ହିଟଚମଟ ଖାଲି ଉପରଦେଖାଣିଆ । ନିର୍ଜନ ପ୍ରାଣବନ୍ତିନ ସାଧାରଣ ମଣିଷଟି ଅତ୍ୟାଚାର ପାଇଁ ନିଜକୁ ପ୍ରସ୍ତୁତ କରିଥାଏ—ଛୁରି ଆଗରେ ବେକ ଦେଖାଇ ଥାଏ—

"ଧୀରେ ଧୀରେ ଧୀରେ
ବେକ କାଟିବୁରେ ଦୁଲୁ ମିଆଁ
× × × ଭୁବନେଶ୍ୱରର ଆଲୁଅ ଭିତରେ
ପ୍ରାଣ ମୋର କାଲେ ଦହଗଞ୍ଜ ହେବ
ଲିଭିଯିବ ତୋ'ର ମୁରବୀ ନାଆଁ
× × × ମାଇପି ଲୁହର ବନ୍ୟା ଛୁଟିଲେ
ଅପଦସ୍ତ ହେବ ମାଲିକ ତୋହର
ବିଧାନସଭାରେ ଜଳିବ ନାଆଁ" ।

(ଦୁଲୁମିଆଁ ପ୍ରତି କୁକୁଡ଼ାର ଉକ୍ତି, ହରପ୍ରସାଦ ପରିଚ୍ଛା ପଟ୍ଟନାୟକ)

ନିର୍ଯାତିତ ଭାରବାହୀ ମଣିଷ ସବୁବେଳେ ଭାଗ୍ୟ ଆଦର ରହେ ନାହିଁ, ପ୍ରତିବାଦର ସ୍ୱର ତୋଳେ । ଏହି ଜନତାର ପ୍ରତୀକ ଓଟ, ତାହାକୁ ଉଦ୍‌ବୋଧନ ଦେଇ କବି ପ୍ରଚଳିତ ସମାଜ-ବ୍ୟବସ୍ଥା ବିରୋଧରେ ପ୍ରତିବାଦ ଜଣାନ୍ତି—

"ତେଣୁ ଆଜି ଫିଙ୍ଗିଦିଅ ପୃଷ୍ଠଦେଶୁଁ
ବଣିକର ପଣ୍ୟବାହୀ ବୋଝ
ଶୋଷଣର ଯେତେ ଗୁରୁଭାର
ଏବଂ ଲଙ୍ଘି ଚାଲ
ଦୁର୍ଲଂଘ୍ୟ ଦୁସ୍ତର ସୁଦୂର ଦିଗନ୍ତ-ବ୍ୟାପୀ
ଧୂ ଧୂ ମରୁର ପ୍ରାନ୍ତର" ।

(ଓଟ, ବ୍ରଜନାଥ ରଥ)

ଅର୍ଥ, ପ୍ରତିପତ୍ତି, ସାମାଜିକ ବୈଷମ୍ୟର ବାହାରେ ମଧ୍ୟ ମଣିଷ ପ୍ରତି ମଣିଷ ହୋଇଛି ସନ୍ଦେହୀ । ହୃଦୟର ସମ୍ପର୍କ ହୋଇଛି ବିଡ଼ମ୍ବିତ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ସମ୍ପର୍କ ତେଣୁ ସଂଶୟାଚ୍ଛନ୍ନ । ଲୋଭ ଓ ସ୍ୱାର୍ଥପ୍ରବଣତା ମଣିଷକୁ ଆନ୍ତରିକ ସମ୍ପର୍କଟିଏ ଗଢ଼ି-ଥୋଇବାକୁ ସମର୍ଥ କରିପାରୁ ନାହିଁ । ଭଗବଦ୍ ଗୀତାରେ ସେଦିନ ଶ୍ରୀକୃଷ୍ଣ କହିଥିଲେ—

'କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ'

କିନ୍ତୁ ଆଜି କର୍ମର ଆଶୁ ଫଳଲାଭ ନିମିତ୍ତ ହନ୍ତସନ୍ତ ମଣିଷ ପାଗଳ ହୋଇପଡ଼ୁଛି । ଏତାଦୃଶ କର୍ମଯୋଗରେ ବିଶ୍ୱାସୀ ମଣିଷକୁ ବିଦ୍ରୂପ କରନ୍ତି ହରପ୍ରସାଦ ଦାସ—

"କର୍ମଫଳକୁ ଏଇନେ ପାଇ ଏଇନେ ଖାଇ
ମୁହଁ ପୋଛି ଦେବା ହିଁ କର୍ମଯୋଗ ଆମର
ପରଲୋକରେ ପହଞ୍ଚିଲେ ଦେଖିବା
ସେଠି କି କିଛି ଉପାୟ ଥିବ ବଞ୍ଚିଯିବାର" ।

କେବଳ ଇହଲୋକ ନୁହେଁ, ଏହି ଉଗ୍ର ଲୋଭପରବଶ ମଣିଷ ପରଲୋକକୁ ଆକ୍ରାନ୍ତ କରିବାକୁ ଇଚ୍ଛା କରୁଛି । ପ୍ରତ୍ୟେକ ସମ୍ପର୍କ ଓ ବନ୍ଧୁତା ଆଜି ଉଦ୍ଦେଶ୍ୟଭିତ୍ତିକ, ପ୍ରୟୋଜନ-ଭିତ୍ତିକ ହୋଇପଡ଼ିଛି । ପ୍ରୟୋଜନ ଆଗରେ ମନୁଷ୍ୟତ୍ୱ ବଳିଦେବାକୁ ମଣିଷ ପଶ୍ଚାତ୍ପଦ ହେଉନାହିଁ । ନିତ୍ୟନୈମିତ୍ତିକ ଜୀବନରେ ଆବଶ୍ୟକ ପଡ଼ିଲେ ସେ ଅମଣିଷତ୍ୱକୁ ବରଣ କରିବାକୁ ଉନ୍ମୁଖ । ଆତ୍ମସମୀକ୍ଷା କରି ସେ କହେ—

"ଆବଶ୍ୟକତାରେ ଗଢ଼ା
ମୋର ଅମଣିଷତ୍ୱକୁ
ପ୍ରାୟ ପ୍ରତିଦିନ ଦେଖେ" ।

(ଅମଣିଷ, ହରପ୍ରସାଦ ଦାସ)

ମଣିଷ ନାମଧାରୀ ଏହି ଜୀବଟିର ଅମଣିଷତ୍ୱ କିଭଳି ଉତ୍କଟ ଓ ଅସହାୟ, ଦୁର୍ବଳକୁ ଏହି ଧୂର୍ତ୍ତ ନୃଶଂସ ଜୀବଟି କିଭଳି କବଳିତ କରୁଛି, ତାହା ଏଠାରେ ପ୍ରମୂର୍ତ୍ତ । ବିଗତ କୌଣସି ଶତାବ୍ଦୀରେ ମଣିଷ ବୋଧେ ଏତେ ଭୟଙ୍କର ପ୍ରାଣୀରୂପେ ପରିଗଣିତ ହୋଇନାହିଁ । ବୁଭୁକ୍ଷା ତା'ର ପ୍ରଚଣ୍ଡ ଓ ଅନ୍ତହୀନ—

"ସୃଷ୍ଟିର ସବୁଠୁଁ ଭୟଙ୍କର ପ୍ରାଣୀ ମଣିଷ
ତା'ର କୋଳାହଳମୟ ହିଂସ୍ର ସଞ୍ଚାର
× × × ମଣିଷର ଏଇଠୁଁ ବଳି ଭୟାନକ ଧ୍ୱନି ଆଉ ନାହିଁ
ବୁଭୁକ୍ଷା ତା'ର ଦଉଡ଼ିଛିଏ ପୁଣି
ନୂଆ ଭକ୍ଷ୍ୟ ପାଇଁ
ସ୍ନେହ, ସଖ୍ୟ, ପ୍ରେମ ସବୁ ଯେପରିକି

ବିଧି ବଳି-ପଶୁ ପାଇଁ ଅତ୍ୟାଗ୍ରହଜଳ···
ମୌକା ଯଦି ମିଳେ
ପ୍ରିୟତମା ବି ସ୍ୱାହା
ଈଶ୍ୱର ବି ସୁସ୍ୱାଦୁ ଆହାର" ।

(ପେଟ୍ ପ୍ରତି ଈଶ୍ୱର, ରାଜେନ୍ଦ୍ର ପଣ୍ଡା)

ମଣିଷର କୋଳାହଳମୟ ସଂସାର ପଥରେ ଲୋଭ ଓ ସ୍ୱାର୍ଥସାଧନର ଅସ୍ତ୍ର ହେଉଛି ହିଂସ୍ରତା । ଈଶ୍ୱରଙ୍କ ପ୍ରତି ତା'ର ଭକ୍ତି ନାହିଁ କି ଭୟ ନାହିଁ । ଈଶ୍ୱରଙ୍କୁ ଆଶ୍ରୟ ବୋଲି ଗ୍ରହଣ କରିବାକୁ ସେ ପରାଙ୍ମୁଖ ।

ବ୍ୟକ୍ତିଗତ ବନ୍ଧୁତାର ସ୍ତରରେ ଶଠତାର ଚନ୍ଦ ପରିପ୍ରୁକ୍ତ । ସୌଭାଗ୍ୟଙ୍କ 'ବାନର ମକର କଥା' ଓ ରାଜେନ୍ଦ୍ରଙ୍କ 'ସପେମିର' କବିତା ଦୁଇଟି ଏହି ଆଚରଣର ଜ୍ୱଳନ୍ତ ଦୃଷ୍ଟାନ୍ତ ହୋଇପାରେ । କାହାଣୀକଳ୍ପ ଏଠାରେ ରୂପକଳ୍ପର ସ୍ଥାନ ଗ୍ରହଣ କରେ । ମାଙ୍କଡ଼, କୁମ୍ଭୀର, ଭାଲୁ, ମଣିଷ ଏଠାରେ ପ୍ରତୀକ ପାଲଟି ଯାଆନ୍ତି—ପ୍ରତି ମୁହୂର୍ତ୍ତରେ ମଣିଷ ସତର୍କ-ଶଠତାକୁ ସାମ୍ନା କରେ । ଏହି ବନ୍ଧୁହୀନ, ଜ୍ଞାତିହୀନ, ଭୟ ଓ ପାପମିଶ୍ରିତ ସମୟକୁ ଆଙ୍କି ଦିଅନ୍ତି ଗୁରୁପ୍ରସାଦ—

"ଏ ପୃଥିବୀ ଜଣାଯାଏ ବନ୍ଧୁହୀନ, ଜ୍ଞାତିହୀନ
× × × ଭୟ ଆଉ ପାପ ମିଶି ଏ ସମୟ ଅନ୍ତଃସତ୍ତ୍ୱା × ×" ।

(ହରେକୃଷ୍ଣ ଦାସ-୨)

ଏହି ଜର୍ଜରିତ ସମୟ—ଯେତେବେଳେ ଈଶ୍ୱରଙ୍କ ଅସ୍ତିତ୍ୱପ୍ରତି ମଣିଷ ସନ୍ଦିହାନ, ଯେତେବେଳେ ଆପଣାର ମଣିଷତ୍ୱ ଉପରେ ତା'ର ଭରସା ନାହିଁ, ଏହି ଅପଚୟର ସମୟକୁ କବି ପୁରାଣ-କଳ୍ପର ଆଶ୍ରୟରେ ଗଢ଼ି ଥୋଉଛି, ଏଥିରୁ ଜନ୍ମ ନେଉଛି ଏକ ଉତ୍ତରଣର ଅଭୀପ୍‌ସା । କେବେ ପ୍ରାଚୀନ କାହାଣୀ ମାଧ୍ୟମରେ ବ୍ୟକ୍ତି-ସମ୍ପର୍କକୁ ପ୍ରଗାଢ଼ିତ କରୁଛି । ଦାସତ୍ୱର ଶୃଙ୍ଖଳ ପିନ୍ଧି, ମୁଣ୍ଡ ନୋଇଁ, ଅଭ୍ୟାଗତଙ୍କର ସେବାକାରିଣୀରୂପେ ବଞ୍ଚିରହିଥିବା ନାରୀଟି ଭିତରେ ସଜୀବିତ ତା'ର ଉର୍ଦ୍ଧ୍ୱୀତ୍ତୀର୍ଣ୍ଣ ଅଭୀପ୍‌ସାକୁ ରୂପ ଦେଉଛନ୍ତି ସୀତାକାନ୍ତ ମହାପାତ୍ର—

"ଆଜ ତେଣୁ ମୁକ୍ତ ମାଗେ
ଅଭିଶପ୍ତ ମଥୁରାର ବନ୍ଦୀ ନଗରଲୋକ
ତୋ ଚରଣ ରେଣୁ ସ୍ପର୍ଶେ ଝରିଯାଉ ଜୀବନର ଅସାର ନର୍ମୋକ
ଶେଷ ହେଉ ଧୂସରର ମୃତ୍ୟୁ ଆଉ ବିଭଙ୍ଗ କାଳର
ଅନ୍ତ ହେଉ ଅଶ୍ଳୀଳ ଓ କୁତ୍ସିତର ରାଜପୂଜା
ଶୁଖିଲା ଆକାଶେ ଜାଗୁ ମେଘମାଳା
ହାଣ୍ଡିକଳା ଘୂମର ଘୂମର" ।

ଅଶ୍ଳୀଳ ଓ କୁତ୍ସିତ ସିଂହାସନରେ ପୂଜାପାଏ ଓ ସେବକ ତଥାପି ଆନୁଗତ୍ୟ ପ୍ରକାଶ କରି ରଥଚକ୍ର ଧାଇଁଥାଏ । ସେ ତଥାପି ମଣିଷ । ଅମଣିଷର ପୂଜା କରିବା ତା'ପାଇଁ ମିଥ୍ୟା ନୁହେଁ, କିନ୍ତୁ ମଣିଷତ୍ୱର ଉଦାତ୍ତ ସ୍ୱର ସମୁଚ୍ଚ ଉଠିବା, ଅବନତ ଆଖିପତାରେ ଆଲୋକର ସ୍ୱପ୍ନ ଲେଖିହୋଇଯିବା ଆଦୌ ଅସମ୍ଭବ ନୁହେଁ । କ୍ଲାନ୍ତିକର ଯାତ୍ରାରୁ ମୁକ୍ତି ଲୋଡ଼େ ଅକ୍ରୂର । ବିଂଶ ଶତାବ୍ଦୀର ଏହି ବସ୍ତୁବାଦୀ ଜଗତରେ ମଣିଷ ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରତି ବେଳେବେଳେ ଆସ୍ଥାହରାଏ ସତ । ତଥାପି ମରୁଭୂମିର ବାଟଭୁଲା ନୁହଁଟି ପରି ଜୀବନ-ସଂଗ୍ରାମର ଘଡ଼ିସନ୍ଧି ମୁହୂର୍ତ୍ତରେ ଈଶ୍ୱରଙ୍କୁ ସ୍ୱୀକାର କରୁନଥିବା ତା'ର ସତ୍ତା ଅବଶେଷରେ କ୍ଲାନ୍ତିରୁ, ଅସହାୟତାରୁ ମୁକ୍ତି ଖୋଜେ । ସର୍ବଶ୍ରେଷ୍ଠ ଆଶ୍ରୟ ନିକଟରେ ଆବେଦନ ଜଣାଏ । ଅଜ୍ଞାତ ଶକ୍ତିର ଉତ୍ସ ଏକ ଊର୍ଦ୍ଧ୍ୱତନ ସତ୍ତା ନିକଟରେ ନିଜକୁ ସମର୍ପିଦିଏ । ସେ ସତ୍ତା ତା'ର ଆତ୍ମସତ୍ତାର ଏକ ଅଂଶ ବୋଲି ତା'ର ହୃଦ୍‌ବୋଧ ହୋଇଥାଏ । ଏହିଭଳି ଏକ ଆବେଦନର ସ୍ୱର—

"ମହାପ୍ରଭୁ ମୁକ୍ତି ଦିଅ—
ଏହି ଯାତ୍ରା ଶୁଭହେଉ ତୁମର ଦୟାରୁ
ଏହି ଯାତ୍ରା ହେଉ ମୋର ଶେଷଯାତ୍ରା ଏ ଦେହରୁ
ତୁମର ସହାର ତେଇଁ
ବହୁତ ବହୁତ କ୍ଲାନ୍ତ, ପୁନରୁକ୍ତ ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କରୁଣାର
ସମୁଦ୍ର କୂଳରୁ" ।

(ଅକ୍ରୂର ଉବାଚ)

ସାଂପ୍ରତିକ କବିତା ଏ ଯୁଗର ମଣିଷର ଜଟିଳ ଭାବାବେଗ ଓ ଅନ୍ତର୍ଜଗତର ଅନୁରଣନକୁ ବହନ କରିଥାଏ । ଭାରତୀୟ ସମାଜର ପରମ୍ପରା, ଲୋକବିଶ୍ୱାସ ଓ ଭାଗ୍ୟବାଦର ଆଲେଖ୍ୟ ଏହି କାଳରେ ରଚିତ କବିତାରୁ ଅନୁଧ୍ୟାନ କରିହେବ । ହିନ୍ଦୁଧର୍ମର ବିଶ୍ୱାସାନୁସାରେ ଆମମାନଙ୍କ ଦ୍ୱାରା ଅନୁସୃତ ପ୍ରତିଟି ପ୍ରଥା ପରମ୍ପରାଗତ ହୋଇ ଏବେବି ସମାଜରେ ପ୍ରଚଳିତ । ବଡ଼ବଡ଼ୁଆଙ୍କୁ କାଉଁରିଆ କାଠି ଜାଳି ଦୀପାବଳୀ 'ଅମାବାସ୍ୟାରେ ଡାକିବା, ମାଟିସରାରେ ବାପାଙ୍କ ଅସ୍ଥି ଦି'ଖଣ୍ଡ ରଖି ଗଛମୂଳେ ପୋତିବା, ଛଅଖଣ୍ଡି କାଠରେ ଚିତା ପ୍ରସ୍ତୁତ କରିବା, ମନ୍ଦାରମାଳ ପିନ୍ଧି ମଇଁଷି ବାହନରେ ଯମର ଆସିବା, କଦଳୀଗଛର ଖୋଳପାରି ଡଙ୍ଗା, କୁଆର କା' କା'ରେ କେହି ଅତିଥି ଆସିବାର ସୂଚନା, ଶବ ଶ୍ମଶାନକୁ ଯିବା କାଳରେ 'ରାମ ନାମ ସତ୍ୟ ହୈ'ର ଧ୍ୱନି, ପ୍ରେତାତ୍ମାର କ୍ଳେଶ, ପାପକାର୍ଯ୍ୟ କଲେ ଅଳ୍ପାୟୁ ହେବା, ପୁତ୍ରଦ୍ୱାରା ଶ୍ରାଦ୍ଧ କରାଇବା, ଗଙ୍ଗା ଗୟାରେ ବିସର୍ଜନ ପାଇଁ ଅସ୍ଥି ଧରି ବଦ୍ରିନାଥ, ହରଦ୍ୱାର, ପୁରୀ ଓ ରାମେଶ୍ୱର ଯିବା ଇତ୍ୟାଦି ଆମ ସମାଜର

ଚଳଣି ଓ ପରମ୍ପରାର ଚିତ୍ର ସାମ୍ପ୍ରତିକ କବିତାମାନଙ୍କରେ ପ୍ରଚୁର ଲକ୍ଷ୍ୟ କରିହୁଏ । କବି ନିଜ ସଂସ୍କାରର ଚିତ୍ର ପ୍ରଦାନ କରିଥାଏ । ଜାତକ ଗଣନା କରି ତା'ର ଫଳାଫଳ ଉପରେ ବିଶ୍ୱାସ ସ୍ଥାପନ କରିବା ଏବେବି ଆମ ସମାଜରୁ ଯାଇ ନାହିଁ । ଏହିପରି ଏକ ବିଶ୍ୱାସର ଅବତାରଣା—

"ମୁଁ ପ୍ରାୟ ଯାଇଚି ଭୁଲି
ଗୁରୁ ଅଛି ଚନ୍ଦ୍ରର ଆଠରେ
କେବଳ ସେତିକି ନୁହେଁ, ଚନ୍ଦ୍ର ସଙ୍ଗେ ଶନି ରହିଅଛି
ସୁତରାଂ ଏ ବସନ୍ତ ସତ୍ତ୍ୱେ ମୁହିଁ ସନ୍ଦିଗ୍ଧ ବେଗରେ
ସୁତରାଂ ଅର୍ଥ ନାଶ, ବନ୍ଧୁ ନାଶ..."

(ବସନ୍ତରିତୁ, ରମାକାନ୍ତ ରଥ)

ଏହିପ୍ରକାର ଭାଗ୍ୟବାଦ, ପରମ୍ପରା ଓ ଲୋକବିଶ୍ୱାସ ସାମ୍ପ୍ରତିକ କବିତାର ମୁଖ୍ୟ ଉପଜୀବ୍ୟ ନହେଲେହେଁ ଏସବୁର ଉପସ୍ଥାପନ ଦ୍ୱାରା ବକ୍ତବ୍ୟ ପ୍ରାଞ୍ଜଳ ଓ ସମ୍ବେଦ୍ୟ ହୋଇ ପାରିଛି । କବିର ସଂସ୍କାରଚେତନାରୁ ଏସବୁର ନିଃସରଣ ଘଟିଛି ।

ସବୁକାଳେ ସବୁ ଯୁଗରେ ସାହିତ୍ୟ ଓ କଳା ସମାଜର ଆଭ୍ୟନ୍ତରୀଣ ଓ ବାହ୍ୟ-ରୂପର ପ୍ରତିଫଳନ ଧରି ରଖେ । ସାମ୍ପ୍ରତିକ କାଳରେ ତାହାର ବ୍ୟତିକ୍ରମ ଘଟିନାହିଁ ବରଂ ସାମ୍ପ୍ରତିକ କବି ତା' ସମାଜର ବାସ୍ତବଚିତ୍ର ଓ ସମ୍ଭାବନାର ପ୍ରତିଟି ସ୍ତରକୁ ଉନ୍ମୋଚନ କରିବାରେ ବ୍ୟାପୃତ । କବିତାରେ ପ୍ରତିଫଳିତ ବାସ୍ତବତା ଏକ ରୂପାନ୍ତରିତ ବାସ୍ତବତା । ଏହି ରୂପାନ୍ତରଣ ବାସ୍ତବ ଭୂମି ଉପରେ ଦଣ୍ଡାୟମାନ ଓ ବାସ୍ତବର ବିଶ୍ଳେଷଣରୁ, ଜୀବନର ଆତ୍ମାନ୍ୱେଷଣରୁ, ସତ୍ୟାଭିତ୍ତିକ ବାସ୍ତବତାର ଚିତ୍ରଦର୍ଶନରୁ ସମ୍ଭୂତ ।

# ରୋମାଣ୍ଟିକ୍ ଚେତନା ଓ ଆଧୁନିକତା

ରୋମାଣ୍ଟିକ କାବ୍ୟାଦର୍ଶ ସମ୍ବନ୍ଧରେ ଆଜି ଆଉ ସାହିତ୍ୟର ଛାତ୍ର ବା ଆଲୋଚକ-ଗଣଙ୍କ ମନରେ କୌଣସି ଭୁଲ୍ ଧାରଣା ରହିନାହିଁ । ରୋମାଣ୍ଟିକ୍ କାବ୍ୟତତ୍ତ୍ୱର ପରିବ୍ୟାପ୍ତ ପରିସର, କଳ୍ପନାନୁରଞ୍ଜିତ ବର୍ଣ୍ଣମୟ ଊର୍ଦ୍ଧ୍ୱ ଜଗତ ଓ ପ୍ରକୃତିର ପ୍ରାଣମୟ ବ୍ୟଞ୍ଜନା, ବ୍ୟକ୍ତିର ମୂହୂର୍ତ୍ତ ପ୍ରଧାନ ବିଚିତ୍ର ଅନୁଭୂତିର ଆଲେଖ୍ୟ ସବୁବେଳେ କାବ୍ୟ କବିତାର ମୂଳଭିତ୍ତି ରୂପେ ଗୃହୀତ ହୋଇପାରିଛି । ସେଥିପାଇଁ ଯଥାର୍ଥରେ ଫରାସୀ କବି ବଦଲେୟାର୍ କହିଥିଲେ ଯେ, 'ମୋ ଦୃଷ୍ଟିରେ ରୋମାଣ୍ଟିକ୍ ଚେତନା ହେଉଛି ସୌନ୍ଦର୍ଯ୍ୟର ଆଧୁନିକତମ, ସଦ୍ୟତମ ପରିପ୍ରକାଶ । ଏହି ଶତାବ୍ଦୀର ନୈତିକତା ସହ ଏହାର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । ରୋମାଣ୍ଟିକ୍ ଚେତନା କହିବା ମାନେ ରୂପମୟତା, ବର୍ତ୍ତୁଳ ଶୋଭା, ଅଧ୍ୟାତ୍ମ ବ୍ୟଞ୍ଜନା ଓ ଅସୀମର ଅଭୀପ୍‌ସାକୁ ବୁଝାଏ । କାବ୍ୟ କବିତାର ରୋମାଣ୍ଟିକ୍ ଗୁଣ ଏଥିରୁ ବେଶ୍ ସ୍ପଷ୍ଟ ହୋଇପାରୁଛି । ରୋମାଣ୍ଟିକ୍ ହୃଦୟାବେଗ, କାରୁଣ୍ୟ, ଆଶାବାଦ ଓ ପ୍ରେମାନୁଭୂତିର ସ୍ୱରୂପକୁ ଯଥାର୍ଥରେ ଆଲୋଚକ କାର୍ଲାଇଲ୍‌ଙ୍କ ଉକ୍ତି ଆମ ସମକ୍ଷରେ ପ୍ରାଞ୍ଜଳ କରିଦିଏ । 'ଆଖିରୁ ଲୁହ ଝରଉଥିବା ନକ୍ଷତ୍ର, ଗର୍ଜୁଥିବା ପବନ, କମ୍ପି ଉଠୁଥିବା ଜଳଶୀଥିମା, ଉଡ୍‌ଡୀୟ-ମାନ ପକ୍ଷୀ, ସୁଗନ୍ଧ ବିତରୁଥିବା ପୁଷ୍ପ, ଗଦ୍‌ଗଦ୍ ଉଚ୍ଚାରଣ, ସ୍ମିତ ଆନନ୍ଦ, ତାଳଗଛର ଘେରି ଉଇଲୋଗଛ—ଏହି ସବୁହିଁ ରୋମାଣ୍ଟିକ୍ ଚିତ୍ର ଓ ଚିତ୍ତବୃତ୍ତି—ରୋମାଣ୍ଟିକତା ଅସୀମ ଓ ତାରକାର ସହିତ ସମ୍ପୃକ୍ତ' । ଏଥିରୁ ରୋମାଣ୍ଟିକ୍ ଆବେଗ ଯେ ପୁଲକିତ ଅନ୍ତରର ନିବିଡ଼ ଅନୁଭବ ଭିନ୍ନ ଅନ୍ୟ କିଛି ନୁହେଁ, ଏହା ବେଶ୍ ହୃଦୟଙ୍ଗମ କରିହୁଏ ।

ସୃଷ୍ଟିଶୀଳତା ସହ ଏହି ଦୃଷ୍ଟିଭଙ୍ଗୀ ଏପରି ସଘନ ଜଡ଼ିତ ଯେ, ଗୋଟିକୁ ଅନ୍ୟଟିରୁ ପୃଥକ୍ କରି ଦେଖିବା ସହଜ ନୁହେଁ । ରୋମାଣ୍ଟିକ୍ ଚେତନାକୁ କଳ୍ପନାଶକ୍ତି, ଅତିକମଣ ମନୋଭାବ ଓ ରହସ୍ୟାନୁଭୂତି ସମ୍ବଳିତ ଏକ ଚିତ୍ତବୃତ୍ତି ବୁଝିଲେ ଏବଂ ସ୍ରଷ୍ଟା ବ୍ୟକ୍ତିତ୍ୱର ପ୍ରାଧାନ୍ୟ ପରିସ୍ଫୁଟ କରିବା ଏହାର ଗୁଣ ବୋଲି ଗ୍ରହଣ କଲେ ଏହାକୁ ପରିତ୍ୟାଗ କରି କଳାକାର କିଛି ସୃଷ୍ଟି କରିବା କଦାପି ସମ୍ଭବ ନୁହେଁ ବୋଲି ବୁଝିହୁଏ । ଫୁଲଟି ବାସ୍ତବ, ତା'ର ରଙ୍ଗ, ଗନ୍ଧ ଓ ଓଜନ ବାସ୍ତବ, ମାତ୍ର ସୌନ୍ଦର୍ଯ୍ୟ ଦର୍ଶନଟି ବାସ୍ତବ ନୁହେଁ । ଫୁଲର ବାସ୍ତବ ଆକାର ଓ ରଙ୍ଗ, ଗନ୍ଧ ସହ କବି-ଚିତ୍ତର ସଂଯୋଗ ଘଟିଲେ ଫୁଲଟି ସୁନ୍ଦର ରୂପେ ପ୍ରତିଭାତ ହୁଏ । ସୌନ୍ଦର୍ଯ୍ୟକୁ ଗ୍ରହଣ କରୁଥିବା କବି ବ୍ୟକ୍ତିତ୍ୱର ସ୍ୱାତନ୍ତ୍ର୍ୟ ଅନୁଯାୟୀ

ସୌନ୍ଦର୍ଯ୍ୟାନୁଭୂତର ତାରତମ୍ୟ ଘଟେ । ଯେଉଁ ଚିତ୍ତବୃତ୍ତି ସୌନ୍ଦର୍ଯ୍ୟ ଦର୍ଶନରେ ବେପଥୁଗ୍ରସ୍ତ ହୁଏ, ସୁନ୍ଦର ବସ୍ତୁ ଅଡ଼କୁ ଢଳିପଡ଼େ, ତାହାହିଁ ରୋମାଣ୍ଟିକ୍ ଚିତ୍ତବୃତ୍ତି । ଏଠାରେ ଗୋଟିଏ ଉଦାହରଣ ଦେଲେ ରୋମାଣ୍ଟିକ୍ ଚେତନାର ବ୍ୟକ୍ତିବାଦୀ ସ୍ୱାତନ୍ତ୍ର୍ୟ ସ୍ପଷ୍ଟ ରୂପେ ବିଶ୍ଳେଷିତ ହୋଇପାରିବ । ଉଦାହରଣଟି ଏହିପରି – ପାଞ୍ଚଜଣ କବି ଗୋଟିଏ ପାହାଡ଼ ତଳେ ବସି ସୂର୍ଯ୍ୟାସ୍ତକୁ ଲକ୍ଷ୍ୟ କଲେ । ସୂର୍ଯ୍ୟାସ୍ତ ଉପରେ ସେ ପାଞ୍ଚଜଣ କବି ପ୍ରତ୍ୟେକ ଗୋଟିଏ କରି କବିତା ଲେଖିଲେ । ଏଠାରେ ଦେଖାଯିବ ଯେ, ପାଞ୍ଚଜଣ କବି ସମାନ ସମୟରେ ସମାନ ଦୃଶ୍ୟ ଦେଖିଥିଲେ ମଧ୍ୟ ବାସ୍ତବ ଦୃଶ୍ୟ ସମସ୍ତଙ୍କ ନିମିତ୍ତ ସମାନ ହୋଇ-ଥିଲେ ହେଁ ରଚିତ ପାଞ୍ଚଗୋଟି କବିତାରେ ସୂର୍ଯ୍ୟାସ୍ତକୁ ପାଞ୍ଚଟି ବିଭିନ୍ନ ଦିଗରୁ ରୂପାୟିତ କରାଯାଇଛି । କବିତା ପାଞ୍ଚଟିରେ ଅଭିବ୍ୟକ୍ତ ଭାବାନୁଭୂତ ପାଞ୍ଚ ପ୍ରକାର – ଏହି ପାଞ୍ଚ ପ୍ରକାର ବୈଭିନ୍ନ୍ୟ ଭିତରେ ପାଞ୍ଚଜଣ କବିଙ୍କର ସ୍ୱାତନ୍ତ୍ର୍ୟହିଁ ପ୍ରକଟିତ – ଏହି ସ୍ୱାତନ୍ତ୍ର୍ୟହିଁ ବ୍ୟକ୍ତିବାଦ ।

ଇଂଲଣ୍ଡରେ ୧୭୯୮ ଠାରୁ ୧୮୩୦ ପର୍ଯ୍ୟନ୍ତ କାଳକୁ ବା ଓଡ଼ିଆ ସାହିତ୍ୟରେ ୧୮୮୫ ରୁ ୧୯୩୫ ପର୍ଯ୍ୟନ୍ତ କାଳକୁ ରୋମାଣ୍ଟିକ୍ ରଚନାର ଯୁଗବୋଲି ଅଭିହିତ କରାଗଲେ ମଧ୍ୟ ଏହି ସମୟର ପୂର୍ବ ବା ପରବର୍ତ୍ତୀ ସାହିତ୍ୟରେ ଯେ ରୋମାଣ୍ଟିକ୍ ଗୁଣ ନଥିଲା ଏହା ବୁଝିବା ଭ୍ରମାତ୍ମକ ହେବ । ଉପରୋକ୍ତ ସମୟକୁ ରୋମାଣ୍ଟିକ୍ ଯୁଗ କୁହାଯାଏ ଏଇଥିପାଇଁ ଯେ କାବ୍ୟକବିତାରେ ରୋମାଣ୍ଟିକ୍ ଗୁଣଗୁଡ଼ିକ ଏହି ସମୟରେ ପ୍ରଚୁରଭାବେ ଓ ମୁଖ୍ୟଭାବେ ପ୍ରକଟିତ ହୋଇଥିଲା । କବି ରାଧାନାଥଙ୍କ ଠାରୁ ରୋମାଣ୍ଟିକ୍ ଯୁଗ ଆରମ୍ଭ ହେଲା ଓ ଇଂରାଜୀ ରୋମାଣ୍ଟିକ୍ ଚେତନା ଦ୍ୱାରା ତାଙ୍କ କାବ୍ୟମାନସ ଗଭୀରଭାବେ ପ୍ରଭାବିତ ହୋଇ-ଥିଲା । ଓଡ଼ିଆ ସାହିତ୍ୟରେ ସଚେତନ ରୋମାଣ୍ଟିକ୍ କାବ୍ୟଧାରା ଏହି ପ୍ରଭାବର ଫଳ । ମାତ୍ର ରୋମାଣ୍ଟିକ୍ ଯୁଗର ପରବର୍ତ୍ତୀ ଓ ପୂର୍ବବର୍ତ୍ତୀ କାବ୍ୟକବିତା ରୋମାଣ୍ଟିକ୍ ଗୁଣଯୁକ୍ତ ନୁହେଁ ଭାବିବା ଅବିମୃଶ୍ୟକାରିତା ହେବ । କାରଣ ସୃଷ୍ଟିଶୀଳତା ସହ ରୋମାଣ୍ଟିକ୍ ଚେତନାର ଅନସ୍ୱୀକାର୍ଯ୍ୟ ସହଯୋଗ ପ୍ରାଚୀନ ଓ ଆଧୁନିକ ଉଭୟ ଯୁଗର କାବ୍ୟକବିତାରେ ଉପଲବ୍ଧି କରିହେବ ।

ସଂସ୍କୃତ ସାହିତ୍ୟର ପ୍ରଖ୍ୟାତ କବି କାଳିଦାସଙ୍କୁ ରୋମାଣ୍ଟିକ୍ କହିବାରେ ଦ୍ୱିଧା-ବୋଧ କରାଯିବାର କାରଣ ରହିବ ନାହିଁ । କାଳିଦାସଙ୍କ କାବ୍ୟସୃଷ୍ଟିରେ ପ୍ରଚୁର ରୋମାଣ୍ଟିକ୍ ଗୁଣ ଉପସ୍ଥିତ ଥିଲା । ପ୍ରକୃତି-ବର୍ଣ୍ଣନାରେ କାଳିଦାସଙ୍କ କାବ୍ୟଚେତନାର ଚମତ୍କାରପ୍ରଦ ସୌନ୍ଦର୍ଯ୍ୟାନୁବୋଧ ଶକ୍ତି ରହିଛି । ଘଟଣାର ପରିକଳ୍ପନାରେ ମଧ୍ୟ ଅଲୌ-କିକତାର ଅଭାବ ନାହିଁ । ପ୍ରକୃତି-ଚିତ୍ରର ଗୋଟିଏ ଉଦାହରଣ ଏଠାରେ ଦେଲେ ଅପ୍ରାସଙ୍ଗିକ ହେବ ନାହିଁ । କାଳିଦାସଙ୍କ ପ୍ରକୃତିଚିତ୍ରଣ, ରୋମାଣ୍ଟିକ୍ କବିଙ୍କ ପ୍ରକୃତି ଚିତ୍ରଣଠାରୁ ଦୂରବର୍ତ୍ତୀ ନୁହେଁ, ସ୍ଥଳ ବିଶେଷରେ ଏକାତ୍ମ ମଧ୍ୟ । 'ରଘୁବଂଶ' କାବ୍ୟରେ ସମୁଦ୍ର ବର୍ଣ୍ଣନା କରିବାକୁ ଯାଇ ନଦୀମୁହାଣ ଓ ସମୁଦ୍ରର ସଂଯୋଗକୁ କବି ବର୍ଣ୍ଣନା କରୁଛନ୍ତି –

"ମୁଖାର୍ପଣେଷୁ ପ୍ରକୃତ ପ୍ରଗଲ୍ଭା
ସ୍ୱୟଂ ତରଙ୍ଗାଧର-ଦାନଦକ୍ଷଃ
ଅନନ୍ୟସାମାନ୍ୟ କଳତ୍ରବୃତ୍ତିଃ
ପିବତ୍ୟସୌ ପାୟୟତେ ଚ ସିନ୍ଧୂଃ"

ସମୁଦ୍ରଠାରେ କବି ବ୍ୟକ୍ତିତ୍ୱର ଆରୋପ କରିଛନ୍ତି । ସୀତାଙ୍କୁ ସମୁଦ୍ର ଦେଖାଇ ସମୁଦ୍ରର ଚରିତଗତ ଗୁଣକୁ ଲକ୍ଷ୍ୟକରି ରାମଚନ୍ଦ୍ର କହୁଛନ୍ତି – ଦେଖ, ସମୁଦ୍ରର ଅସାମାନ୍ୟ ପତ୍ନୀପ୍ରେମକୁ ଦେଖ – ନଦୀର ସମର୍ପିତ ମୁଖଆଡ଼େ ନିଜର ତରଙ୍ଗାଧରକୁ ବଢ଼ାଇଦେଇ ସମୁଦ୍ର ରସଯୁକ୍ତ ଓଷ୍ଠାଧରକୁ ପାନ କରୁଛି ଓ ନଦୀକୁ ମଧ୍ୟ ପିଆଉଅଛି ।

ଏଠାରେ ସମୁଦ୍ର ଏକ ସାଧାରଣ ଭୌଗୋଳିକ ଜଳାଧାର ନୁହେଁ—ସେ ଜଣେ ଅନନ୍ୟ ପ୍ରେମିକ ରୂପେ ଚିତ୍ରିତ । ଏହା ବ୍ୟତୀତ ପୁରାଣ ଯୁଗର ନାନା ଅଲୌକିକ ପରିକଳ୍ପନା ଓ ବୈଷ୍ଣବୀୟ ପ୍ରେମଚେତନା ମଧ୍ୟରେ ପର୍ଯ୍ୟାପ୍ତ ରୋମାଣ୍ଟିକ୍ ତତ୍ତ୍ୱର ପ୍ରକାଶ ଲକ୍ଷ୍ୟ କରାଯାଇପାରିବ ।

ମାତ୍ର ରାଧାନାଥଙ୍କ ଯୁଗରେ ହିଁ ଯଥାର୍ଥରେ ପାଶ୍ଚାତ୍ୟ ପ୍ରଭାବିତ ରୋମାଣ୍ଟିକ୍‌ତା ବହୁଳଭାବେ ପ୍ରକାଶ ପାଇଛି । ତତ୍ପରବର୍ତ୍ତୀ କାଳରେ ୧୯୩୫ ପରେ ଏପରିକି ୧୯୮୦ ମସିହାରେ ମଧ୍ୟ ଓଡ଼ିଆ କାବ୍ୟକବିତାରେ ରୋମାଣ୍ଟିକ୍ ଭାବର ଉପସ୍ଥିତି ଏହାର ଆଧୁନିକତା ଓ ସାର୍ବକାଳୀନତାକୁ ପ୍ରମାଣ କରିପାରେ । ରୋମାଣ୍ଟିକ୍ ଯୁଗର କାବ୍ୟକବିତା ପ୍ରାୟ ୧୯୬୦ ମସିହା ପରେ ପରେ ଆପଣାର ବିପୁଳତାକୁ ହରାଇ ବସିଥିଲା । ପଳାୟନ ମନୋବୃତ୍ତି, ସମାଜ ପ୍ରତି ଅସଚେତନତା ଓ କଳ୍ପନା-ପ୍ରଧାନ କାବ୍ୟର ବହୁଳ ସୃଷ୍ଟି ରୋମାଣ୍ଟିକ୍ କାବ୍ୟାଦର୍ଶକୁ କ୍ଷୁଣ୍ଣ କରିବାକୁ ଯଥେଷ୍ଟ ଥିଲା । ଏହାର ପ୍ରତିବାଦରେ ଆଧୁନିକ କବିତା ସୃଷ୍ଟିହେଲା ଓ ବାସ୍ତବର ଭିତ୍ତିଭୂମି ଉପରେ ଏହା ନିର୍ମିତ ହେଲା । ସମୟ ଓ ସମସ୍ୟାର ପରିପ୍ରେକ୍ଷୀରେ କବି-ଚିତ୍ତର ସ୍ପନ୍ଦନ ଏଥିରେ ଯଥାଯଥ ରୂପାୟିତ ହେଲା । ଆଧୁନିକ କବିତା ତେଣୁ ରୋମାଣ୍ଟିକ୍ ଯୁଗର କବିତାଠାରୁ କିଛିଟା ଭିନ୍ନ ପ୍ରତୀତ ହେଲା । ଆଧୁନିକତା ରୋମାଣ୍ଟିକ୍ ଆବେଗପ୍ରବଣତା ସହିତ ବୌଦ୍ଧିକତାର ସଂଯୋଗକୁ ସ୍ୱୀକାର କଲା । ଆଧୁନିକ କବି ସଚ୍ଚିରାଉତରାୟ, ଗୁରୁପ୍ରସାଦ, ରମାକାନ୍ତ ଓ ସୀତାକାନ୍ତଙ୍କ କବିତାରେ ଜୀବନର ବାସ୍ତବତାର ପୃଷ୍ଠଭୂମିରେ କଳ୍ପନାର ପ୍ରସାର, ଅନୁଭବର ଶାଶ୍ୱତ ଜଗତ, ପ୍ରାତ୍ୟହିକ ଜୀବନର ଅଭିଜ୍ଞତାରୁ ସଞ୍ଜାତ କବିର ଆତ୍ମିକ ଅଭୀପ୍ସାର ଉଚ୍ଚାରଣ, ପ୍ରକୃତିର ମୂହୂର୍ତ୍ତ ପ୍ରଧାନ ଆଭ୍ୟନ୍ତରୀଣ ସ୍ୱରୂପ, ଅବିନଶ୍ୱର ପ୍ରକୃତି ଆତ୍ମା ସହିତ ମାନବାତ୍ମାର ଯୋଗାଯୋଗ ପ୍ରମୂର୍ତ୍ତ ହୋଇପାରିଛି । ଆକାଂକ୍ଷିତ ପରିବେଶ ଓ ଘଟଣାରୁ ବଞ୍ଚିତ ହୋଇ-ଥିବା କବିହୃଦୟର ବିପନ୍ନତା ଆଧୁନିକ କବିତାର ଛନ୍ଦେ ଛନ୍ଦେ ପ୍ରତିବିମ୍ବିତ । କିଏ ନ ଜାଣେ ସଚ୍ଚିରାଉତରାୟଙ୍କୁ ରୋମାଣ୍ଟିକ୍ କବି ଭାବରେ ? ତେବେ ଆଧୁନିକ କବିର ଏହି

ଚିତ୍ତବୃତ୍ତି ସର୍ବଦା ବାସ୍ତବାଭିମୁଖୀ ବା ବାସ୍ତବଭୂମି ଉପରେ ଦଣ୍ଡାୟମାନ । ବାସ୍ତବ ପ୍ରତି ସାମାନ୍ୟ ଅସଚେତନତା ବି ସଫଳ ଆଧୁନିକ କବିତାରେ ପ୍ରକାଶ ପାଏ ନାହିଁ । କାଳ, ପରିବେଶ, ଘଟଣା, ପରିଣତି ଓ ସମ୍ଭାବନା ଏ ସକଳ ପ୍ରତି ଯଥେଷ୍ଟ ଅବହିତ ରହି ଆଧୁନିକ କବି ସ୍ୱକଳ୍ପନା ଜଗତ ଗଢ଼ିଥାଏ—ଅନୁଭବର ନୂତନ ଦିଗନ୍ତ ଉନ୍ମୋଚନରେ ପ୍ରୟାସ କରିଥାଏ । ସେଥିପାଇଁ ଆଧୁନିକ କବିକୁ ରୋମାଣ୍ଟିକ୍ ନକହି ରୋମାଣ୍ଟିକ୍ ବାସ୍ତବ-ବାଦୀ କୁହାଯାଇ ପାରିବ ।

ଆଧୁନିକ କବିତା ବିକାଶର ପ୍ରଥମ ପର୍ଯ୍ୟାୟରେ ରୋମାଣ୍ଟିକ୍ ଚେତନାର ଦୁର୍ବଳତାକୁ ପରିହାର କରି ଅଧିକ ଶୃଙ୍ଖଳା ନୈର୍ବ୍ୟକ୍ତିକତା ଓ ଯୁକ୍ତିପ୍ରବଣତାକୁ ସ୍ୱୀକାର କରିନେଲା । ସମୟ ଓ ସମସ୍ୟାର ପରିପ୍ରେକ୍ଷୀରେ କବି ଚିତ୍ତର ସ୍ପନ୍ଦନ ଏଥିରେ ରୂପାୟିତ ହେଲା । ଆଧୁନିକ କବିତାରେ ଉପସ୍ଥିତ ସୌନ୍ଦର୍ଯ୍ୟ ଦର୍ଶନରେ ସ୍ପନ୍ଦନ, ଆନ୍ତରିକତା, ଅସୀମ ପ୍ରତି ଆକୁଳତା, କଳ୍ପନାନୁରଞ୍ଜିତ ଅନୁଭବ, ବିଷାଦବାଦ, ଅତୀତ ଅଭିମୁଖିତା ଓ ଅଜଣାର ଆକର୍ଷଣ ଲୋକଗୀତ ଓ ଲୋକଗଳ୍ପରୁ ଉପାଦାନ ଗ୍ରହଣ ଆଦି ରୋମାଣ୍ଟିକ୍ ଚେତନାର ମୌଳିକ ବିଭାଗଗୁଡ଼ିକୁ ଚିହ୍ନିତ କରେ । ଆଧୁନିକ କବିତାର ରୂପରଚନା କ୍ଷେତ୍ରରେ ଗଦ୍ୟଛନ୍ଦ, ବାକ୍‌ଛନ୍ଦ, ଯାହା ଅବଲମ୍ବନୀୟ ହେଉଥାଉନା କାହିଁକି, ସମ୍ବୋଧଗୀତି, ଶୋକଗୀତି ଓ ଚତୁର୍ଦ୍ଦଶପଦୀ ଆଦି ଆଧୁନିକ କବି କମ୍ ଲେଖୁନାହିଁ । ରୋମାଣ୍ଟିକ୍ କବିତାର ସ୍ୱତନ୍ତ୍ର ଆଭିମୁଖ୍ୟ ନିମ୍ନୋକ୍ତ କେତୋଟି ଦୃଷ୍ଟିଭଙ୍ଗୀରୁ ସ୍ପଷ୍ଟ ହୋଇଯିବ ।

**ରୋମାଣ୍ଟିକ୍ ପ୍ରକୃତି ଚିତ୍ର**

ରୋମାଣ୍ଟିକ୍ ରଚନାରେ ପ୍ରକୃତି ସହ ସ୍ରଷ୍ଟାର ଏକ ରାଗାତ୍ମକ ସମ୍ପର୍କ ସୃଷ୍ଟି ରହିଥାଏ । ବିଶେଷକରି ରୋମାଣ୍ଟିକ୍ ଯୁଗରେ ଏହି ସମ୍ପର୍କ ନିଜର ରୂପ, ଗମ୍ଭୀରତା ଓ ଅବବୋଧରେ ଅଧିକ ନିବିଡ଼ ହୋଇପାରିଥିଲା । ପ୍ରକୃତି ପୁଣି କ'ଣ ? ସାଧାରଣ ଅର୍ଥରେ ମାନବେତର ହିଁ ପ୍ରକୃତି—ଯେଉଁ ପରିବେଶ ମଧ୍ୟରେ ଆମେ ରହୁ, ବଞ୍ଚୁ, ଶିକ୍ଷାଲାଭ କରୁ ଓ ସଂସ୍କାରପ୍ରାପ୍ତ ହେଉ, ତାହା ହିଁ ପ୍ରକୃତି ।' ଅପର ଅର୍ଥରେ ମାନବେତର ଇନ୍ଦ୍ରିୟଗୋଚର ଅଂଶ, ଯାହାକୁ ଆମେ ଦେଖୁ, ଶୁଣୁ, ସ୍ପର୍ଶକରୁ, ଆଘ୍ରାଣ ଓ ଆସ୍ୱାଦନ କରୁ, ତାହାହିଁ ପ୍ରକୃତି । ରୋମାଣ୍ଟିକ୍ ରଚନାରେ ଏହି ପ୍ରକୃତି ନୂତନ ପ୍ରାଣଶକ୍ତିରେ ଅଭିଷିକ୍ତ ହୋଇଛି । ପ୍ରକୃତିର ମାନବୀକରଣ ଓ ତହିଁରେ ବ୍ୟକ୍ତିତ୍ୱ ଆରୋପ ରୋମାଣ୍ଟିକ୍ ପ୍ରକୃତି ଦୃଷ୍ଟିର ଅନ୍ୟ ଏକ ବୈଶିଷ୍ଟ୍ୟ । ରୋମାଣ୍ଟିକ୍ ବ୍ୟକ୍ତିବାଦର ପ୍ରଭାବରୁ ସମସ୍ତଙ୍କର ଜ୍ଞାତ ପ୍ରକୃତି, ବ୍ୟକ୍ତି-ବିଶେଷର ପରିଚିତ ପ୍ରକୃତି ରୂପେ ଆତ୍ମପ୍ରକାଶ କରିଛି । ବ୍ୟକ୍ତିର ଅନ୍ତର ସହ ନିସର୍ଗର ନିବିଡ଼ ଯୋଗାଯୋଗ ପ୍ରତିଷ୍ଠିତ ହୋଇଛି । ପ୍ରକୃତିର ଯେ ହୃଦୟ ଅଛି, ଆତ୍ମା ଅଛି ଓ ବିପୁଳ ବୈଚିତ୍ର୍ୟ ପ୍ରକୃତି ମଧ୍ୟରେ ନିହିତ; ଏହା ପ୍ରଥମେ ରୋମାଣ୍ଟିକ୍ କବିମାନେ ସ୍ୱୀକାର କରିଛନ୍ତି । ପ୍ରକୃତିଠାରୁ ସେମାନେ ସହୃଦୟ ବେଦନାର ସମର୍ଥନ ଓ ସମ୍ବେଦନ

ପାଇଛନ୍ତି । ସେମାନେ ପ୍ରକୃତିକୁ ପୂଜା କରିଛନ୍ତି । କେବଳ ଆଖିଦେଇ ନଦେଖି ଦେଖିଛନ୍ତି ଧୀଶକ୍ତି ଦ୍ୱାରା, ଜାଗ୍ରତ ଚେତନା ଦ୍ୱାରା ଓ ଆତ୍ମବୋଧର ତୀବ୍ର ଆନନ୍ଦାନୁଭୂତି ଦ୍ୱାରା । ଓ୍ୱାର୍ଡସ୍‌ଓ୍ୱାର୍ଥ ପ୍ରକୃତିକୁ ଗଭୀର ତନ୍ମୟତାର ସହିତ ଭଲ ପାଆନ୍ତି । ପ୍ରକୃତିରେ ଆତ୍ମା ଥିବାର ସେ ବିଶ୍ୱାସ କରିଛନ୍ତି ଏବଂ ପ୍ରକୃତି ତାଙ୍କ ପାଇଁ ହୋଇଉଠିଛି ସ୍ୱାଭାବିକ ଓ ଅତିମାନବିକ ବସ୍ତୁର ଏକ ପ୍ରତ୍ୟକ୍ଷ ଆବେଦନ, ଯେଉଁ ଆବେଦନ ଦ୍ୱାରା ନିରୀକ୍ଷଣଶୀଳ ମାନବାତ୍ମା ବସ୍ତୁ-ସତ୍ତାକୁ ଚିହ୍ନି ନିଏ, ଗ୍ରହଣ କରିନିଏ ସକଳ ବୈଷମ୍ୟର ନିର୍ବିଶେଷରେ । ମଣିଷ ସମାଜ ପାଇଁ ପ୍ରକୃତି ମଧ୍ୟରେ ଯେଉଁ ଗଣତାନ୍ତ୍ରିକ ଆବେଦନ ରହିଛି—ଉଦାରତା ଓ ସମଦୃଷ୍ଟି—ଏହା ରୋମାଣ୍ଟିକ୍ ଯୁଗର କବିଙ୍କୁ ସେ କାଳରେ ଖୁବ୍ ପ୍ରଭାବିତ କରିଥିଲା । ପ୍ରକୃତି ସହ ଆଧୁନିକ କବି ଏକାତ୍ମ ହୋଇଯିବା ଓ ନିଜ ଉପଲବ୍‌ଧିର ସମର୍ଥନ ପାଇବାର ବହୁ ଦୃଷ୍ଟାନ୍ତ ମିଳିପାରିବ । ଆଧୁନିକ କବିତାରୁ ଗୋଟିଏ ଚିତ୍ରକଳ୍ପର ଉଦାହରଣ ଦେଲେ ପ୍ରକୃତି ସହ କବି ଆତ୍ମାର ନିବିଡ଼ ଯୋଗାଯୋଗର ସୂତ୍ରଟିକୁ ଚିହ୍ନି ହୋଇଯିବ । ଏଠାରେ ଦୃଶ୍ୟଗତ ଚିତ୍ର ଅପେକ୍ଷା ଅନୁଭବଗତ ଚିତ୍ର ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ।

"ତାପରେ ତରଳିଯାଇ ବ୍ରହ୍ମାଣ୍ଡ ଉପରେ
ବୋହିଗଲି ଯେପରି ମୁଁ ପର୍ବତ ଭିତରୁ
ସଦ୍ୟମୁକ୍ତ ହୋଇଥିବା ଚନ୍ଦ୍ରର କିରଣ ।"

(ଶ୍ରୀରାଧା)

କଳ୍ପିତ ମିଳନର ଅନୁଭବରେ ନାୟିକାର ପୁଲକିତ ଆତ୍ମସତ୍ତା ସଦ୍ୟମୁକ୍ତ ତରଳ ଜ୍ୟୋତ୍ସ୍ନାର ଦିଗଦିଗନ୍ତବ୍ୟାପୀ ପ୍ଳାବନ ଦ୍ୱାରା ପ୍ରତୀକିତ ହୋଇଛି । ଏଠାରେ ପୁଲକ ଓ ବିହ୍ୱଳତା ବିମୁକ୍ତ ଜ୍ୟୋତ୍ସ୍ନାର ପ୍ଳାବନ ରୂପେ ପ୍ରସରିତ ।

ପ୍ରକୃତିର ଉପାଦାନ ଫୁଲଟିଏ । ତା'ର ରୂପାଲୋକ ଓ ତୀବ୍ର ସୁଗନ୍ଧ ନେଇ ସେ ବ୍ୟକ୍ତିର କାମନା ସହ ଯୋଗସୂତ୍ର ସ୍ଥାପନ କରେ । ପ୍ରକୃତିର ଉପାଦାନଟି କାମନା ଓ ଉତ୍ତେଜନା ପ୍ରତିଧ୍ୱନି ହୁଏ । ଗୁରୁପ୍ରସାଦଙ୍କ କବିତାରେ—

"ଚମ୍ପାଫୁଲ ମହକରେ ପଡ଼େ ସେ ଯେ ଦାରୁଣ କୁହୁକ
ରକ୍ତେ ଯାଏ ନିଆଁ ଲାଗି
ଗ୍ରୀଷ୍ମ ଆଉ ନିଶ୍ୱାସରେ ନିଆଁ
ଗ୍ରୀଷ୍ମ ଆଉ ନିଶ୍ୱାସରେ ନିଆଁ
ସେ ଯେ ଦେହେ ଦେହେ ବିଜୁଳି ଚମକ
ବିଜୁଳି ଚମକ ସେ ଯେ ବଣ ନିଆଁ ।"

ପ୍ରକୃତିର ଚିତ୍ର ମଧ୍ୟରେ କବି ସ୍ୱ ଆବେଗର ସମର୍ଥିତ ଚିତ୍ରଟିଏ ପାଇଯାଏ । ପ୍ରକୃତି ବିହ୍ୱଳ ହୋଇଉଠେ ଠିକ୍ ମଣିଷର ଅନ୍ତରାତ୍ମାର ବିହ୍ୱଳତା ସହ ସମାନ୍ତରାଳ ହୋଇ । ମମତା ଦାଶଙ୍କ କବିତାରେ—

"ଆକାଶ ଗୋଟାକ ବର୍ଷା, ଅଗଣା ଅଗଣା ବର୍ଷା
ଅଧାବୁଡ଼ା ମଲ୍ଲିବୁଦା ଲକ୍ଷ ଲକ୍ଷ ଦଲକ୍ଷ ଭଳି
ଠିଆହେଇ ସମ୍ଭାଷଣ କଲେ
ଗଛପତ୍ର ଘାସମାନେ ମୁକ୍ତାର ଗହଣା ଭଳି
ପାଣିଟୋପା ସାଜହେଲେ
ବାରମ୍ବାର ବାଣ୍ଟିଲେ ଫିଙ୍ଗିଲେ ।"

ନିଜ ଅନୁଭବର ନିକଟତମ ଚିତ୍ର ଫୁଟିଉଠେ ପ୍ରକୃତି ଚିତ୍ରସହ । ପ୍ରକୃତି ସତେକି ଆତ୍ମସ୍ୱରୂପ ଭିନ୍ନ ଅନ୍ୟ କିଛି ନୁହେଁ—

"ଆଜି ଏ ଶରତ ଏଠି ନୀଳକଣ୍ଠ
ନୀଳଚନ୍ଦ୍ର
ସ୍ୱପ୍ନ ନୀଳ
ନୀଳ ଏଇ ଶସ୍ୟର ବୃଗନ୍ତ ।"

ନିତ୍ୟାନନ୍ଦ ନାୟକ—(ଅସ୍ତ ଶରତର ନିଶର୍)

ରୋମାଣ୍ଟିକ୍ କବିମାନଙ୍କ ପାଇଁ କଳ୍ପନାଶକ୍ତି ହିଁ କବିତ୍ୱର ମୌଳିକ ଉପାଦାନ । ଏହାର ବିନା ସହଯୋଗରେ କବିତା ସର୍ଚନା ସମ୍ଭବ ହୋଇପାରେ ନାହିଁ । ଆଧୁନିକ ମଣିଷ ବ୍ୟକ୍ତିସତ୍ତାରେ ବିଶ୍ୱାସ କରେ ଓ କଳ୍ପନାଶକ୍ତି ବ୍ୟକ୍ତିସତ୍ତାର ଏକ ଅଂଶ । ଆଧ୍ୟାତ୍ମିକତା ସମ୍ପର୍କରେ କଳ୍ପନାଶକ୍ତି ବିଶେଷ ଅନୁପ୍ରେରଣା ଦେଇଥାଏ । ରୋମାଣ୍ଟିକ୍ ରଚନାରେ ହେତୁଠାରୁ ଅନୁଭବକୁ, ଯୁକ୍ତିଠାରୁ ଭାବାବେଶକୁ ଅଧିକ ଗୁରୁତ୍ୱ ଦିଆଯାଏ । ସାଧାରଣତଃ ମଣିଷ ଯାହା ଦେଖିପାରେ ନାହିଁ, କଳ୍ପନା ମାଧ୍ୟମରେ ହିଁ ତା'ର ବିମୋହନ ରୂପ ଦର୍ଶନ କରିଥାଏ । କଳ୍ପନା ଓ ଅନ୍ତର୍ଦୃଷ୍ଟି ଏକ ଏବଂ ଅବିଚ୍ଛେଦ୍ୟ । ଦୃଶ୍ୟ ଜଗତର ସମାନ୍ତରାଳ ଏକ ଅଦୃଶ୍ୟ ଜଗତ ଅଧିକ ସୁନ୍ଦର ଶ୍ରୀ ଓ ସମ୍ଭାବନାକୁ ନେଇ ତିଷ୍ଠି ରହିଛି, ଏହା ରୋମାଣ୍ଟିକ୍ ବିଶ୍ୱାସର ଅନ୍ତର୍ଭୁକ୍ତି । ଦୃଶ୍ୟ ମଧ୍ୟଦେଇ ଦୃଶ୍ୟାତୀତର ଦର୍ଶନ ରୋମାଣ୍ଟିକ୍ କଳ୍ପନାଶକ୍ତିର ସର୍ବୋଚ୍ଚ କୃତି । ଏହି କଳ୍ପନାଶକ୍ତି ଆଧ୍ୟାତ୍ମିକ ଅବବୋଧ ଓ ରହସ୍ୟାନୁଭବର ସହାୟତା କରିଥାଏ । ସଫଳ କବିତା ମଧ୍ୟରେ ଅସୀମର ଦ୍ୟୋତନା ଲୁକ୍କାୟିତ ଥାଏ ଏବଂ ଅସୀମର ଦ୍ୟୋତକ ସଫଳ କବିତା କଳ୍ପନାର ସାହଚର୍ଯ୍ୟରେ ହିଁ ଗ୍ରଥିତ ହୋଇପାରେ । ରୋମାଣ୍ଟିକ୍ କବିମାନେ ସତ୍ୟ ଓ ବାସ୍ତବତା ସହିତ କଳ୍ପନା ଶକ୍ତିର ନିକଟ ଯୋଗାଯୋଗ ଥିବାର ବିଶ୍ୱାସ କରନ୍ତି । କଳ୍ପନା ସର୍ବଦା ବାସ୍ତବ ହେବାରେ ଉଦ୍ୟମଶୀଳ—ଗଠନମୂଳକ କଳ୍ପନା କବିକୁ ଅଭିଜ୍ଞତାରୁ ଉତ୍ତୀର୍ଣ୍ଣ କରି ଏକ ବିପୁଳ ଅନୁଭବର ସିଂହାସନରେ ଅଭିଷିକ୍ତ କରିଥାଏ । ଉଚ୍ଚତର କବିତା ସର୍ବଦା ହୃଦୟାବେଗ ପ୍ରଧାନ । ଏଥିରେ ବୁଦ୍ଧିଦୀପ୍ତତାର ଗୁରୁତ୍ୱ ରହିଛି—ମାତ୍ର ହୃଦୟ ଓ ବୁଦ୍ଧିର

ଆନୁପାତିକ ସଂଯୋଗରେ ହିଁ ଶାଶ୍ୱତ କବିତାର ସୃଷ୍ଟି । ରୋମାଣ୍ଟିକ୍ ଚେତନାର ପ୍ରାଣ-ସ୍ୱରୂପ ଯେଉଁ କଳ୍ପନାଶକ୍ତି, ତା'ର ବିଷୟରେ ଆଧୁନିକ କବି ରମାକାନ୍ତ ରଥଙ୍କ ନିଜସ୍ୱ ଦୃଷ୍ଟିକୋଣ ଏଠାରେ ଉପସ୍ଥାପିତ କରାଯିବା ଅପ୍ରାସଙ୍ଗିକ ହେବନାହିଁ । କବିତା ସଂକଳନ "ସପ୍ତମ ଅଙ୍କାର"ର ପୃଷ୍ଠବନ୍ଧରେ ତାଙ୍କର ଏହି ବକ୍ତବ୍ୟ ଆଧୁନିକ କାବ୍ୟନିର୍ମାଣର କଳ୍ପନାର ଅନିବାର୍ଯ୍ୟ ସହଯୋଗକୁ ଉଦ୍‌ଘୋଷଣା କରିଥାଏ । କଳ୍ପନାଶକ୍ତିର ଗୁରୁତ୍ୱକୁ ସ୍ୱୀକାର ନ କରି ବୁଦ୍ଧିଦୀପ୍ତତାକୁ କାବ୍ୟରଚନାର ମାନଦଣ୍ଡ ରୂପେ ଗ୍ରହଣ କରିଥିବା ଗୋଷ୍ଠୀକୁ ମୁଖ୍ୟତଃ କବି ଏଠାରେ ବିଦ୍ରୂପ କରିଛନ୍ତି—ତେଣୁ ଏଠାରେ ତାଙ୍କ ସ୍ୱର ଶାଣିତ ବିଦ୍ରୋହର ସ୍ୱର "ବୁଦ୍ଧିଦ୍ୱାରା ଉପଲବ୍‌ଧ ଜ୍ଞାନ ହିଁ ଅସଲ ଜ୍ଞାନ ଏବଂ କଳ୍ପନାଶକ୍ତି ବା ଆବେଗ ଦ୍ୱାରା ଯେଉଁ ଜ୍ଞାନ ଉପଲବ୍‌ଧ ହୁଏ, ତାହା ନିମ୍ନଶ୍ରେଣୀର; ତାହା ଜ୍ଞାନ ପଦବାଚ୍ୟ ନୁହେଁ ।" × × ସୌନ୍ଦର୍ଯ୍ୟ ଚିହ୍ନିବାର ଓ ସୌନ୍ଦର୍ଯ୍ୟରେ ଅଭିଭୂତ ହେବାର ଶକ୍ତି; ଜୀବନର ବୈଚିତ୍ର୍ୟ ହୃଦୟଙ୍ଗମ କରିବାର ଶକ୍ତି କଳ୍ପନାର ଏବଂ କଳ୍ପନା ବାସ୍ତବ ଭିତ୍ତିକ ନୁହେଁ ବୋଲି ସ୍ୱୀକୃତ ହେଲି । × × ଲେଖକମାନେ ବି କଳ୍ପନାପ୍ରବଣତାକୁ ଏକ ଦୋଷ ବୋଲି ଭାବିବାକୁ ଆରମ୍ଭ କଲେ । × × ସତ୍ୟ ଓ ବାସ୍ତବତାକୁ ପ୍ରକଟ କରିବା ପାଇଁ ସାହିତ୍ୟରେ କଳ୍ପନା ବ୍ୟବହୃତ ହୁଏ । କଳ୍ପନାପ୍ରସୂତ ଘଟଣାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ କବି ରମାକାନ୍ତ ରଥ କହିଛନ୍ତି ଯେ, ସ୍ଥଳବିଶେଷରେ କଳ୍ପନାନୁ-ରଞ୍ଜିତ ଘଟଣା ଚିରନ୍ତନ ତାତ୍ପର୍ଯ୍ୟ ଦ୍ୱାରା ବିମଣ୍ଡିତ ହୋଇଥାଏ । ଅତଏବ ଆଧୁନିକତା ସହ କଳ୍ପନାଶକ୍ତିର ଅବିଚ୍ଛେଦ୍ୟ ଯୋଗାଯୋଗ ବିଷୟରେ କୌଣସି ପ୍ରଶ୍ନ କରିବାର ଅବକାଶ ନାହିଁ ।

ରୋମାଣ୍ଟିକ୍ ରଚନାରେ ବ୍ୟକ୍ତିବାଦୀ ଅନୁଭବର ଗୁରୁତ୍ୱ ସ୍ୱୀକୃତ ହୋଇଥାଏ । ସ୍ୱଭାବାନୁଭୂତିର ପରିପ୍ରକାଶ ରୋମାଣ୍ଟିକ୍ ଚେତନାର ଏକ ସ୍ପଷ୍ଟ ବିଭବ । ଏ ଅନୁଭବ ପୁଣି ବ୍ୟକ୍ତିଗତ ଓ ସ୍ୱତନ୍ତ୍ର—ପ୍ରତ୍ୟେକ କବିର କଳ୍ପନାଶକ୍ତି ଅପରଠାରୁ ଭିନ୍ନ । ତେଣୁ ବ୍ୟକ୍ତିଗତ ଅନୁଭୂତିର ସ୍ତର ମଧ୍ୟ ଭିନ୍ନ ଭିନ୍ନ ଅଟେ । କଳାକାରର ଏକ ବିଶେଷ ସମୃଦ୍ଧି ଓ ଉଦ୍ଦୀପନାରୁ ରୋମାଣ୍ଟିକ୍ କବିତା ସୃଷ୍ଟି ହୋଇଥାଏ । ରୋମାଣ୍ଟିକ୍ କବି ସହିତ ତା'ର ଚତୁଃପାର୍ଶ୍ୱ—ବିଶ୍ୱର ସମ୍ପର୍କ ଅନୁସନ୍ଧାନ କଲେ ଜଣାଯିବ ଯେ, କବି ସ୍ୱ-ବ୍ୟକ୍ତିଚେତନା ଦ୍ୱାରା ପ୍ରତ୍ୟକ୍ଷଭାବେ ଓ ଗଭୀରଭାବେ ପ୍ରଭାବିତ ହୋଇଥାଏ । ରୋମାଣ୍ଟିକ୍ କବି ବ୍ଲେକ୍‌ଙ୍କୁ ଏ ସମ୍ପର୍କରେ ଦୃଷ୍ଟାନ୍ତ ରୂପେ ନିଆଯାଇପାରେ । ସେ ପ୍ରକୃତିକୁ ଦେଖନ୍ତି, କିନ୍ତୁ ତାଙ୍କ ନିକଟରେ ଦୃଶ୍ୟ ସତ୍ୟ ନୁହେଁ, ଦୃଶ୍ୟାତୀତ ହିଁ ସତ୍ୟ । ବ୍ୟକ୍ତିବାଦ ଯେତେ ପ୍ରବଳ ହେବ, ନିଜ ଅନୁଭବର ସ୍ୱାତନ୍ତ୍ର୍ୟ ଘୋଷଣା କରିବ, ଦୃଶ୍ୟ ସେତେ ସଙ୍କୁଚିତ ଓ ଗୌଣ ହୋଇଯିବ । ସଚରାଚର ଦୃଶ୍ୟ ବା ଅନୁଭୂତି ସେଠାରେ ସତ୍ୟ ହେବନାହିଁ । ସତ୍ୟ ହେବ କବିର ନିଜସ୍ୱ ଅନୁଭୂତି, ନିଜର ଦୃଷ୍ଟିଭଙ୍ଗୀ । ଆଧୁନିକ କବି ରୋମାଣ୍ଟିକ୍ କବିଠାରୁ କୌଣସିମତେ କମ୍ ବ୍ୟକ୍ତିବାଦୀ ନୁହେଁ । ଆଧୁନିକ କବିର କାବ୍ୟନାୟକ 'ମୁଁ'

ସବୁଠାରେ ଗୁରୁତ୍ୱପୂର୍ଣ୍ଣ ଚରିତ୍ର ରୂପେ ପ୍ରକାଶିତ ହୋଇଥାଏ । ଏହି 'ମୁଁ' ପୁନଶ୍ଚ ସାମୂହିକତାର ପ୍ରତିନିଧିତ୍ୱ କରିପାରେ—ସମକାଳ ଓ ପରିବେଶ ମଧ୍ୟରେ ବଞ୍ଚୁଥିବା ଯେ କୌଣସି ବ୍ୟକ୍ତି ମଧ୍ୟ ହୋଇପାରେ ।

ସ୍ୱଦେଶବତ୍ସଳତା ରୋମାଣ୍ଟିକ୍ ଚିତ୍ତବୃତ୍ତିର ଅନ୍ୟ ଏକ ବୈଭବ । ଓଡ଼ିଆ ସାହିତ୍ୟରେ ପ୍ରଥମଥର ପାଇଁ ପୃଥକ୍‌ଭାବେ ସ୍ୱଦେଶକୁ ପୂଜାର୍ଚ୍ଚନା କରିବା ଓ ବନ୍ଦନା କରିବା କବି ରାଧାନାଥଙ୍କ କାବ୍ୟ କବିତାରେ ସମ୍ଭବ ହୋଇଥିଲା । ଇଂରାଜୀ ରୋମାଣ୍ଟିକ ସ୍ୱଦେଶ ପ୍ରେମର ପ୍ରଭାବରେ ଏହା ଘଟିତ ହୋଇଥିଲା । ନିଜେ କବି ରବୀନ୍ଦ୍ରନାଥ କହିଥିଲେ—

"ସ୍ୱାଦେଶିକ ଐକ୍ୟେର ମାହାତ୍ମ୍ୟ
ଆମରା ଇଂରେଜେର କାଛେ ଶିଖେଛି
ଜେନେଛି ଏର ଶକ୍ତି
ଏର ଗୌରବ ।"

ଓଡ଼ିଆ ରୋମାଣ୍ଟିକ କବିତାରେ ଦେଶପ୍ରେମ ପରିବେଶ ଓ ପରିସ୍ଥିତି ଅନୁଯାୟୀ ମୁଖ୍ୟତଃ ଅତୀତ ଶୌର୍ଯ୍ୟଗାଥାର ଉଦ୍‌ବୋଧନ ଓ ଦେଶମାତୃକାର ରୂପ ସନ୍ଧାନରେ ପ୍ରକଟିତ ହୋଇଥିଲା । ବର୍ତ୍ତମାନର ପରିପ୍ରେକ୍ଷୀରେ ଦେଶମାତୃକାର ଦୁର୍ଦ୍ଦଶା, ଆଭ୍ୟନ୍ତରୀଣ ଅସ୍ଥିରତା, କପଟାଗ୍ରହ ଓ ଦାରିଦ୍ର୍ୟର ଦୁର୍ଭୋଗ ହେତୁ କବି-ହୃଦୟର ଆନ୍ତରିକ ପୀଡ଼ା ତା'ର ରଚନାରେ ସହଜରେ ଲକ୍ଷ୍ୟ କରିହେବ ।

ବ୍ୟକ୍ତିବାଦୀ ଅନୁଭବର ପ୍ରାଧାନ୍ୟ ହେତୁ ରୋମାଣ୍ଟିକ କବି ନିକଟରେ ଦୃଶ୍ୟ ଅପେକ୍ଷା ଅଦୃଶ୍ୟ ଅଧିକ ସତ୍ୟ ରୂପେ ପ୍ରତିଭାତ ହୋଇଥାଏ । ଏହି ସତ୍ୟ ଉପରେ ପର୍ଯ୍ୟବସିତ ଏକ ଲୋକୋତ୍ତର ସତ୍ତାର ସ୍ୱୀକୃତି ରହସ୍ୟବାଦର ପ୍ରାଣଧର୍ମ ଓ ରୋମାଣ୍ଟିକ୍ କବି ସ୍ଥଳବିଶେଷରେ ରହସ୍ୟବାଦୀ କବି ରୂପେ ଚର୍ଚ୍ଚିତ ହୋଇଥାଏ । ଇଂରାଜୀ କବି ବ୍ଲେକ୍ ଓ ଓଡ଼ିଆ କବି ବୈକୁଣ୍ଠନାଥ ଏହାର ଉଦାହରଣ ହୋଇପାରନ୍ତି । ମଣିଷର ଆବେଗ ଓ ପ୍ରେମ ସ୍ଥୂଳପ୍ରତି ନ ହୋଇ ସୂକ୍ଷ୍ମପ୍ରତି ପ୍ରଧାବିତ ହେବା ଓ ମଣିଷଠାରୁ ଏକ ବୃହତ୍ତର ସତ୍ତାପ୍ରତି ନିବେଦିତ ହେବା, ଏକ ଅବର୍ଣ୍ଣନୀୟ ସତ୍ତାସହ ଏକୀଭୂତ ହେବାର ଅନୁଭବ ହିଁ ରହସ୍ୟାନୁଭବ । ରହସ୍ୟାନୁଭୂତିରେ ମାନବର 'ମୁଁ'ଟି ଏକ ଊର୍ଦ୍ଧ୍ୱତନ ସତ୍ତାସହ ସମ୍ମିଳିତ ହୋଇଯିବାରେ ସାର୍ଥକତା ଲଭିଥାଏ । ତା'ର କ୍ଷୁଦ୍ର ସୀମିତ ଏକକ ସତ୍ତା ସୀମାତିକ୍ରମ କରି ପରିବ୍ୟାପ୍ତ ହୋଇଯିବାର ସେ ଉପଲବ୍‌ଧି କରେ । ଏକ କାଳାତୀତ ମୁହୂର୍ତ୍ତରେ ଏତାଦୃଶ ଅନୁଭୂତି ବ୍ୟକ୍ତିର ଚେତନାସ୍ତରରେ ପ୍ରତ୍ୟକ୍ଷୀଭୂତ ହୋଇଥାଏ । ଏହିଭଳି ଲୋକୋତ୍ତର ଅନୁଭବର ଉଚ୍ଚାରଣ ଆଧୁନିକ କବିଙ୍କ ରଚନାରେ ପରିଲକ୍ଷିତ ହୋଇଥାଏ । ରୋମାଣ୍ଟିକ୍ ପ୍ରେମଚେତନା କବି ଜୀବନର ଉଲ୍ଲାସ, ଯାତନା ଓ ଆକୁଳତା ଦ୍ୱାରା ଭଙ୍ଗିମନ୍ତ ହୋଇ ପ୍ରକାଶ ଲାଭ କରେ । ଲୌକିକ ପ୍ରେମ-ବିହ୍ୱଳତା ମଧ୍ୟରେ କବି

ଅଲୌକିକ ପ୍ରେମରାଜ୍ୟରେ ଉପନୀତ ହୁଏ । ଏହି ଯୁଗରେ କବି ବନାର୍ଦ୍ଦିଧା ଓ କୁଣ୍ଠାରେ ନିଜର ପ୍ରତ୍ୟକ୍ଷ ପ୍ରେମାନୁଭବକୁ ପ୍ରକାଶ କରିବାରେ ଅଧିକ ସ୍ପୃହାଶୀଳ ଥିବାର ଲକ୍ଷ୍ୟ କରାଯାଏ । ରୋମାଣ୍ଟିକ୍ ଓଡ଼ିଆ ପ୍ରେମକବିତାଗୁଡ଼ିକ ଇନ୍ଦ୍ରିୟାଶ୍ରୟିତା, ରୂପ-ବିହ୍ୱଳତା ଓ ରହସ୍ୟ ସନ୍ଧାନର ଅଭିପ୍ସାରେ ପରିପୃକ୍ତ ହୋଇଛି । ଆଧୁନିକ କବିତାରେ ପ୍ରକଟିତ ପ୍ରେମର ଆଲେଖ୍ୟ ଉପରୋକ୍ତ ଗୁଣଗୁଡ଼ିକରେ ଭୂଷିତ । ତଥାପି ସ୍ଥଳବିଶେଷରେ ଶ୍ଳେଷ ଓ ବିଦ୍ରୂପ ମାଧ୍ୟମରେ ପ୍ରକଟିତ ହେଲେ ହେଁ ମାନବୀୟ ପ୍ରେମାନୁଭବର ପ୍ରତ୍ୟକ୍ଷ ଉଚ୍ଚାରଣରେ ଉଚ୍ଛଳ ଓ ମହିମାମୟ ।

ଏହା ବ୍ୟତୀତ ବିଷାଦଭାବ, ଅତୀତ ଅଭିମୁଖତା, ସମ୍ବୋଧଗୀତ, ଶୋକଗୀତ ଓ ସନେଟ୍‌ର ସଂରଚନା ପୁଣି ଲୋକଗୀତ ଓ ଗଳ୍ପର ଚରିତ୍ର ଓ ଭାଷା ବ୍ୟବହାର... ରୋମାଣ୍ଟିକ୍ ପ୍ରବଣତାର ସୂଚନା ଦେଇଥାଏ । ସାମ୍ପ୍ରତିକ କବିଙ୍କ ରଚନାରେ ଏହିସବୁ ବିଭବର ଅଭାବ ନାହିଁ । ଓଡ଼ିଆ ସାହିତ୍ୟରେ କବି ରାଧାନାଥଙ୍କ ରଚନାରେ ପ୍ରକଟିତ ରୋମାଣ୍ଟିକତା ୧୯୩୦, ୩୫ ବେଳକୁ କ୍ରମଶଃ କ୍ଷୀୟମାଣ ହୋଇ ଆସିଥିଲା । ଏହାର ପ୍ରତିବାଦରେ ସୃଷ୍ଟି ହେଲା ଆଧୁନିକ କବିତା । ଐତିହାସିକ ବିଚାରରେ ଏହା ଗୃହୀତ ହୋଇଛି । ମାତ୍ର ଗୁଣଗତ ବିଚାରରେ ଆଧୁନିକ ଓଡ଼ିଆ କବିତାର ଆତ୍ମାକୁ ବିଶ୍ଳେଷଣ କଲେ ରୋମାଣ୍ଟିକ୍ ପ୍ରାଣପ୍ରବାହ ସହ ଏହାର ନିବିଡ଼ ଯୋଗାଯୋଗ ଆମେ ଉପଲବ୍ଧି କରିପାରିବା । ଏହି ସମ୍ପର୍କରେ ଅଲୋଚକ ସୌରୀନ୍ଦ୍ର ବାରିକଙ୍କ ଉକ୍ତିକୁ ଅନୁଧ୍ୟାନ କରାଯାଉ । ତାଙ୍କ ମତରେ 'ଅନେକ ସମୟରେ ଆମେ ଭୁଲ ଧାରଣାର ବଶବର୍ତ୍ତୀ ହୋଇ ଭାବିଥାଉଁ ଯେ, ଆଧୁନିକ ଚେତନା ରୋମାଣ୍ଟିକ୍ ଚେତନାର ବିରୋଧୀ । କିନ୍ତୁ ଆଧୁନିକତା ରୋମାଣ୍ଟିକ୍ ଚେତନାର ଅଂଶବିଶେଷ । ଏହା ତା'ର ସମ୍ପୂର୍ଣ୍ଣ ପରିପନ୍ଥୀ ନୁହେଁ । ରୋମାଣ୍ଟିକ୍ ଚେତନାର ମୁଖ୍ୟ ଗୁଣ ହେଲା ଆତ୍ମକୈନ୍ଦ୍ରିକତା – ଏହି ଚେତନାର ମୂଳ କେନ୍ଦ୍ରରେ ମଣିଷର ଅହଂଟି ମୁଖ୍ୟଭାବରେ ବିଦ୍ୟମାନ । ଏହି ପରିପ୍ରେକ୍ଷୀରେ ବିଚାର କଲେ ଏହି ଅହଂ ଆଧୁନିକ ଚେତନାର ମୂଳମନ୍ତ୍ର । ଆଜିର ଦୁଃସ୍ଥିତିର ନାଟକୀୟ ରୂପ ଯେତେ ତୋଳି ଧରିବାକୁ ଚେଷ୍ଟା କରିଥିଲେ ହେଁ ଆଧୁନିକ ଶିଳ୍ପୀ ଏହି ଅହଂଟିକୁ ହିଁ ଖୋଜି ବୁଲୁଛି । ଆଜିର କବିତା ଏକାକୀ ଅହଂର ବହୁରୂପୀ ଆତ୍ମିକ ପ୍ରକାଶ । କବି ନିଜ ମନର ରହସ୍ୟମୟ ମାନଚିତ୍ର ଆଙ୍କିବାରେ ପ୍ରୟାସୀ । ତେଣୁ ଆଧୁନିକତା ଓ ରୋମାଣ୍ଟିକତା ମଧ୍ୟରେ ଗୁଣଗତ ପାର୍ଥକ୍ୟ ନାହିଁ । (ଅହଂର ଆକାର) ଆଧୁନିକ କବିର ଏହି ଅହଂ ବା "ମୁଁ"ଟି ସର୍ବାପେକ୍ଷା ଗୁରୁତ୍ୱପୂର୍ଣ୍ଣ ବୋଲି ପୂର୍ବରୁ କୁହାଯାଇଛି । ଓଡ଼ିଆ ସାହିତ୍ୟରେ ରୋମାଣ୍ଟିକ୍ ଚେତନାର କ୍ରମକ୍ଷୀୟମାଣ ଅବସ୍ଥାରେ ଆଧୁନିକ କବିତାର ସୃଷ୍ଟି । ଏହି କାଳରେ କବି ସଚ୍ଚି ରାଉତରାୟ, ଗୁରୁପ୍ରସାଦ, ରମାକାନ୍ତ, ସୀତାକାନ୍ତ ଓ ପରବର୍ତ୍ତୀ ଅନେକ କବି ଲେଖନୀ ଚାଳନା କରୁଛନ୍ତି । ଜୀବନର ବାସ୍ତବତାର ପୃଷ୍ଠଭୂମିରେ କଳ୍ପନାର ପ୍ରସାର, ଅନୁଭବର ଶାଶ୍ୱତ ଜଗତ, ପ୍ରାତ୍ୟହିକ ଜୀବନର ଅଭିଜ୍ଞତାରୁ ସଞ୍ଜାତ କବିର

ଆତ୍ମିକ ଅଣୁପ୍ରସାର ଉଚ୍ଚାରଣ, ପ୍ରକୃତିର ଆଭ୍ୟନ୍ତରୀଣ ସତ୍ତାଠାରେ ବିଶ୍ୱାସ ପ୍ରତିଷ୍ଠା, ଅବିନଶ୍ୱର ପ୍ରକୃତି ଆତ୍ମାସହ ମାନବାତ୍ମାର ଯୋଗାଯୋଗ ଆଧୁନିକ କବିତାରେ ପର୍ଯ୍ୟାପ୍ତ ଦେଖିବାକୁ ମିଳେ । ଆଧୁନିକ କବି ଆବେଗର ଉଦ୍ଦାମ ଏକମୁଖୀ ପ୍ରବାହକୁ ସ୍ୱୀକାର କରେନାହିଁ । ବୁଦ୍ଧିଦୀପ୍ତ ଚିନ୍ତା ଓ ଆବେଗର ସଂଯମ ତା'ଠାରେ ଦେଖିବାକୁ ମିଳିଥାଏ । ଆଧୁନିକ କବି ଆବେଗ ଓ ବୁଦ୍ଧିର ଆନୁପାତିକ ପ୍ରୟୋଗରେ କଳାଗତ ଶୃଙ୍ଖଳା ପ୍ରତିଷ୍ଠା କରିବାରେ ଯତ୍ନଶୀଳ । ଜୀବନ ଓ ଜଗତର ରହସ୍ୟକୁ ଅବଗତ ହେବାକୁ କବିର ଥାଏ ପ୍ରଚଣ୍ଡ ଅନ୍ୱେଷା ଓ ଆକୁଳତା ।

ଆଧୁନିକ କବିଙ୍କ ରଚନା ମଧ୍ୟରୁ କେତୋଟି ବିଶିଷ୍ଟ ରୋମାଣ୍ଟିକ୍ ବିଷୟର ବିଶ୍ଳେଷଣ କରିବା ବର୍ତ୍ତମାନ ପ୍ରାସଙ୍ଗିକ ହେବ ବୋଲି ମୁଁ ଭାବୁଛି । କଳ୍ପନା ଶକ୍ତିର ବିମୁକ୍ତ ସଞ୍ଚରଣ ଓ ଏକାନ୍ତ ବ୍ୟକ୍ତିବାଦୀ ସ୍ୱର ଆଧୁନିକ କବିତାରେ ଉଦାତ୍ତ ହୋଇ-ଥିବାର ଆମେ ଶୁଣିପାରିବା । ରମାକାନ୍ତଙ୍କ କଳ୍ପନାନୁରଞ୍ଜିତ ଦୃଷ୍ଟିରେ ଦେବୀ ଦୁର୍ଗାଙ୍କର ଏକ ଅଭିନବ ରୂପ ଏଠାରେ ଉନ୍ମୋଚିତ ହୋଇଛି । ଏହି ରୂପ ଆମ ଚେତନାରେ ତିଷ୍ଠି ରହିଥିବା ଦେବୀଙ୍କର ଗତାନୁଗତିକ ମହିଷମର୍ଦ୍ଦିନୀ ରୂପ ନୁହେଁ । ଏହି ରୂପ କବିଙ୍କ ଅଭିଜ୍ଞତାରୁ ଅତିକ୍ରମ କରିଥିବା ବ୍ୟକ୍ତିବାଦୀ ଅନୁଭବର ଚମତ୍କାର ପ୍ରସ୍ଫୁଟନ—

"ଅସଂଖ୍ୟ ପ୍ରାର୍ଥନା ଦ୍ୱାରା ନିର୍ମିତ ପଦ୍ମରେ
ପାଦ ଏବଂ ମହାଶୂନ୍ୟେ ଶିର
ମା' ମଲା ପିଲାଙ୍କର ଆର୍ତ୍ତନାଦ ଆଡ଼େ
ସାନ୍ତ୍ୱନା ଦେବାର ଭଙ୍ଗୀ ଏକ ପାପୁଲିର
ପାହାଡ଼ ଉପର-କଳା ଜଙ୍ଗଲ ଅନ୍ଧାରେ
ଫିଟିଥିବା ବେଣୀ ମିଶିଯାଏ ।"

(ଦୁର୍ଗା—ସଚନ୍ଦ୍ର ଅନ୍ଧାର)

ପୁନଶ୍ଚ ଦେଶକାଳୋତ୍ତୀର୍ଣ୍ଣ ଏକ ବିପୁଳ ଶୂନ୍ୟତାର ଅନୁଭବ କବି ସୀତାକାନ୍ତଙ୍କ କଳ୍ପନା ଦ୍ୱାରା ପ୍ରମୂର୍ତ୍ତି ହୋଇଛି ।

"ସମସ୍ତ ନିର୍ଜନ ହୁଏ କ୍ରମାନ୍ୱୟେ ଭିତର ବାହାର,
ମନେହୁଏ ଦିନ ନାହିଁ, ମାସ ନାହିଁ, ବର୍ଷ ନାହିଁ
ଋତୁ ଓ ସମୟ ନାହିଁ, ବସ୍ତୁ ଓ ଘଟଣା ନାହିଁ
ରୂପ ନାହିଁ, ରଙ୍ଗ ନାହିଁ, ସ୍ୱର ନାହିଁ, କିଛି ନାହିଁ
ହଠାତ୍ ଏ କି ଶୂନ୍ୟତା
ନାହିଁ ଯାର ରୂପ ଓ ଆକାର

ମୋର ଖାଲି ମନେପଡ଼େ କେଉଁ ଅବ୍ୟକ୍ତ ବେଦନା ।
ବସନ୍ତ ଗତ ଶେଷର ଦୂର ଗୀତ କେଉଁ କୋଇଲିର ।"
(ସୂର୍ଯ୍ୟ : ମୋ କୋଠରୀ — ଚନ୍ଦ୍ରମଣୀ)

ଦୃଢ଼ ବ୍ୟକ୍ତିବାଦର ଉପସ୍ଥାପନ, ଅହଂର ଉଦ୍‌ଘୋଷଣା ଆଧୁନିକ କବିତାରେ ବହୁଳ ପ୍ରକାଶିତ । ଅଧିକାଂଶ କବିତାର ଚରିତ୍ର "ମୁଁ" । ଏହି "ମୁଁ"ର ମାଧ୍ୟମରେ ଜୀବନ ଓ ଜଗତର ସକଳ ଆବେଗ, ଅନୁଭୂତି, ସ୍ୱପ୍ନ ଓ ସମ୍ଭାବନାର ପରିପ୍ରକାଶ । ରମାକାନ୍ତ କହୁଛନ୍ତି—

"ମୁଁ କେବଳ ସ୍ନେହଟିଏ,
ବ୍ୟାପିଅଛୁ ଦିଗ୍‌ବଳୟ ତେଇଁ
ମୁଁ ବ୍ରହ୍ମାଣ୍ଡ ଭିତରେ କି ମୋ ଭିତରେ ବ୍ରହ୍ମାଣ୍ଡ
ସେ କଥା
ମୁଁ ଜମାରୁ ବୁଝିପାରୁନାହିଁ ।"

ଅନୁରୂପ ଉଚ୍ଚାରଣ ସୀତାକାନ୍ତଙ୍କ କବିତାରେ ଦେଖନ୍ତୁ—

× × ମୁଁ ଅଛୁ ।
ଉଦ୍ଦେଶ୍ୟହୀନ, ଦଦରା ଭଙ୍ଗା ନାଆ ।
ସବୁ ଶବ୍ଦର ।
ସବୁ ତରଙ୍ଗର ହେବୁ ।
ମୁଁ ନାହିଁ ।
ସଙ୍ଗୀତ ନାହିଁ ।
ଶବ୍ଦର ମନ୍ତ୍ରୋଚ୍ଚାରଣ ନାହିଁ,
କେତେଦିନ ଏଇ ପୁରୁଣା
ବାଲିରେ ଡୋଳେଇ ଡୋଳେଇ ମୁଁ ମନ୍ତ୍ର ଶୁଣୁଥିବ ?"

କବିର ଅହଙ୍କାର କିଛି କମ୍ ନୁହେଁ । ମଣିଷକୁ ସେ ମଣିଷର ଅଦୃଷ୍ଟ ଭାବେ ଠିଆ କରେ । କାଳର ବୁଦ୍ ବୁଦ୍ ପରି ସେ କ୍ଷଣିକ ସତ, ମାତ୍ର ସମାହାରରେ—

"ମୁଁ ଅଟେ ମୋର ଅଦୃଷ୍ଟ
ମୋର ସ୍ଥିତ ବିନ୍ଦୁ ଏବଂ ତା'ର ପ୍ରକାଶ ଏକ ଲତା,
ଗୋଟିଏ ମୁହୂର୍ତ୍ତି × × ×
ମୁଁ ପୁଣି ସମାହାର ଦ୍ୱନ୍ଦ୍ୱ
ନିଜ ଛଡ଼ା ଅନ୍ୟକୁ ସଙ୍ଘୋଳେ
ଧିରୁଦିଏ ବିରୋଧାଭାସରେ ।

ପରିଚୟ ପତ୍ର—କବିତା ୧୯୮୭, ସଚ୍ଚିଦାନନ୍ଦ ରାଉତରାୟ

"ମୁଁ ମୋର ଏଇ ଚକ୍ଷୁ ନୁହେଁ
ମୁଁ ମୋର ତ୍ୱିଷ୍ଟିଭୂତ ଓ ପୁରୁଷାନ୍ତର
ମୁଁ ଯାହା ବଣ୍ଟୁଳ ବୋଧେ
ମୋର ନୁହେଁ ଉଦ୍ଧରଣ
ମୁଁ ସ୍ୱୟଂ ବକ୍ତା ଓ ଶ୍ରୋତା ନୈମିଷାରଣ୍ୟରେ ।"

(ଢିଙ୍କୃଢ ଚକ୍ଷୁ—ରାଜେନ୍ଦ୍ର କିଶୋର ପଣ୍ଡା)

ଜୀବନର ଆତ୍ମସତ୍ତା ଏଠାରେ "ମୁଁ"କୁ ପ୍ରତିଷ୍ଠା ଦେଇଛି—ତା'ର ବକ୍ତବ୍ୟ, ତା'ର ପୌରୁଷ, ସବୁକିଛି ସ୍ୱତନ୍ତ୍ର । ସେ ନିଜେ ବକ୍ତା ଓ ଶ୍ରୋତା, ତତ୍ତ୍ୱଜ୍ଞ ଓ ତତ୍ତ୍ୱଜିଜ୍ଞାସୁ ।

କବି ମଣିଷକୁ ଏଠାରେ ଦୁଃସ୍ୱପ୍ନ ରୂପେ ଓ ପ୍ରଶ୍ନ ରୂପେ ଠିଆ କରାଇବାକୁ ଆଗେଇ ଆସିଛନ୍ତି—

"ମୁଁ ସେଇ ଦୁଃସ୍ୱପ୍ନ ଯାହାକୁ
ଚେଷ୍ଟାକରି ମଧ୍ୟ କେହି ଭୁଲି ପାରିବନି
ମୁଁ ସେଇ ପ୍ରଶ୍ନ
ଯେଉଁଠି ଜୀବନ ମଧ୍ୟ କେହି ଉତ୍ତର ଦେବେନି ।"

(ଚଣ୍ଡାଳ—ଆଶୁତୋଷ ପରିଡ଼ା)

ରୋମାଣ୍ଟିକ୍ ସୌନ୍ଦର୍ଯ୍ୟ-ଦୃଷ୍ଟି ପ୍ରକୃତି ଓ ମାନବର ସୂକ୍ଷ୍ମତମ ଅନୁସନ୍ଧାନ କରିବାରେ ବ୍ୟାକୁଳ—ସନ୍ଧ୍ୟାକାଳୀନ ପ୍ରକୃତିର ସୂକ୍ଷ୍ମ ତଥା ମନୋରମ ଚିତ୍ରଟିଏ ଦେଖନ୍ତୁ—

"ସୂର୍ଯ୍ୟ ବୁଡ଼ି ବୁଡ଼ି ଆସେ, ଖରା କରେ ଗଛଙ୍କୁ ବିଭକ୍ତ
ଭାଗେ ଆଲୋକିତ ଏବଂ ଅନ୍ୟଭାଗ ଛାୟା ଆଚ୍ଛାଦିତ ।"

(ବେଲବୁଡ଼—ସଚି ଅନ୍ଧାର)

କିମ୍ବା ଏକ କଳ୍ପିତ ପୁରୁଷର ରୂପଚିତ୍ର ରଚନାରେ କବିଙ୍କର ମୁଗ୍ଧବିହ୍ୱଳ ଦୃଷ୍ଟି—

"ଆହା ସେ କି ଋଷି ମନଭୁଲା ରୂପ × × ×
ଆଷାଢ଼ର ନୂଆ ମେଘ ପରି ରଙ୍ଗ, ସେ ଦେବତା କୋଉ ମନ୍ଦିରର
ସୋରିଷ ଫୁଲ ରଙ୍ଗର ନୂଆ ଧୋତି, ଓଠରେ ବଇଁଶୀ
ମୁକୁଟ ମୟୂର ପୁଚ୍ଛ କି ଶୋଭନ, ଅପରୂପ ଠାଣି
ମକର କୁଣ୍ଡଳ ଝୁଲେ ପୁଞ୍ଜୀଭୂତ ତାରା ଜିଣି
ଝଲି ଉଠେ କଉସ୍ତୁଭ ମଣି ।"

(ପରକାୟା—ଚନ୍ଦ୍ରନଦୀ)

ଜିନ୍ଦ୍ରସିଂହର ଯାଦୁକରୀରେ ମୁଗ୍ଧ କବି ସୌଭାଗ୍ୟଙ୍କ ସୂକ୍ଷ୍ମ ନିରୀକ୍ଷଣ ଭିତରେ ଧରା ଦେଇଛି ଚନ୍ଦ୍ରଚର୍ଚ୍ଚିତ ସମୁଦ୍ରର ରୂପ—

"ସବୁଠି ଚନ୍ଦ୍ରାଲୋକ ବାଲିରେ, ବାଲିକଙ୍କଡ଼ା ପିଠିରେ
ଦୁଇ ଢେଉ ଉପରେ, ଦୁଇ ଢେଉ ମଝିରେ ।"

ନାରୀ ପୁଣି ପ୍ରଣୟିନୀ—ତା'ର ସୂକ୍ଷ୍ମ ସୌନ୍ଦର୍ଯ୍ୟ ରାଜେନ୍ଦ୍ରଙ୍କ କଳ୍ପନାବିହ୍ୱଳର ଦୃଷ୍ଟି ସମକ୍ଷରେ ନିମ୍ନୋକ୍ତ ରୂପେ ପ୍ରତିଭାତ—

"କେଶରାଶି ମୁକୁଳା ହୋଇଯାଏ
ପବନରେ ଦୋଳେ
ଅଦ୍ଭୁତ ଆଲୋକ, ଅନ୍ଧାର-ଖଚିତ ତାରା ଫୁଟେ
ଉକୁଟେ ତୁମର ପ୍ରତିଟି ଲୋମକୂପରୁ ।"

ଗୁରୁବାବୁ ଗୋଲୋଇମା ପ୍ରକୃତିକୁ ଉଖାରି ଉଖାରି ଦେଖିଛନ୍ତି—

"କେତେ କଥା ଶିଜୁ, କେତେ ଧାନଗଛ ପଡର ଉପରେ
ଥକାହୋଇ ଏହି ଖରା ଫିକାରଙ୍ଗ ଏହି ଉପହାରେ
ଝିଣ୍ଟିକାର ଫିକାଦେହ ଘାସ ତଳେ ମିଶାଇ ମିଶାଇ
ନଈଛିଆ ବିଲ ଘାରି ଏହି ଖରା ପଡ଼ୁଥିବ ଶୋଇ ।"

କବି ବାହ୍ୟଜଗତକୁ ଦେଖେ, ଅଭ୍ୟନ୍ତରକୁ ନିରେଖେ—କୋଉଠି ଖରାର ତାର ଆଗରେ ଧୂଳିକଣା ନାଚୁଥାଏ, ସେଯାଏ—ସୂକ୍ଷ୍ମାତିସୂକ୍ଷ୍ମ ରୂପବିଭବର ସେ ଦ୍ରଷ୍ଟା, ପୁଣି ନବଜନ୍ମଦାତା ହରପ୍ରସାଦ ଦାସ କହନ୍ତି—

"ମୋତେ ଖୋଜୁଚ କଏ
ଛାତରୁ ଖସି ତଳେ ପଡ଼ିଥିବା
ଖରାର ଫଳକରେ
ଅକ୍ଷୟ ଧୂଳିକଣାର ନାଚରେ ।"

(ଅମଣିଷ ମନ୍ତ୍ରପାଠ)

ପ୍ରତୀକବାଦୀ ଚିତ୍ରକଳ୍ପର ବହୁଳ ପ୍ରୟୋଗ ରୋମାଣ୍ଟିକ୍ କବିତାର ଅନ୍ୟ ଏକ ଗୁଣ । ଆଧୁନିକ କବିତାରେ ମଧ୍ୟ ଏ ଶ୍ରେଣୀର ଚିତ୍ରକଳ୍ପ ପ୍ରଚୁର ପରିଲକ୍ଷିତ । ଏପରିକି ଖାସ୍ ରୋମାଣ୍ଟିକ୍ କବିମାନଙ୍କ ତୁଳନାରେ ଏହି ରୋମାଣ୍ଟିକ୍ ବାସ୍ତବବାଦୀ ଆଧୁନିକ କବିମାନେ ଅଧିକ ମାତ୍ରାରେ ପ୍ରତୀକଧର୍ମୀ ଚିତ୍ରକଳ୍ପର ବ୍ୟବହାର କରିଛନ୍ତି । ଏଠାରେ ମାତ୍ର ଗୋଟିଏ ଦୁଇଟି ଉଦାହରଣ ଦିଆଯାଇପାରେ—

"ଓଦାମେଘ ଓହ୍ଲାଉଛି
ବହୁବର୍ଷ ପରେ
ଶୁଖିଲା ଭୂଇଁରେ, ପୁଣି ମୃତ୍ୟୁ ପାଖାପାଖି ମୋର
ଜୀବନର ଶେଷ ନିଶ୍ୱାସରେ ।"

(ସମ୍ବନ୍ଧ—ସଚିଦ ଅନ୍ଧାର)

ଏଠାରେ ଓଦାମେଘ ସ୍ନେହ; ସରସ; ଆତ୍ମୀୟତାର ପ୍ରତୀକ, ଶୁଖିଲା ଭୂଇଁ ସ୍ନେହମମତାହୀନ ମିଥ୍ୟାଚାରମୟ ଜୀବନ; —ପୁଣି ମୁମୂର୍ଷୁ ଜୀବନ, ଯାହା ଅଧିକ ଶୁଷ୍କ ଓ ଜୀର୍ଣ୍ଣ । ସୀତାକାନ୍ତଙ୍କ 'ଚଢ଼େଇ' କବିତାଟି ଏକ ସାର୍ଥକ ପ୍ରତୀକଧର୍ମୀ ଚିତ୍ରକଳ୍ପ—ଜୀବାତ୍ମାର ଆଖିରେ ପରମାତ୍ମା ବା ଉର୍ଦ୍ଧ୍ୱମୁଖୀ ଅଭୀପ୍‌ସାର ପ୍ରତୀକ ଏହି ଚଢ଼େଇର କ୍ଷଣଦେଖା ରୂପ ଓ ସେ ରୂପସହ କବିଙ୍କ ଜୀବନଦର୍ଶନର ନିବିଡ଼ ଯୋଗାଯୋଗ ଏହି କବିତାଟିର ଉପଜୀବ୍ୟ ।

ବିଷାଦବାଦ ରୋମାଣ୍ଟିକ୍ କବିତାର ଏକ ବିଶେଷ ଗୁଣ । ଆଧୁନିକ କବିତାରେ ବିଷାଦର ସ୍ୱର ମଧ ଉଦାତ୍ତ ହୋଇଛି । ଆକାଂକ୍ଷିତ ପରିବେଶ ଓ ଘଟଣାରୁ ବଞ୍ଚିତ ହୋଇ କବି ବିଷାଦର ଗମ୍ଭୀର ସ୍ୱର ଶୁଣାଇଥାଏ । ଏହି ବିଷାଦ ଆତ୍ମିକ ଅନ୍ୱେଷାର ଅସଫଳ ସମ୍ଭାବନାରୁ ସଞ୍ଜାତ ହୋଇଥାଏ । ଆଧୁନିକ କବି ଗୁରୁପ୍ରସାଦ ଓ ରମାକାନ୍ତଙ୍କୁ 'ବିଷାଦବାଦୀ' ବୋଲି କିଏ ନ ଜାଣେ ? ତେବେ ଆଧୁନିକ କବିର ଚିତ୍ତବୃତ୍ତି ସର୍ବଦା ବାସ୍ତବାଭିମୁଖୀ ଓ ବାସ୍ତବଭୂମି ଉପରେ ଦଣ୍ଡାୟମାନ । ବାସ୍ତବ ଜୀବନର ବିକଳ ସ୍ଥିତି, ଆନ୍ତରିକ ଅଭୀପ୍‌ସାର ଅପୂର୍ଣ୍ଣତା, ଛଳନାମୟ ମାନବିକ ସମ୍ପର୍କ ଆଦିର ଦୁର୍ଭୋଗ ଦ୍ୱାରା କବିର ହୃଦୟ ବିଷାଦ-ଜର୍ଜର ହୋଇଯାଏ । ବିଷାଦଭାବ ମଣିଷ ମନର ଏକ ଚିରସ୍ଥାୟୀ ଅବସ୍ଥା ନ ହେଲେ ମଧ କବି ଅନ୍ତରକୁ ଏହା ଗମ୍ଭୀରଭାବେ ଆନ୍ଦୋଳିତ କରିବାକୁ ସମର୍ଥ । ଏ ଯୁଗର ଅହରହ ସଂଘର୍ଷରେ ଜୀବନ, ପ୍ରେମ ଓ ବିଶ୍ୱାସର ଅବମୂଲ୍ୟାୟନ, ଆଶା ଓ ଅଭିଳାଷର ନିଷ୍ଠୁର ମୃତ୍ୟୁ, ନିଦାରୁଣ ସ୍ୱପ୍ନଭଙ୍ଗ—ଏ ସବୁକିଛିର ସହଯୋଗରେ ଆଧୁନିକ କବିର ବିଷାଦବାଦୀ କାବ୍ୟମାନସ ସୁସଙ୍ଗଠିତ ସାମ୍ପ୍ରତିକ କାଳର ମଣିଷ ପରି ଆଉ କେବେ ବୋଧହୁଏ ମଣିଷ ଏତେ ହତାଶା, ନିଃସଙ୍ଗତା ଓ ବିଭଙ୍ଗତାର ସାମ୍ନାସାମ୍ନି ହୋଇ ନ ଥିଲା । ତେଣୁ ଆଧୁନିକ କାଳର ସଚେତନ ମଣିଷ ବିଷାଦଗ୍ରସ୍ତ ହୋଇପଡ଼ିବା ଆଦୌ ଆଶ୍ଚର୍ଯ୍ୟଜନକ ନୁହେଁ । ବିଷାଦବାଦୀ କବି ରମାକାନ୍ତ ନିଜକୁ ଆବିଷ୍କାର କରନ୍ତି ଏକ ଭୟାନକ ଜ୍ୱଳନ୍ତ ବୃତ୍ତର କେନ୍ଦ୍ରବିନ୍ଦୁରେ—

"ହଠାତ୍ ମୁଁ ପ୍ରକୃତସ୍ଥ ହୋଇ ପୁନର୍ବାର,
ତମ ବାଳ ଆଉଁସିଲା ବେଳେ ଲାଗିଲା ଯେ
ସେ ଏକ ଜଳନ୍ତା ବନ, ନିର୍ବାସିତ, ଚଳନ୍ତଶକ୍ତିହୀନ
ବୃଭ ମୁଁ ନିଆଁର

ନିର୍ମସଙ୍କୁଚିତ ବୃତ୍ତ ଭିତରେ ଗୋଟିଏ
ଅର୍ପିତ ମଣିଷ ମୋର ଭବିଷ୍ୟତ ଗଢାଏ ଅନ୍ଧାର ।”
(କର୍ଫ୍ୟୁ—ସଚ୍ଚିଦାନନ୍ଦ ଅନ୍ଧାର)

ବ୍ୟକ୍ତିବାଦୀ ବିଷାଦର ଏହି ଭଙ୍ଗୀବଦ୍ଧ ରୂପର ତୁଳନା ନାହିଁ । ଆଧୁନିକ କବିର ବିଷାଦ-ନିର୍ଜନର ସ୍ୱର ଭିତରୁ ସ୍ନେହ ମଧ୍ୟ ଗୋଟିଏ ସ୍ୱର—

“କଟକ ସହର
ଯେଉଁଠି ଫୁଟେ ରାସ୍ତାସାରା ମୋ ଲୁହର ଧବଳ ଝଗର
ଧବଳ ଝଗର ଦେଖି ମନେପଡ଼େ
କେତେ ସ୍ମୃତି, କେତେ ଜନ୍ମ, କେତେ ମୃତ୍ୟୁ,
ସ୍ନେହ ଆଉ ଶୋକ ଆଉ ମରଣ ଅନ୍ଧାର ।”

ମଣିଷ ଜୀବନର ଅମୋଘ ଜରା ମୃତ୍ୟୁ, ନିର୍ବାଶିତ ପ୍ରବଞ୍ଚନା, ଦୁର୍ଭାଗ୍ୟର ପ୍ରଭାବରେ କବି ହୃଦୟର ନିରାଶା, ଖେଦ ଓ ବିଷାଦ ଏ ଯୁଗର କିଛି କମ୍ ନୁହେଁ । ଅସଫଳତା ତା'ର ଏକମାତ୍ର କୃତିତ୍ୱ ଓ ଦୀର୍ଘ ଆମୃତାର ଗ୍ରହଗ୍ରହାନ୍ତର ବ୍ୟାପ୍ତ ହେବ—

ପବନର ପାଦଚିହ୍ନକୁ ମାପିଲେ
ଯାହା ମିଳିବ କେବଳ ହତାଶା
ଅସଫଳତାର ସମର୍ଥନରେ
କେବଳ ଗୋଟିଏ ଦୀର୍ଘଶ୍ୱାସ
ସର୍ବବ୍ୟାପ୍ତ ହେବ ଗ୍ରହରୁ ଗ୍ରହକୁ ।
(ଜଗନ୍ନାଥ ପ୍ରସାଦ ଦାସ—ଯେ ଯାହାର ନିର୍ଜନତା ପୃ-୪୦)

କବି ମଣିଷ ସଚେତନ ସତ, ତା'ର ଅସହାୟତା କିନ୍ତୁ ପ୍ରଚୁର । ଜୀବନକୁ ଜୀବନ ଦେଇ ପାରେନା ସେ, ଏତାଦୃଶ ଅସହାୟତାର ଚିତ୍ର ଆଙ୍କିଲାବେଳେ ତା'ର ମନ ତିକ୍ତତାରେ ଭରିଯାଏ—

“ଆମର ଅସହାୟତା ଏମିତି ଯେ
ଜୀବନକୁ ଜୀବନ ଦେବା ହୁଏନା ନା ମୃତ୍ୟୁକୁ ମୃତ୍ୟୁ
ଅହଂକାରକୁ ଅହଂକାର ସାଙ୍ଗରେ ଯୋଡ଼ି ହୁଏନା ।”
(ବଜ୍ରଯାନ—ସୌଭାଗ୍ୟ କୁମାର ମିଶ୍ର)

ଇତିହାସରୁ ବାଛି ବାଛି ପତନର କାଳଟିକୁ ଉଠାଇ ଆଣି ଗୁରୁପ୍ରସାଦ ବିଶନ ମହାନ୍ତି କବିତାରେ ଦୁର୍ଦ୍ଦିନରେ ଆଙ୍କି ବସନ୍ତି—ଈଶ୍ୱର ମଧ୍ୟ ମଣିଷକୁ ଅସହାୟତାଠାରୁ ଉଦ୍ଧାର କରିପାରିବେ ନାହିଁ—

"ମହାପ୍ରଭୁ
ମୋର ଭଙ୍ଗା ମୃଦଙ୍ଗର ନଷ୍ଟଗର୍ଭ ନଷ୍ଟ ତାଳ ଲୟ
ଆପଣଙ୍କ ଅର୍ଦ୍ଧଦଗ୍ଧ ନଷ୍ଟଦାରୁ ନଷ୍ଟଦେହ ପର
ଗଙ୍ଗାର ନିର୍ଜନ ଘାଟ ହାହାକାର ଶୂନ୍ୟତା ଭିତରେ
ପରିତ୍ୟକ୍ତ ଅସହାୟ..."

ଆଧୁନିକ ମଣିଷର ଅନ୍ତର୍ଦାହକୁ, ଅଣନିଃଶ୍ୱାସୀ ଦୁଃଖକୁ ଓ ଅକ୍ଷମତାର ବୋଝକୁ ଲେଖି ବସନ୍ତି—

"କୁହୁଳୁଥାଉ କଞ୍ଚାକାଠ
ଯେମିତି ଚୁଲିରେ ଧୀରେ ଧୀରେ
ଲୁହ ଆଉ ଯେମିତି ଆଖିରେ
ଯେମିତି କିଛି କହିପାରିବାର ଅକ୍ଷମତା
ଆମର ବର୍ଷ ବର୍ଷର ଆଲିଙ୍ଗନରେ ।"

(ମିଛ—ମନ୍ତ୍ରପାଠ)

"ତା ଦେହରୁ କିଏ ନେଲା କାଢ଼ି ସବୁ ଅର୍ଜୁନକୁ
କରି ତାକୁ ଫମ୍ପା ଖୋଲଟିଏ
ଏକ ଚଲନ୍ତିକା ଶବ
ନାଗର ଚିତ୍କାର ଶୁଣି ପାରୁନି ସେ ଠିକ୍,
ତା ପ୍ରିୟ ଗାଣ୍ଡୀବ ଆଜି ଏଡ଼କ ଅଥର୍ବ ।"

(କବିତା—ଅର୍ଜୁନ)

ଉପରୋକ୍ତ ପଂକ୍ତିଗୁଡ଼ିକରେ ସମସାମୟିକ ପୌରୁଷର ଏକ ବିଫଳ ଚିତ୍ର ଆଙ୍କନ୍ତି ସୌମ୍ୟେନ୍ଦ୍ର ବାରିକ ।

ପ୍ରତାରଣା, ପ୍ରୟୋଜନ-ଭିତ୍ତିକ ବନ୍ଧୁତା, ମୁଖାର ଛଳନା ଆଜିର କବିକୁ ଖୁବ୍ ଏକୁଟିଆ କରିଦେଇଛି । ତା ନିଃସଙ୍ଗ ଆତ୍ମାର ସମୀକ୍ଷା ସରୋଜ ମହାନ୍ତିଙ୍କ ଲେଖନୀରେ—

"କିଏ ? ପ୍ରଶ୍ନବାଚୀ ତ ନିଜର
କିଏ ଅନ୍ତରଙ୍ଗ
କିଏ ପର ଆପଣାର
କେହି ନୁହଁ
କେହି ତ ଦୁଃଖର ନୁହଁ
କେହି ବି ସୁଖର
ସବୁ ତ ଆରୋପିତ ଧାରଣାର ମୁଖାପିନ୍ଧା ମୁହଁ ।"

ଅନୁରୂପ ଅର୍ଥହୀନ ଜୀବନର ଏକକତ୍ୱ ଫକୀ ମହାନ୍ତିଙ୍କ ସ୍ୱରରେ ପ୍ରମୂର୍ତ୍ତି ।

"ଦୁନିଆରେ ଅଲୋଡ଼ା ପ୍ରଶ୍ନ
ସ୍ନେହହୀନ ପ୍ରେମହୀନ ବ୍ୟର୍ଥ ଜୀବନ;
ବାଡ଼ ସନ୍ତର୍ପଣେ ଆଗକୁ ପଛକୁ
ଘୂରିବି ଏକା ଏକା ଚାଲିବାର ଦିନ ।"

ଆଧୁନିକ କବି ବିଷାଦର ମୁହୂର୍ତ୍ତିକୁ ଚିତ୍ରଣ କରିବା ନିମିତ୍ତ ଉନ୍ମୁଖ । ଦୁଃଖ, ବିଷାଦ, ବିମର୍ଷତା ତା'ର ବିଷୟବାର, ଜୀବନ ସାଧନାର ଅଂଶ ବିଶେଷ । ତା'ର ବିଚାରରେ ଜୀବନର ଶେଷ କଥା ପ୍ରତାରଣା ଓ ଅଶ୍ରୁ । ସ୍ନେହ ଥିଲେ ବି ବିମର୍ଷତା ଦ୍ୱାରା ଆକ୍ରାନ୍ତ ଓ ସଙ୍ଗୀତ ଥିଲେ ବି କ୍ରନ୍ଦନୋଚ୍ଛଳ—

"ଫାଶିଖୁଣ୍ଟରେ ଚଢ଼ିବା ଆଗରୁ
ଶେଷଥର ପାଇଁ ମୁଁ କହିଯାଏ
ପୃଥିବୀର ସବୁ କାବ୍ୟ, ମହାକାବ୍ୟ
ଶୋଚନୀୟ । ସବୁ ସ୍ନେହ ବିମର୍ଷ କୁହୁଡ଼ି ।
ସଙ୍ଗୀତ ବି ସବୁ କାନ୍ଦକାନ୍ଦ ।"

ବିଲୁପ୍ତ ସାମ୍ରାଜ୍ୟ—ଦିଲୀପ ଦାସ

ଆଧୁନିକ କବି ଲୋକଗୀତର ଭାବ ଉପାଦାନ ନେଇ କବିତା ରଚନା କରିବାରେ ଆଗ୍ରହ ପ୍ରକାଶ କରିଛି । କେହି କେହି କବି ଲୋକଗଳ୍ପର ଚରିତ୍ରକୁ ପ୍ରତୀକ ଭାବେ ଗ୍ରହଣ କରି କବିତାର ନାମକରଣ ମଧ୍ୟ କରିଛନ୍ତି ଓ ଅନ୍ୟ କେହି ଲୋକଗୀତର ପଦ ସଂଯୋଜନା କରି କବିତାର ବ୍ୟଞ୍ଜନା ଧର୍ମକୁ ପ୍ରସାରିତ ଓ ପ୍ରାଞ୍ଜଳ କରିଛନ୍ତି । ସୀତାକାନ୍ତଙ୍କ 'ଚିତ୍ରନଦୀ' ସଂକଳନର ଦୁଇଟି କବିତାରେ 'ବୁଢ଼ା ଶିକାରୀ' ଓ 'ଘାସଫୁଲ' ଲୋକଗୀତର ପଦ-ସଂଯୋଜନା ଏ ଦିଗରୁ ତାତ୍ପର୍ଯ୍ୟପୂର୍ଣ୍ଣ—'ଆକାଶୀ ପାରି ଯୋଡ଼ିକ ଆସ ଆସ, ଉଡ଼ି ଉଡ଼ି ଆସ; ଅର୍କୁଟିଏ ମୋ ପିଣ୍ଡାରେ ବସ ।' ଦେହର ଅଣଓସାରିଆ ପିଣ୍ଡା ଉପରକୁ ବିପୁଳ ଅଭିପ୍ସାର ପାରି ଯୋଡ଼ିକୁ କବି ଆହ୍ୱାନ କରୁଛନ୍ତି 'ଘାସଫୁଲ'ରେ—

"ଆସ ଆସ ଘାସଫୁଲ ମୋ ପିଣ୍ଡାରେ ବସ
ଖାଇବାକୁ ଦେବି ତୁମକୁ ହୃଦୟର ରସ
ପିଇବାକୁ ଦେବି ତୁମକୁ ବେଣ୍ଟ ପୋଖରୀ ପାଣି ।"

ଲୋକଗଳ୍ପର ଆଦିମ ଚରିତ୍ର ବୁଢ଼ୀ ଅସୁରୁଣୀ ଆଧୁନିକ କବି ସମକ୍ଷରେ ଜୀବନର ପ୍ରତୀକ ରୂପେ ପ୍ରତିଭାତ ହୁଏ । ସେ ବୁଢ଼ୀ ଅସୁରୁଣୀ ଗୋଟିଏ ଗୋଡ଼କୁ ଚୂଲୀରେ ମୁହାଁଇ ଦେଇଥାଏ । ସେ ନିଆଁରେ ଆଉ ଗୋଡ଼ଟିକୁ ବସି ବସି ସେକୁଥାଏ । ଜଳିବା ଯେମିତ

ଯନ୍ତ୍ରଣା ଦାୟକ, ସେକହେବା ସେତକ ଆରାମପ୍ରଦ । ଜୀବନ ଏକ ଚମତ୍କାର ଉପଲବ୍ଧି ଏଥିରେ ସୂଚିତ । ଯନ୍ତ୍ରଣା ଯେତକ, ଆନନ୍ଦ ସେତକ ଜୀବନରେ । ଯନ୍ତ୍ରଣାବର୍ଜିତ ଆହ୍ଲାଦ ଏଠାରେ ମିଳେନାହିଁ । ସୁଖ ଏଠାରେ ଦୁଃଖ-ଗର୍ଭିତ । ରାଜେନ୍ଦ୍ରଙ୍କ କବିତାରେ—

"କାହାଣୀର ବୁଢ଼ୀ ଅସୁରୁଣୀ
ଗୋଟିଏ ଗୋଡ଼କୁ ତା'ର
ଚୂଲିରେ ପୂରାଇ ଜାଳି
ଆରଟି ସେକିଲା ପରି
ତୁ ବି ବଞ୍ଚିବୁ ।"

('ମୋ ଝିଅକୁ'—ଶୈଳକଳ୍ପ)

ଦୀପକ ମିଶ୍ର କବିତାରେ ଉପଯୁକ୍ତ ପରିବେଶଟିଏ ଆଙ୍କିବାକୁ ଯାଇ ଲୋକଗୀତରୁ ପଦେ ଗାଇ ଦିଅନ୍ତି । କାରଣ, ସେଇ ଲୋକଗୀତ ଆମ ଚେତନାର ରନ୍ଧ୍ରେ ରନ୍ଧ୍ରେ ଭେଦି ଯାଇଥିବାରୁ ସମଧର୍ମୀ ଅନୁଭବଟିକୁ ଅଧିକ ପ୍ରାଞ୍ଜଳ କରିପାରେ—

"ନେ ଜହ୍ନମାମୁଁ ସରଗ ଶଶୀ
ମୋ ରାଧା ହାତରେ ପଡ଼ୁଛୁ ଖସି ।"

'ଜହ୍ନର ଠେକୁଆ'—ଅନଘା

କବି ଶରତଚନ୍ଦ୍ର ପ୍ରଧାନ ନିଜ ରଚନା ମଧ୍ୟରେ ଲୋକଗୀତରୁ କେତୋଟି ଧାଡ଼ି ଉଦ୍ଧାର କରିବାରେ ଆଗ୍ରହୀ । ତାଙ୍କର କେତେକ କବିତା ଲୋକଗୀତର ଛନ୍ଦରେ ମଧ୍ୟ ବିରଚିତ ହୋଇଛି ।

ଗ୍ରାମ୍ୟଲୋକଙ୍କ କଥିତ ଭାଷାର ଶବ୍ଦସମ୍ଭାର ସୀତାକାନ୍ତଙ୍କ ରଚନାରେ ପ୍ରଚୁର ପରିଲକ୍ଷିତ ହୋଇଥାଏ । ଯଥା—ପିଣ୍ଡା, ନିତପର, ଦୁଃଖ, ବଣା, ବାଉନ, ମଣ୍ଡୁଖ, କଡକ, ଶଳ, ଷଠୀଦୁଛେଇ ଇତ୍ୟାଦି । ରମାକାନ୍ତଙ୍କ ରଚନାରେ କଥିତ ଭାଷାର ପରିସ୍ଫୁରଣ—ପାଟି ପଡ଼ିଯାଏ ବେଲଉଣ୍ଡି, ଗାଏବ, ଭୁକୁଡ଼ା, ଦରଣ୍ଡି, ପାହୁଣ୍ଡ, ଝାଲଝୁଲ ଇତ୍ୟାଦି ରୋମାଣ୍ଟିକ୍ ପ୍ରବଣତା ଏକଦା କବିଙ୍କୁ ଗ୍ରାମ୍ୟଭାଷା ଦିଗକୁ ଆକୃଷ୍ଟ କରିଥିଲା । କଥିତ ଗ୍ରାମ୍ୟ ଭାଷାର ପ୍ରୟୋଗ ପ୍ରଚୁରତା ଓ ସାର୍ଥକତା ନେଇ ଆତ୍ମପ୍ରକାଶ କରେ ହୃଷୀକେଶ ମଲ୍ଲିକଙ୍କ କବିତାରେ—ଉଲୁରିବା, ଦୁମୁକା, ପହଣ୍ଡେ, ଆହାର, ନନ୍ଥୁ, ଓପେଇଣ୍ଟି, ଛୁରିକ, ତଇଲା, ଉଡିଅଣି, ପାକଲା, ରଇଜଲା ଇତ୍ୟାଦି । କବିତା-ସଙ୍କଳନର ନାମକରଣରେ 'ଧାନସାଉଁଟା ଝିଅ' କବିଙ୍କ ତୀବ୍ର ରୋମାଣ୍ଟିକ୍ ସଚେତନତାକୁ ସୂଚାଏ । ଚକ ପେଷୁଥିବା ଲୋକ, ଦୋଳି ଝୁଲଉଥିବା ଝିଅର ଭାଷା ଓ ଚରିତ୍ରକୁ ରୋମାଣ୍ଟିକ୍‌ମାନେ କବିତା ଗଢ଼ନ୍ତି ବୋଲି ଯେପରି ଇଂରାଜୀ ସମାଲୋଚକ। ଲିଲିଆନ୍ ଫ୍ରଷ୍ଟ୍ କହିଥିଲେ

'ଧାନ ସାଉଁଟା ଝିଅ' ଆମକୁ 'Solitary Reaper'କୁ ଯଦି ମନେ ପକାଇଦିଏ, ତେବେ ଆଧୁନିକତା ସହିତ ରୋମାଣ୍ଟିକ୍ କାବ୍ୟମାନସର ନିବିଡ଼ ଯୋଗାଯୋଗକୁ ଚିହ୍ନିବା କଷ୍ଟକର ହେବନାହିଁ । ଆଧୁନିକ କବିଠାରେ ଏ ଆକର୍ଷଣ ମଧ୍ୟ ସ୍ପଷ୍ଟ ହୋଇ ପାରିଛି । ଅତୀତ ଆମୁଖତା ଆଧୁନିକ କବି ଅନ୍ତରକୁ କମ୍ ଉନ୍ମୁଖ କରିନାହିଁ । 'ଚନ୍ଦନଦୀ'ର ମୁଖବନ୍ଧରେ ନିଜେ ସୀତାକାନ୍ତ ବାଲ୍ୟସ୍ମୃତିକୁ ଉଜ୍ଜୀବିତ କରୁଛନ୍ତି । ଶୈଶବ ସମ୍ପର୍କିତ ସେଇ ଚପଳା ନଦୀ ଚନ୍ଦୋପୃଲା—ସେ ବି ହେଇପାରେ ଗଙ୍ଗା, ଯମୁନା କି ସିନ୍ଧୁ, କାବେରୀ, ଶବ୍ଦ ଓ ସଙ୍ଗୀତର ନଦୀ, ସେ ପୁଣି ହୋଇପାରେ ଜୀବନ-ସ୍ରୋତର ପ୍ରତୀକ । ସ୍ମୃତିଦେବୀ କଳ୍ପନା-ସୁନ୍ଦରୀଙ୍କ ସାହଚର୍ଯ୍ୟରେ ନଦୀକୁ ମାନବିକ ସତ୍ତା ରୂପେ ଅଙ୍କିତ କରିଛନ୍ତି—

''ମନେଅଛି କେତେଥର
ତୁମର କୂଳରେ ବସି
କୁଆଡ଼ୁ ଧସେଇ ଆସୁଥିବା
ଢଗଢ଼ଗା କଳା ବଉଦରୁ
ଝରିଯିବା ବରଷାରେ ମୁଁ ଭିଜିଯାଇଛି ?
ବର୍ଷାଟୋପା ଜଳତରଙ୍ଗରେ
ପଢ଼ି ସେଇ ଯୋଉ ଅଭୁଲା ସଙ୍ଗୀତ ।
ଜ୍ୟୋଷ୍ଣର ସନ୍ଧ୍ୟାରେ
ତୁମର ଘୁଙ୍ଗାବାଲିରେ ଶୋଇ
ଆକାଶକୁ ଅନେଇ କେତେଥର ଶୁଣିଛି
ସେ କେଉଁ ଗାଈଆଳ ପିଲା
କି ଅଜଣା ବରଷାର ଶୁଭ୍ର ମନମତାଣିଆ ବଂଶୀସ୍ୱନ !
ଆଖି ବୁଜିଦେଲେ
ଆଜି ବି ସେ ବଂଶୀଧ୍ୱନି ଶୁଭିଯାଏ ।
ଢଣେ ମାଇଲ ମାଇଲ ଧରି
ଧାରି, ମୁଗ, ଯୋରଷ କିଆରିର
ସାବ୍ଜା ହଲଦୀର ବିସ୍ତୃତ ।
ନ ଥିବା ସନ୍ଧ୍ୟାର ଆକାଶରେ
ଅଗଣନ ତାରା ପୁଣି ବନ୍ଧିହୋଇ ପଡ଼ନ୍ତି ।''

ନିଜ ଭିତରେ ଏକ ଅଜଣାର ଆକର୍ଷଣ ରୋମାଣ୍ଟିକ୍ କବି ଅନୁଭବ କରିଥାଏ । କାହାଦ୍ୱାରା ସେ ଆକର୍ଷିତ ହୁଏ ଓ ଏ ଆକର୍ଷଣର ହେତୁ କ'ଣ, ସେ ହୁଏତ ସ୍ପଷ୍ଟ ବୁଝିପାରେ

ନାହିଁ ବା ବ୍ୟାଖ୍ୟା କରିପାରେ ନାହିଁ । କବିତା ପରି ଏହି ଆକର୍ଷଣ ଅଧା ବୁଝା, ଅଧା ଅବୁଝା । ତାର 'ଟାଣିନେବା' ବୃଦ୍ଧିହୁଏ, ମାତ୍ର ମୂଳ ନିର୍ଣ୍ଣୟ କରିହୁଏ ନାହିଁ । ଏପରି ଆକର୍ଷଣର ଅଭିବ୍ୟକ୍ତି ଆଧୁନିକ କବିତାରେ ଅପର୍ଯ୍ୟାପ୍ତ ରହିଅଛି ।

"କାହିଁକି ଅଜଣା କେଉଁ ମୂଳକର
ପ୍ରଲୋଭନ ଦ୍ୱାରା ଉଡ଼ିଲା ବିକଳ ହୁଏ ଏ ଜୀବନ ?

(ସ୍ୱର୍ଗଠାରୁ ଭିନ୍ନ ସ୍ୱର୍ଗ—ସଚ୍ଚି ଅନ୍ଧାର)

କିମ୍ବା

"ହେ କ'ଣ ଦୃଷ୍ଟିବର୍ତ୍ତିର ଅନ୍ଧ ଆଖି
ଟାଣିନିଏ,
ଅସ୍ତବ୍ୟସ୍ତ କରିଦିଏ ନାଭିକେଂଦ୍ରେ ଘୂରେଇ ଘୂରେଇ
ମନ ଆଉ ହୃଦୟର ଦଗଦଗ ବାରିହୁଏ ନାହିଁ ?"

(ବିଦାୟ ମୁହୂର୍ତ୍ତ—ଚନ୍ଦ୍ରନଦୀ—କବି ସୀତାକାନ୍ତ ମହାପାତ୍ର)

ଆଧୁନିକ କବିତାରେ ରୋମାଣ୍ଟିକ୍ ଭାବ ଉପାଦାନ ପ୍ରଚୁର ଲକ୍ଷଣୀୟ ହୋଇଥିବା ଆମେ ଆଲୋଚନା କଲେ । ସ୍ରଷ୍ଟା ମାନସ ସହିତ ରୋମାଣ୍ଟିକ୍ ଚେତନାର ନିବିଡ଼ ସୌହାର୍ଦ୍ଦ୍ୟ ରହିଥିବାର ଯୁକ୍ତିନିଷ୍ଠତା ଆମେ ଅବଗତ ହେଲେ । ମାତ୍ର ଆଧୁନିକ କବି ଅହଂର ପ୍ରକାଶ କଲାବେଳେ ସ୍ୱ-ଭାବଚେତନାକୁ ସମ୍ପ୍ରେଷିତ କଲାବେଳେ ବକ୍ତବ୍ୟରେ କବିତାର ପ୍ରକାଶ-ଭାବରେ ମଧ୍ୟ ରୋମାଣ୍ଟିକ୍ ଗୀତିକବିତାର ଆକାରକୁ ଗୁରୁତ୍ୱ ଦେଉଅଛି । ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ଯୁଗର Ode (ସମ୍ବୋଧଗୀତି) କେବଳ ଓଡ଼ିଆ କବିତା ଜଗତରେ ରାଧାନାଥୀ ସତ୍ୟବାଦୀୟ ଓ ସବୁଜ ଚେତନାର ରଚନା ମଧ୍ୟରେ ସୀମିତ ରହିନାହିଁ । ଆଜି ବି କବି 'ପ୍ରତି' ଯୋଗକରି ବା ଯୋଗ ନ କରି ସମ୍ବୋଧଗୀତି ମାଧ୍ୟମରେ ସ୍ୱଚନ୍ତା ଓ ଅନୁଭବକୁ ବ୍ୟକ୍ତ କରିବା ସହଜ ମନେକରୁଛି । ସମ୍ବୋଧଗୀତି, ଚତୁର୍ଦ୍ଦଶପଦୀ ଶୋକଗୀତିଗୁଡ଼ିକ ରୋମାଣ୍ଟିକ୍ ଯୁଗରେ ବହୁଳ ଓ ବ୍ୟାପକ ଭାବେ ପରିଚିତ ହୋଇଥିଲା । ଏବେ ମଧ୍ୟ ଆଧୁନିକ କବି ଗୁରୁପ୍ରସାଦଙ୍କର ଦଶଟି ସାର୍ଥକ ଚତୁର୍ଦ୍ଦଶପଦୀ (କାଳପୁରୁଷ), ରମାକାନ୍ତବାବୁଙ୍କ ଲଣ୍ଡନ, ସୌଭାଗ୍ୟବାବୁଙ୍କ ସମୁଦ୍ର, ବନବିହାରୀ ପଣ୍ଡାଙ୍କ ଅସଂଖ୍ୟ ସନେଟ୍ ରୋମାଣ୍ଟିକ୍ ସୃଷ୍ଟିର ପ୍ରକାଶଭାବର ଜୟ ଘୋଷଣା କରୁଛି । ଏବେ ବି ଖୁବ୍ ଆବେଗ ଓ ବିସ୍ମୟର କଷଟିରେ ଶାଣିତ କରି ଆଧୁନିକ କବି ସମ୍ବୋଧଗୀତି ରଚନା କରି ଚାଲିଛି—କେଉଁଠି 'ପ୍ରତି' ବା 'କୁ' ଇତ୍ୟାଦିକୁ ଯୋଗ କରୁଛି ତ ଅନ୍ୟ କେଉଁଠି ସେସବୁ ଯୋଗ ନ କରି ପ୍ରତ୍ୟକ୍ଷ ସମ୍ବୋଧନ ମାଧ୍ୟମରେ ଆପଣାକୁ ବ୍ୟକ୍ତ କରୁଛି । କବି ରମାକାନ୍ତଙ୍କ 'ଚଣ୍ଡୀପ୍ରତି', 'ଧର୍ମପ୍ରତି ଭୃତ୍ୟର ଉକ୍ତି', ସୀତାକାନ୍ତଙ୍କ 'ମୁଲୁପାଇଁ ଗୋଟିଏ କବିତା', ସୌଭାଗ୍ୟଙ୍କ 'ଶକୁନ୍ତଳା', ରାଜେନ୍ଦ୍ରବାବୁଙ୍କ 'ଅସମୁଦ୍ର ଇଲାକାର ଲୋକପାଇଁ',

'ମୋ ଝିଅକୁ', 'ସେଗୃପ୍ରତି ଈଶ୍ୱର', 'ଜୀବନପ୍ରତି', ଗୁରୁପ୍ରସାଦ ମହାନ୍ତିଙ୍କ 'ବାବାପାଇଁ ଦୁଇଟି କବିତା', ଉମାଶଙ୍କର ପଣ୍ଡାଙ୍କ 'ପ୍ରାର୍ଥନା ଏକ ସାମ୍ରାଜ୍ଞୀକୁ', 'ଭ୍ରମରକୁ', 'ଯନ୍ତ୍ରଣାକୁ', ହରିହର ମିଶ୍ରଙ୍କର 'ମୋର ସମ୍ବର୍ଦ୍ଧନା ପାଇଁ ଅପେକ୍ଷା କରିଥିବା ସୁନ୍ଦରୀକୁ', 'କନ୍ୟାକୁମାରୀଙ୍କୁ', 'ଗୋଟାଏ ଅଖି, ଜ୍ୱଳନ୍ତ ସବିତାକୁ', ନୃସିଂହ ତ୍ରିପାଠୀଙ୍କ 'ବାପା', ସରୋଜ ମହାନ୍ତିଙ୍କ 'ସହଜସୁନ୍ଦରୀ', 'ସମୟସୁନ୍ଦରୀ', ପ୍ରମୋଦ ମହାନ୍ତିଙ୍କ 'ଗାଆଁକୁ', 'କଣ୍ଢେଇକୁ', 'କୋଇଲଲେ', ସୌଭାଗ୍ୟ ମିଶ୍ରଙ୍କ 'ଶକୁନ୍ତଳା', ଦୀପକ ମିଶ୍ରଙ୍କ 'ବଳରାମ ସୁଆର', 'ଶ୍ରୀକୃ', 'ଚନ୍ଦ୍ରସେଣାକୁ', ପ୍ରସନ୍ନ ମିଶ୍ରଙ୍କ 'ମନକାକୁ', ଦେବ ଦାସଙ୍କ 'ମଲ୍ଲିକା', ହୃଷୀକେଶଙ୍କ 'କାଦମ୍ବରୀକୁ' ।

ଆଜି ଆଧୁନିକ କବି ନିଜ ଆତ୍ମାର ସଂଳାପ ଉଚ୍ଚାରଣ କାଳରେ, ଆତ୍ମାର ପ୍ରତିରୂପ ପ୍ରକାଶ କାଳରେ ସମ୍ବୋଧଗୀତିର ମାଧ୍ୟମକୁ ବିଶେଷ ଭାବେ ଗ୍ରହଣ କରି ନେଉଛି । ସେ ସମ୍ବୋଧନ କରୁଛି ଓ ସ୍ୱେ ସମ୍ବୋଧନ କଥନଭଙ୍ଗୀ ମାଧ୍ୟମରେ ନିଜକୁ ବ୍ୟକ୍ତ କରିବାର ସଫଳତା ନିମିତ୍ତ ଉଦ୍ଦିଷ୍ଟ । ଆଧୁନିକ କବିତ ବହୁ ଲେଖେନା, ଆପଣାର ହୃଦୟକୁ ଚର୍ଚ୍ଚିଦେଇଥାଏ । ଫଳତଃ ସେ 'ସମ୍ବୋଧନ'ର ଉଚ୍ଚାରଣ କରୁ ନ କରୁ, ସମ୍ବୋଧଗୀତିର ଆକାରଟିକୁ ସାଦରେ ବାଛି ନେଇଥାଏ ।

ଏ ଯୁଗରେ ଶୋକଗୀତ କମ୍ ଲେଖା ହେଉନାହିଁ—ଏହି ଶୋକଗୀତ କୌଣସି ବ୍ୟକ୍ତି ବା ପ୍ରିୟଜନର ମୃତ୍ୟୁରେ ହେଉ ବା କୌଣସି ନିବଡ଼ ଅଭିଳାଷର ନଷ୍ଟୁର ମୃତ୍ୟୁରେ, ଆଶାହୀନତାରେ ହେଉ । କେଉଁଠି 'Elegy written on a country church yard' ପରି ଶୀର୍ଷକ ଥାଉ ବା କେଉଁଠି ଶୀର୍ଷକ ନ ଥାଉ । ଶୋକଗୀତର ବିଷାଦ, କରୁଣତା ଓ ହୃଦୟାବେଗ ଆଜି ମଧ୍ୟ କବି ପକ୍ଷେ ଅପରିହାର୍ଯ୍ୟ । ଆଧୁନିକ କବି ଆବେଗକୁ ନିୟନ୍ତ୍ରିତ କରି ଶିଖିଛି ସତ, ମାତ୍ର ଆବେଗର ତୀବ୍ର ଅନୁପ୍ରେରଣା ହିଁ ତ ତା'ର ସଂରଚନାର ଉତ୍ସ । ଯେତେଦିନ ଆବେଗ ଜୀବନ୍ତ, ସେତେଦିନ କବି ଜୀବନ୍ତ ।

ଶୋକଗୀତିକା ଏବେ ମଧ୍ୟ କବିମାନଙ୍କ ସଂକଳନରେ ସ୍ଥାନ ପାଏ । ସେଗୁଡ଼ିକ ପ୍ରତ୍ୟକ୍ଷ ଭାବେ ଶୋକଗୀତର ଶୀର୍ଷକରେ ଚିହ୍ନିତ ହୋଇଥାଏ । ଏହି ଏଲିଜିରେ ହୁଏତ କବି କିଂକର୍ତ୍ତବ୍ୟବିମୂଢ଼ ହୋଇ ଶୋକ କରୁଛି କିମ୍ବା ଶୋକ ବିଷାଦକୁ ବିଭିନ୍ନ ଦିଗରୁ ପ୍ରଶ୍ନ କରୁଛି; ଯନ୍ତ୍ରଣାରେ ଧୀରହୋଇ ଶୋକକୁ ଅତିକ୍ରମ କରିଯିବାକୁ ନିଜକୁ ପ୍ରସ୍ତୁତ କରୁଛି । ପ୍ରଶ୍ନ ଓ ପ୍ରସ୍ତୁତି ଭିତରେ କବିର ଶୋକର ଉପାଦାନ ଓ ଶୋକାର୍ତ୍ତ ହୃଦୟର ପ୍ରତିଫଳନ ବାସ୍ତବାଭିମୁଖୀ ହେଉଛି । ସେଗୁଡ଼ିକୁ ଚିହ୍ନାଇଦେଲେ ଏହିପରି ହେବ—ଗୁରୁପ୍ରସାଦଙ୍କ 'ଗୋଟିଏ ମୃତ୍ୟୁର ପରେ', 'ନିହତ ଗୋଧୂଳି', ରମାକାନ୍ତ ରଥଙ୍କ 'ଆମର ବିମର୍ଷ ଭାଗ୍ୟ', 'ଦୁଃଖରେ ନିର୍ମମ ମନ', 'ଓଡ଼ଣୀ', ସୌଭାଗ୍ୟ ମିଶ୍ରଙ୍କର 'ପଳାତକ', 'ଅସ୍ତ ଜହ୍ନର ଏଲିଜି', ହରିହର ମିଶ୍ରଙ୍କ 'ମଧ୍ୟାହ୍ନର ଶୋକ', 'ଫାଲ୍‌ଗୁନର ବିଷାଦଯୋଗ', ରାଜେନ୍ଦ୍ର

ଷଡ଼ଙ୍ଗୀଙ୍କ 'ମଝିରାତିର ମୃତ୍ୟୁ', 'ଲୌକିକ ମୃତ୍ୟୁ', ସରୋଜ ମହାନ୍ତଙ୍କର 'ଏଲିଜି ଏକ ପ୍ରେମର ମୃତ୍ୟୁରେ', 'ହଳଦିଆ ପ୍ରୀତିର ଏଲିଜି', 'କାଗଜଡଙ୍ଗାର ଶୋକ' ଏବଂ ନୃସିଂହ ତ୍ରିପାଠୀଙ୍କ 'ନିର୍ବାସିତର ବିଳାପ', 'ଅସମାପ୍ତ କବରର ଦୁଃଖ', ଉମାଶଙ୍କର ପଣ୍ଡାଙ୍କ 'ଦୁଇଟି ପୃଥକ୍ ଶୋକ', 'ଏକାନ୍ତ ବିଷାଦ', 'ଦୁଃଖ', ହୃଷୀକେଶ ମଲ୍ଲିକ୍‌ଙ୍କ 'ବ୍ୟକ୍ତିଗତ ଶୋକର ଋତୁ', 'ଭିଜୁଆ କ୍ଷେତର ଗୀତ' । ଉପରୋକ୍ତ ଶୀର୍ଷକଗୁଡ଼ିକରୁ ଅନେକ ଶୀର୍ଷକ କବିତାର ଏବଂ ଅନ୍ୟ କେତୋଟି କାବ୍ୟସଂକଳନର ଶୀର୍ଷକ ମଧ୍ୟ ରହିଛି ।

ଏହିପରି ଅନେକ ଆଧୁନିକ କବିଙ୍କର କବିତାର ରୋମାଣ୍ଟିକ ଆଙ୍ଗିକ ଆଧୁନିକତା ସହ ରୋମାଣ୍ଟିକତାର ଏକାତ୍ମକତାକୁ ସୂଚିତ କରିଥାଏ । ପ୍ରବନ୍ଧର କଳେବର ପ୍ରତି ଲକ୍ଷ୍ୟ ରଖି ଆଧୁନିକ କବିତାରେ ରୋମାଣ୍ଟିକ୍ ଚେତନାର ପ୍ରକଟନ ସମ୍ପର୍କରେ କିଞ୍ଚିତ ଆଲୋକପାତ କରିଗଲି । କିନ୍ତୁ ଏହିପରି ଅସଂଖ୍ୟ ଉଦାହରଣ ଆଧୁନିକ କାବ୍ୟମାନଙ୍କର ରୋମାଣ୍ଟିକ ଗୁଣକୁ ଉଦ୍‌ଘୋଷିତ କରିପାରିବ । ମୂଳକଥା ହେଲା, ଆଧୁନିକତା ରୋମାଣ୍ଟିକ୍‌ତାଠାରୁ କିଛିଟା ଭିନ୍ନ, ମାତ୍ର ତା'ର ବିରୋଧୀ ଆଦୌ ନୁହେଁ । ଏପରି ଭ୍ରମ-ଧାରଣା ଦିନାକେତେ କବି ଓ ଆଲୋଚକଙ୍କର ରହିଥିଲା । କିନ୍ତୁ କାବ୍ୟସଂରଚନାର ଭିନ୍ନସ୍ୟମସ୍ଥ ପଦ୍ଧତିରେ ଏ ଦୁଇଟି କାବ୍ୟିକ ଗୁଣର ସମନ୍ୱୟ ଆଜିର କବିତାକୁ ସମୃଦ୍ଧ କରିପାରିଛି ।

# ରୋମାଣ୍ଟିକ୍ ବ୍ୟକ୍ତିବାଦ

'ରୋମାଣ୍ଟିକ୍' ଶବ୍ଦର ଅର୍ଥବ୍ୟୁତ୍ପତ୍ତି ଏକ କଠିନ ବ୍ୟାପାର । ବୋଧହୁଏ ସାହିତ୍ୟ ତତ୍ତ୍ୱରେ ଅନ୍ୟ କୌଣସି ଶବ୍ଦର ଏପରି ଚମକପ୍ରଦ ଭାବେ ପ୍ରଶସ୍ତ ଅର୍ଥନ୍ୟାସ ଘଟିନାହିଁ । ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ ରୋମାଣ୍ଟିକ୍ ଶବ୍ଦର ଅର୍ଥକୁ ବୁଝାଏ । ଆକର୍ଷଣୀୟ, ନିଃସ୍ୱାର୍ଥପର, ବିଭ୍ରାନ୍ତ, ଆଲଙ୍କାରିକ, ଅବାସ୍ତବ, ବାସ୍ତବବାଦୀ, ବିପୁଳ, ଅମାପ, ବସ୍ତୁବାଦୀ, ବ୍ୟର୍ଥ, ଭାବରିକ୍ତପୂର୍ଣ୍ଣ, ଉଲ୍ଲେଖନୀୟ, ରକ୍ଷଣଶୀଳ, ରହସ୍ୟମୟ, ଅଆତ୍ମାମୟ, ଧ୍ୱନିପୂର୍ଣ୍ଣ, ବୈପ୍ଲବିକ, ଚିନ୍ତାମୟ, ନିରାକାର, ମରହଟ୍ଟୀ, ଆବେଗାତ୍ମକ, କପୋଳକଳ୍ପନା, ବୋକା— ଇତ୍ୟାଦି ଅନେକ ଶବ୍ଦ ମାଧ୍ୟମରେ ରୋମାଣ୍ଟିକ୍ ଶବ୍ଦର ଅର୍ଥକୁ ବୁଝାଇ ହେବ । ଏପରିକି କେତେକ ଶବ୍ଦ ହୁଏତ ପରସ୍ପରର ବିପରୀତ ଅର୍ଥ ପ୍ରକାଶ କରୁଥିବେ, ଅଥଚ ରୋମାଣ୍ଟିକ୍‌ର ଅର୍ଥକୁ ବୁଝାଉଥିବେ । ରୋମାଣ୍ଟିକ୍ ଚେତନାର ବିଶିଷ୍ଟ ସମାଲୋଚକ ଲଭ୍‌ଜୟ (Love-Joy) କହନ୍ତି, ଏତେ ସଂଖ୍ୟକ ଅର୍ଥ ରହିଛି ଯେ, ମନେହେବ ରୋମାଣ୍ଟିକ୍ ଶବ୍ଦର ପ୍ରକୃତ ଅର୍ଥ ବୋଲି କିଛି ନାହିଁ । ଯେମିତିକି ଅଜାଣତରେ ଆମେ ବହୁ ଧାରଣାକୁ 'ରୋମାଣ୍ଟିକ୍' ବୋଲି ଗ୍ରହଣ କରିନେଉ । ଫ୍ରେଡ଼ରିକ୍ ସ୍ଲେଗେଲ୍ ଏହି ଶବ୍ଦର କେତେ କେତେ ସଜ୍ଞା ଓ ଅର୍ଥ ନିରୂପଣ କରି ୧୨୫ ପୃଷ୍ଠା ଲେଖି ପକାଇଲେ, ଅଥଚ କୌଣସି ଗୋଟିଏ ସ୍ଥିର ନିର୍ଦ୍ଦିଷ୍ଟ ଅର୍ଥାନ୍ୱୟ କରିପାରିଲେ ନାହିଁ । କାରଣ ଗୋଟିଏ ରଚନାର ରୋମାଣ୍ଟିକ୍ ଗୁଣଠାରୁ ଅନ୍ୟ ଗୋଟିଏ ରଚନାର ରୋମାଣ୍ଟିକ୍ ଗୁଣ ତ ନିଶ୍ଚିତ ଭାବେ ଅଲଗା, କିନ୍ତୁ ସେଇ ଗୋଟିଏ ରଚନାରେ ମଧ୍ୟ ରୋମାଣ୍ଟିକ୍ ଗୁଣ ଇତସ୍ତତଃ ପରିବର୍ତ୍ତିତ ହୋଇ ରହିଥାଏ । ସେଇଥିପାଇଁ ବୋଧେ ଇଂରାଜୀ ଆଲୋଚକଗଣ 'ରୋମାଣ୍ଟିକ୍' ଶବ୍ଦର ଅର୍ଥାନ୍ୱୟ ବ୍ୟାପାରକୁ ପ୍ରମାଦପୂର୍ଣ୍ଣ (hazardous) ବୋଲି କହିଥିଲେ ।

ବ୍ୟକ୍ତିବାଦ ପ୍ରତି ସମ୍ମତ ରୋମାଣ୍ଟିକ୍‌ମାନଙ୍କ କାବ୍ୟ-କବିତାରେ କବିଙ୍କ ଭାବାନୁଭୂତିର ପ୍ରକଟନ ଘଟିଥାଏ । ପ୍ରତ୍ୟେକ ବ୍ୟକ୍ତି ଅପରଠାରୁ ଭିନ୍ନ ହୋଇଥିବାରୁ ପ୍ରତ୍ୟେକର ବ୍ୟକ୍ତିଗତ ଅନୁଭୂତିର ସ୍ତର ମଧ୍ୟ ଅପରଠାରୁ ଭିନ୍ନ । କବିତା କବିର ହୃଦୟ ଓ ଆତ୍ମା ଦ୍ୱାରା ଅନୁପ୍ରେରିତ ହୋଇଥିବାରୁ ବ୍ୟକ୍ତିବାଦୀ ଅନୁଭୂତିର ସଚେତନତା ଓ ସ୍ୱାତନ୍ତ୍ର୍ୟ ଅତି ଗୁରୁତ୍ୱପୂର୍ଣ୍ଣ । କବିର ଏକ ବିଶେଷ ସଂବୃଦ୍ଧି ଓ ଉଦ୍ଦୀପନାରୁ ରୋମାଣ୍ଟିକ୍ କବିତାର ସୃଷ୍ଟି । ରୋମାଣ୍ଟିକ୍ କବି ସହିତ ତା ଚତୁଃପାର୍ଶ୍ୱ ବିଶ୍ୱର ସମ୍ପର୍କ ନିର୍ଣ୍ଣୟ

କରିବାକୁ ଗଲେ ବିଶେଷତଃ ପ୍ରକୃତି ସହ ତା'ର ସମ୍ପର୍କ ଅନୁସନ୍ଧାନ କଲେ ଜଣାଯିବ ଯେ କବି ସ୍ୱ-ବ୍ୟକ୍ତିଚେତନା ଦ୍ୱାରା ପ୍ରତ୍ୟକ୍ଷ ଓ ଗଭୀର ଭାବେ ପ୍ରଭାବିତ । ରୋମାଣ୍ଟିକ୍ ଚେତନାର ବ୍ୟକ୍ତିବାଦ ଓ କଳ୍ପନା କ୍ଷେତ୍ରରେ ଦେଖାଯାଉଥିବା ଐକ୍ୟ ଓ ବୈଭିନ୍ନ୍ୟକୁ ମାଟି ଓ ବୃକ୍ଷ ଦ୍ୱାରା ପ୍ରକାଶିତ କରାଯାଇ ପାରେ । ମାଟି ସବୁଠି ସମାନ, ତା'ର ଉତ୍ପାଦିକା ଶକ୍ତି ବି ସବୁଠି ରହିଚ । ବୀଜ ପଡ଼ିଲେ ଅଙ୍କୁରୋଦ୍‌ଗମ ହୁଏ । କିନ୍ତୁ କେଉଁଠି କେଉଁ ଗଛ, ଫୁଲ ଓ ଫଳ କେଉଁ ପରିମାଣରେ ଉତ୍ପାଦିତ ହେବ, ତାହା ବୀଜର ବୈଭିନ୍ନ୍ୟ ତଥା ମାଟିର ଉର୍ବରତାର ତାରତମ୍ୟ ଅନୁସାରେ ସ୍ଥିରୀକୃତ ହୁଏ । ରୋମାଣ୍ଟିକ୍ ଚେତନା ରୂପକ ମାଟିରେ କବିର ବ୍ୟକ୍ତିବାଦର ବୀଜ ହିଁ ସୃଜନା ଭଳି ବୃକ୍ଷର ସ୍ୱାତନ୍ତ୍ର୍ୟ ରକ୍ଷା କରେ ।

ତେଣୁ 'ରୋମାଣ୍ଟିକ୍'ର ସ୍ଥିର ନିର୍ଦ୍ଦିଷ୍ଟ ଅର୍ଥ ଉଲ୍ଲେଖ କରିବା ପ୍ରମାଦପୂର୍ଣ୍ଣ । କବିମାନେ ଏହି କାବ୍ୟତତ୍ତ୍ୱର ସଂଜ୍ଞା ନିର୍ଦ୍ଦେଶ କାର୍ଯ୍ୟଟିକୁ ସଫଳତାର ସହ ଆଡ଼େଇ ଯାଇଚନ୍ତି । ବ୍ଲେକଙ୍କ ରଚନାରେ ଏହି ଶବ୍ଦର ଉଲ୍ଲେଖ କ୍ୱଚିତ ଦେଖାଯାଏ, ଅଥଚ ରହସ୍ୟଗର୍ଭିତ ଅତିକ୍ରମଣଶୀଳ କବିତାର ସ୍ରଷ୍ଟା ବ୍ଲେକ୍ ଜଣେ ରୋମାଣ୍ଟିକ୍ କବି ଭାବେ ସ୍ୱୀକୃତ । ଓ୍ୱାର୍ଡ଼ସ୍‌ଓ୍ୱାର୍ଥ, କଲେରିଜ, ଶେଲି, କୀଟସ୍ ମଧ୍ୟ ଏ ଶବ୍ଦ ବିଷୟରେ ମୁଣ୍ଡ ଖେଳେଇ ନାହାନ୍ତି, ଅଥଚ ପ୍ରଚୁର ରୋମାଣ୍ଟିକ୍ କବିତା ରଚନା କରିଛନ୍ତି । ମାତ୍ର ଜର୍ମାନ ଓ ଫରାସୀ କବିଗଣ ତତ୍ତ୍ୱଜିଜ୍ଞାସା କାଳରେ ଏହି ଶବ୍ଦର ବହୁଳ ବ୍ୟବହାର କରିଛନ୍ତି । ବସ୍ତୁତଃ ରୋମାଣ୍ଟିକ୍ ଶବ୍ଦଟି ପାଇଁ ଇଂଲଣ୍ଡ, ଜର୍ମାନ ଓ ଫ୍ରାନ୍‌ସର କବିମାନେ କୌଣସି ନିର୍ଦ୍ଦିଷ୍ଟ ଅର୍ଥରେ ଉପନୀତ ହୋଇପାରିନାହାନ୍ତି । ଅନ୍ୟ ପକ୍ଷରେ ଏହି ତିନୋଟି ଦେଶ ମଧ୍ୟରୁ କୌଣସି ଗୋଟିଏ ଦେଶରେ ବି ରୋମାଣ୍ଟିକ୍ ଚିନ୍ତାଧାରା ଗୋଟିଏ ନିର୍ଦ୍ଦିଷ୍ଟ ଅର୍ଥରେ ବ୍ୟବହୃତ ହୋଇନାହିଁ । ଆମେ ଜାଣିଚେ ଯେ, ବ୍ଲେକ୍‌ଙ୍କ ରହସ୍ୟ ଦୃଷ୍ଟି, ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ପ୍ରକୃତି-ତନ୍ମୟତା, ବାଇରନ୍‌ଙ୍କ ଅଧିକ ବ୍ୟଙ୍ଗପ୍ରିୟତା କଦାପି ଗୋଟିଏ ଭାବଧାରାକୁ ବୁଝାଏ ନାହିଁ । ବରଂ ଭିନ୍ନ ଭିନ୍ନ ଭାବଧାରାର ପ୍ରୟୋଗକୁ ବୁଝାଏ । ଅଥଚ ଏ ତିନିଜଣ କବି ରୋମାଣ୍ଟିକ୍ ଯୁଗର ପ୍ରମୁଖ କବିରୂପେ ସ୍ୱୀକୃତ ।

## ରୋମାଣ୍ଟିକ୍ ସାମର୍ଥ୍ୟର ପକ୍ଷୀ : ତା'ର ଦୁଇଟି ଡେଣା

ରୋମାଣ୍ଟିକ୍ ଚେତନା ଓ ବାସ୍ତବ ଚେତନା ଏହି ଦୁଇଟି ମୁଖ୍ୟ ଧାରା ସାହିତ୍ୟରେ ପ୍ରବାହିତ । ଯଦିଓ ରୋମାଣ୍ଟିସିଜମ୍‌ର ବହୁ ସଂଜ୍ଞା ନିରୂପିତ ହୋଇସାରିଛି, କିନ୍ତୁ ସାହିତ୍ୟର ଐତିହାସିକମାନଙ୍କୁ ସନ୍ତୁଷ୍ଟ କରିବାପାଇଁ କୌଣସି ଗୋଟିଏ ସଂଜ୍ଞା ବି ସଂକ୍ଷିପ୍ତ ଓ ଯଥେଷ୍ଟ ମନେ ହୁଏନା । କାରଣ ରୋମାଣ୍ଟିସିଜମ୍‌ର ଦୁଇଟି ତୀକ୍ଷ୍ଣ ଓ ବିପରୀତ ବୋଧକ ପ୍ରବୃତ୍ତି ରହିଛି—ଆମେ ସେ ଦୁଇଟିକୁ ଚିହ୍ନିବା ଉଚିତ । ସେଥି-ମଧ୍ୟରୁ ଗୋଟିଏ କ୍ରିୟାରହିତ ଓ ଅପରଟି କ୍ରିୟାଶୀଳ ।

ରୋମାଣ୍ଟିସିଜମ୍ ମଣିଷକୁ ତା'ର ଚତୁଃପାର୍ଶ୍ୱରୁ ତା' ନିଜ ଭିତରକୁ ଟାଣିନିଏ ଓ ନିଷ୍ଫଳ ଆତ୍ମସମୀକ୍ଷା କରିବାକୁ ପ୍ରବର୍ତ୍ତାଏ । ପ୍ରେମ ପରି, ମୃତ୍ୟୁ ପରି ଜୀବନର ଅସମାହିତ ସମସ୍ୟାବଳୀକୁ ଚିନ୍ତା କରିବାକୁ ପ୍ରବର୍ତ୍ତାଏ । ଏହା କ୍ରିୟା-ରହିତ ପ୍ରବୃତ୍ତି । କ୍ରିୟାଶୀଳ ରୋମାଣ୍ଟିକ୍ ଚେତନା ମଣିଷର ବଞ୍ଚିବାର ଇଚ୍ଛାକୁ ପ୍ରବଳ କରାଏ ଓ ନିଜ ପାରିପାର୍ଶ୍ୱିକ ଜୀବନର ଯେ କୌଣସି ବନ୍ଧନକୁ ଅତିକ୍ରମ କରିବାକୁ ଶକ୍ତି ପ୍ରଦାନ କରେ । ବାଲ୍‌ଜାକ୍, ତୁର୍ଗେନିଭ, ଟଲ୍‌ଷ୍ଟୟ୍, ଗୋଗଲ୍ ରୋମାଣ୍ଟିକ୍ କି ବାସ୍ତବବାଦୀ, କହିବା କଷ୍ଟକର; କାରଣ ବଡ଼ ବଡ଼ ଲେଖକଙ୍କଠାରେ ରୋମାଣ୍ଟିକ୍ ଚେତନା ଓ ବାସ୍ତବ ଚେତନାର ଓତପ୍ରୋତ ମିଶ୍ରଣ (blending) ଘଟିଯାଇ ଥାଏ ।

ରୋମାଣ୍ଟିକତା ଓ ବାସ୍ତବବାଦ ମଧ୍ୟରେ ସମ୍ପର୍କ ସ୍ପଷ୍ଟ କରିବାକୁ ହେଲେ ଏ କଥାଟି ବିଚାର କରାଯାଉ । ଲେଖିବାର ଗରଜ କାହିଁକି ପଡ଼େ ? ଏହି ପ୍ରଶ୍ନର ଦୁଇପ୍ରକାର ଉତ୍ତର ହୋଇପାରେ । ଜଣେ କହିପାରେ ଯେ, ଜୀବନର ମାନ୍ଦା ଧୂସର ଅତ୍ୟାଚାର ଦ୍ୱାରା ହିଁ ମୋ ଭିତରେ ଲେଖିବାର ପ୍ରେରଣା ବା ଇଚ୍ଛାର ଉଦ୍ରେକ ହୋଇଛି । ଏହି ପ୍ରକାରେ ଅନୁପ୍ରେରିତ ହୋଇ ଯୁବ ଲେଖକଟି ଲେଖି ଚାଲିବ ଓ ବ୍ୟକ୍ତି ପ୍ରକୃତିରେ କଳ୍ପନା ଦ୍ୱାରା ତାହାଠାରୁ ଅଧିକ ଭଲ ହୋଇଥିବାର ଚିତ୍ରଣ କରିବ । ଯେପରି Dead Soul ଲେଖିଥିବା ଗୋଗଲ୍ ବାସ୍ତବବାଦୀ ଅଥଚ ତାରାସ୍ ବୁଲ୍‌ବାରେ ଯେଉଁ ଚାଷୀକଥା ଗୋଗଲ୍ କହିଲେ, ବାସ୍ତବରେ ସେମିତିକା ଚାଷୀ ନାହାନ୍ତି—ଏଠାରେ ଗୋଗଲ୍ ରୋମାଣ୍ଟିକ୍ ରୂପେ ପ୍ରତୀତ ହୁଅନ୍ତି—କଳ୍ପନା ମାଧ୍ୟମରେ ସେ ଚାଷୀ ଚରିତ୍ରଟି ଫୁଟାଇଛନ୍ତି । ସେପରି ଚାଷୀ ନାହାନ୍ତି, ମାତ୍ର ଥିବାର ସମ୍ଭାବନା ରହିଛି । ବୋଧହୁଏ ଏଇଥିପାଇଁ ସେ ରୋମାଣ୍ଟିକ୍ ହୋଇଛନ୍ତି ଯେ Dead Soulର ମାନ୍ଦା ଧୂସର ବାସ୍ତବ ଜୀବନକୁ ଆଙ୍କି ଆଙ୍କି ସେ କ୍ଳାନ୍ତ ହୋଇ ପଡ଼ିଛନ୍ତି । ତାଙ୍କୁ କଳ୍ପନା ଦ୍ୱାରା ପ୍ରତ୍ୟକ୍ଷୀଭୂତ ଚରିତ୍ରଟି ଶାନ୍ତି ଦେଇଛି । ତେଣୁ ସାହିତ୍ୟରେ ରୋମାଣ୍ଟିକ୍‌ତାର ଆବଶ୍ୟକତା ନିଶ୍ଚିତ ଭାବେ ରହିଛି—କେବଳ 'ରୋମାଣ୍ଟିକ୍' ଶବ୍ଦର ଉଚିତର ପ୍ରସାରଣ ଆବଶ୍ୟକ ।

ସେହି ପ୍ରଶ୍ନର ଉତ୍ତରରେ ଆଉ ଜଣେ ଯୁବକ କହିଲେ, 'ମୁଁ ଏତେବେଶୀ ଭାବାବେଶ (impression)ରେ ପୂର୍ଣ୍ଣ ହୋଇଯାଏ ଯେ ନଲେଖି ରହି ପାରେନା ।' ଏଠାରେ ଲେଖିବାର ଇଚ୍ଛା ବା ପ୍ରେରଣା ମାନ୍ଦା ଧୂସର ଜୀବନର ନିରାଶା ବା ଅଭାବ-ବୋଧରୁ ଆସୁନାହିଁ । ଆସୁଚି ଜୀବନର ସମ୍ପଦରୁ, ଐଶ୍ୱର୍ଯ୍ୟରୁ । ସେ ଯୁବକ ବାସ୍ତବବାଦୀ ହୋଇଥିଲେ ବି ଏହାଙ୍କ ବାସ୍ତବ ଚେତନା ରୋମାଣ୍ଟିକ୍‌ତା ଦ୍ୱାରା ଅନୁରଞ୍ଜିତ ହୋଇଛି । ସେଇଥିପାଇଁ ରୋମାଣ୍ଟିକ୍ ସୃଷ୍ଟି ଜୀବନର ଅଭାବବୋଧରୁ ଯେତିକି ପ୍ରେରଣିତ ହୁଏ, ଐଶ୍ୱର୍ଯ୍ୟ ବହୁଳତାରୁ ସେତିକି ପ୍ରେରଣିତ ହୁଏ । ଦୁଇ ବିପରୀତ ଭାବବୋଧ ଦ୍ୱାରା ଅନୁପ୍ରାଣିତ ହୋଇପାରେ ରୋମାଣ୍ଟିକ୍ ।

## ଏକତ୍ୱ ଓ ବୈଭିନ୍ନ୍ୟ

ତେବେ ଆମେ ଯାହାକୁ ରୋମାଣ୍ଟିକ୍ ଆନ୍ଦୋଳନ ବୋଲି ଜାଣୁ, ତାହାର ମୂଳଟି ବିଭିନ୍ନତା-ପରିପୁଷ୍ଟ ଓ ରୋମାଣ୍ଟିକ୍ ଶବ୍ଦଟି ଅସଂଖ୍ୟ ଅର୍ଥରେ ଅନ୍ୱିତ । ଏହାର ପରିସର ମଧ୍ୟରେ ଅଭିଜ୍ଞତା ଓ କଳ୍ପନାର ସମନ୍ୱୟ, ଅନୁଭବର ପ୍ରାଧାନ୍ୟ, ବ୍ୟକ୍ତିବାଦରେ ବିଶ୍ୱାସ, ବିଶେଷକରି କଳାକାରର ବ୍ୟକ୍ତିବାଦୀ ବିଶ୍ୱାସ, ପ୍ରକୃତି ପ୍ରତି ନୂତନ ଦୃଷ୍ଟିଭଙ୍ଗୀ, ଅବଚେତନର ଆବିଷ୍କାର, ଅତିଭୌତିକତା ପ୍ରତି ଆସକ୍ତି, ପ୍ରକାଶଭଙ୍ଗୀରେ ବିପୁଳ ସ୍ୱାଧୀନତାର ଚିହ୍ନ ଦେଖିବାକୁ ମିଳେ । ଆଧୁନିକ ଭାରତୀୟ ଭାଷାମାନଙ୍କରେ ଲିଖିତ କାବ୍ୟ କବିତାରେ ମଧ୍ୟ ରୋମାଣ୍ଟିକ୍ ଚେତନାର ଅନୁରୂପ ବିଚ୍ଛୁରଣ ଘଟିଛି । ଆମ ଓଡ଼ିଆ କବିମାନଙ୍କ ରଚନାରେ ରୋମାଣ୍ଟିକ୍ ଚେତନାର ପରିପ୍ରକାଶ ବିଭିନ୍ନ ଭାବଭୂମି ଉପରେ ପର୍ଯ୍ୟବସିତ । ରାଧାନାଥଙ୍କ ଅତିଲୌକିକ କଳ୍ପନା, ସୂକ୍ଷ୍ମ ସୌନ୍ଦର୍ଯ୍ୟ-ଦୃଷ୍ଟି, ନିବିଡ଼ ପ୍ରକୃତି ପ୍ରେମ, ସ୍ୱଦେଶ-ବତ୍ସଳତା ମଧୁସୂଦନଙ୍କ ଅତିକ୍ରମଣଶୀଳ ଦୃଷ୍ଟି, ଫକୀରମୋହନଙ୍କର ବ୍ୟକ୍ତିଗତ ଭାବସ୍ପନ୍ଦନର ରୂପାୟନ, ନନ୍ଦକିଶୋରଙ୍କ ପଲ୍ଲୀପ୍ରାଣତା, ଗଙ୍ଗାଧରଙ୍କ ପ୍ରକୃତିରେ ମାନବିକତାର ଆରୋପ ଆଦି ମଧ୍ୟରେ ରୋମାଣ୍ଟିକ୍ ଚେତନାର ବର୍ଣ୍ଣମୟ ବିଚ୍ଛୁରିତ ରୂପଟିକୁ ବୁଝିହୁଏ । ପୁଣି ପରବର୍ତ୍ତୀ ପର୍ଯ୍ୟାୟରେ କବି ସଚି ରାଉତରାୟଙ୍କଠାରୁ ଗୁରୁପ୍ରସାଦ, ରମାକାନ୍ତ, ସୀତାକାନ୍ତ, ରାଜେନ୍ଦ୍ର, ସୌଭାଗ୍ୟ ଆଦି ସମସାମୟିକ ଅନେକ କବିଙ୍କ ରଚନାରେ ରୋମାଣ୍ଟିକ୍ ଭାବର ବହୁଳ ଉପସ୍ଥିତି ସତ୍ତ୍ୱେ ସେମାନଙ୍କ କବିତାର ସ୍ୱତନ୍ତ୍ର ସ୍ୱାଦ ବାରି ହେଉଥିବା ରୋମାଣ୍ଟିକ୍ ଚେତନାର ଐକ୍ୟ ଓ ବୈଭିନ୍ନ୍ୟକୁ ବୁଝାଏ । କାରଣ ଏହିସବୁ କବିତାରେ ଭାବପ୍ରକାଶ ମଧ୍ୟରେ ବ୍ୟକ୍ତିର ନିଜସ୍ୱ ଅଭିଜ୍ଞତା ଓ କଳ୍ପନାନୁରଞ୍ଜିତ ସ୍ୱାଧୀନ ଆବେଗ ପରିପୁଷ୍ଟ ହୋଇଥାଏ ।

ସମଗ୍ର ରୋମାଣ୍ଟିକ୍ ସାହିତ୍ୟର ମୂଳପିଣ୍ଡରେ ଗୋଟିଏ ଗୁଣର ଅବସ୍ଥିତି ଅପରିହାର୍ଯ୍ୟ—ତାହା ହେଲି ବ୍ୟକ୍ତିର ଗୁରୁତ୍ୱ । ଏହାକୁ ବ୍ୟକ୍ତିବାଦ ବା ବ୍ୟକ୍ତିକତା କହିଲେ ସ୍ପଷ୍ଟ ହେବ । ଏଥିରେ ବ୍ୟକ୍ତିର ଅନୁଭବ, ଚିନ୍ତା ଓ କଳ୍ପନାର ଗୁରୁତ୍ୱ ସର୍ବାଦୌ ସ୍ୱୀକୃତ । ଏହି ବ୍ୟକ୍ତିବାଦକୁ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରାଯାଇପାରେ । ବ୍ୟକ୍ତି ଜୀବନରେ ତା'ର ସ୍ୱସତ୍ତାକୁ ବା ନିଜକୁ ସର୍ବଶ୍ରେଷ୍ଠ ଗୁରୁତ୍ୱ ଦେବାହିଁ ବ୍ୟକ୍ତିବାଦ । ଅଷ୍ଟାଦଶ ଶତକର ଶେଷ ଓ ଊନବିଂଶ ଶତକର ପ୍ରାରମ୍ଭରେ ୟୁରୋପୀୟ ସାହିତ୍ୟରେ ପ୍ରକାଶିତ ରୋମାଣ୍ଟିକ୍ ଚେତନା ପ୍ରାୟ ଅନୁରୂପ ଭାବେ ଊନବିଂଶ ଶତାବ୍ଦୀର ଶେଷ ଦଶକରେ ରଚିତ ଓଡ଼ିଆ କାବ୍ୟକବିତା ମଧ୍ୟରେ ପ୍ରକାଶ ଲାଭ କରେ । ଏହି କାଳରେ ବ୍ୟକ୍ତିବାଦର ଗୁରୁତ୍ୱ ସର୍ବପ୍ରଥମେ ସ୍ୱୀକୃତ ହେବାର ଦେଖିବାକୁ ମିଳେ । ୟୁରୋପ ମାଟିରେ ରୋମାଣ୍ଟିକ୍ ଚେତନାର ଅଭ୍ୟୁଦୟ ପାଇଁ ଏକ ଇତିହାସ ଅଛି । ମାତ୍ର ଓଡ଼ିଶାରେ ଏହି ଅଭ୍ୟୁଦୟର ଇତିହାସ କିଛିଟା ଭିନ୍ନ ଓ ଅନ୍ୟ ସମସ୍ତ ପ୍ରାନ୍ତୀୟ ଭାରତୀୟ ସାହିତ୍ୟରେ ଏହାର ଇତିହାସ

ପ୍ରାପ୍ତ ଓଡ଼ିଆ ସାହିତ୍ୟର ଅନୁରୂପ । ଭାରତୀୟ ଭୂମିରେ ଇଂରାଜୀ ଶିକ୍ଷା, ସଭ୍ୟତାର ପ୍ରସାର ଓ ନୂତନ ସାଂସ୍କୃତିକ ଦୃଷ୍ଟିଭଙ୍ଗୀ, ରାଜନୀତିକ ବିପ୍ଳବ, ବ୍ୟକ୍ତିଚିନ୍ତାରେ ଉଦୟ ହୋଇ-ଥିବା ଇଂରାଜୀ ଶାସନରୁ ମୁକ୍ତି ନିମିତ୍ତ ବ୍ୟାକୁଳତା ଇତ୍ୟାଦି ରୋମାଣ୍ଟିକ୍ ଚେତନାର ଅଭ୍ୟୁଦୟର ମୁଖ୍ୟ କାରଣ ।

ମଧ୍ୟ ଯୁଗରେ ସାମନ୍ତବାଦୀ ଶାସନର ଅର୍ଗଳରେ ବ୍ୟକ୍ତିର ଇଚ୍ଛା, ଅଭିଳାଷ, ସମଷ୍ଟି, ଶାସକର ଇଚ୍ଛାନୁରୂପ ହୋଇ ପଡ଼ୁଥିଲା । ସ୍ୱ-ଇଚ୍ଛାକୁ ସମର୍ପଣ କରିଦେବା ଦ୍ୱାରା ବ୍ୟକ୍ତିକୁ ନିଜପାଇଁ ନିଜେ ଦାୟୀ ହେବାକୁ ପଡ଼ୁନଥିଲା—ସେ ସମଷ୍ଟିର ଅଂଶ ହୋଇ ରହୁଥିଲା । ବ୍ୟକ୍ତିବାଦର ବିକାଶ ଘଟିବାରୁ ପୁରୁଣା ପଦ୍ଧତିର ଡୋରଟି ଛିଣ୍ଡିଗଲା । ବ୍ୟକ୍ତି ଆଉ ନିଶ୍ଚିନ୍ତ ରହିପାରିଲା ନାହିଁ । ବ୍ୟକ୍ତିବାଦ ବ୍ୟକ୍ତିର ନିଜସ୍ୱ ଅଧିକାର ଜାହିର କରିବାକୁ ସମଷ୍ଟିର ଜାଲରୁ ଛଡ଼ାଇ ପକାଇଲା । ନିଜ ଇଚ୍ଛାକୁ ନିଜ ଜୀବନର ଗତିକୁ ନିଜେ ସାବ୍ୟସ୍ତ କଲା । ଅବଶ୍ୟ ଏଥିପାଇଁ ତାକୁ ସମଷ୍ଟିର ନିରାପତ୍ତାବୋଧରୁ ବଞ୍ଚିତ ହରାଇବାକୁ ପଡ଼ିଲା । ନିଜ ବିଚାର ଓ କର୍ମଧାରାର ପରିଣତିପାଇଁ ସେ ନିଜେ ଦାୟୀ ରହିଲା । ତେଣୁ କାର୍ଯ୍ୟଟି ଭଲ କି ମନ୍ଦ, ବିଚାରଟି ଠିକ୍ କି ଭୁଲ୍, ଏ ସବୁକୁ ସେ ନିଜ ଦୃଷ୍ଟିକୋଣରୁ ଦେଖିଲା । ତା' ପାଇଁ ଆଉ ସ୍ଥିର ନିର୍ଦ୍ଦିଷ୍ଟ ଜୀବନଧାରା ବୋଲି କିଛି ରହିଲା ନାହିଁ । ନିଜ ଭିତରେ ଏକପ୍ରକାର ନିଶ୍ଚିତତା ଖୋଜିବାକୁ ଲାଗିଲା ସେ । ତେଣୁ ରୋମାଣ୍ଟିକ୍ କବିମାନେ ଏଭଳି ଏକ ଶୃଙ୍ଖଳା ଖୋଜିଲେ, ଯାହାର ବାହ୍ୟଜଗତ ଏବଂ ଯୁକ୍ତିପ୍ରବଣତା ସହ ନିବିଡ଼ ସମ୍ପର୍କ ନରହି ଅନ୍ତର୍ଜଗତ ଓ କଳ୍ପନା-ପ୍ରବଣତା ସହ ଅଧିକ ନିକଟ ସମ୍ପର୍କ ରହିଲା । ସେଥିପାଇଁ ରୋମାଣ୍ଟିକ୍ ରଚନାରେ ମଣିଷ ଜାତି ନୁହେଁ, ଏକକ ମଣିଷ ହିଁ କେନ୍ଦ୍ରରେ ଅବସ୍ଥାନ କଲା । ବ୍ୟକ୍ତିଠାରେ ଗୁରୁତ୍ୱାରୋପ ଯୋଗୁ ହିଁ ଏହି ସମୟରେ ସ୍ୱୀକାରୋକ୍ତିମୂଳକ ରଚନା ଓ ଆତ୍ମଜୀବନ ଚରିତ ରଚନାର ପ୍ରାଧାନ୍ୟ ବଢ଼ିବାରେ ଲାଗିଲା । ଓଡ଼ିଆ କାବ୍ୟ କ୍ଷେତ୍ରରେ ନୂତନ ଚମତ୍କାରପ୍ରଦ ଚରିତ୍ରର ସଂଯୋଜନା, ରାଧାନାଥଙ୍କ କାବ୍ୟରେ ଆହରଣଶୀଳତା ଓ ମଧୁସୂଦନଙ୍କ ଖଣ୍ଡ କବିତାରେ ବ୍ୟକ୍ତିବାଦୀ ଅନୁଭୂତି ଓ ଫକୀରମୋହନଙ୍କ ଆତ୍ମଜୀବନୀ ରଚନାର ସୂତ୍ରପାତ ହେଲା । ଫକୀରମୋହନଙ୍କ ଆତ୍ମଜୀବନ ଚରିତ ଏହାର ଏକ ସଫଳ ପରିଣତି ।

### ବ୍ୟକ୍ତିବାଦର ପ୍ରତିଷ୍ଠା

ରୋମାଣ୍ଟିକ୍ ରଚନାରେ ସରଚକ ଆଂଶିକ ଭାବେ ଅବଗୁଣ୍ଠିତ ଆତ୍ମଚରିତ୍ରଣ ମାଧ୍ୟମରେ ଅହଂର ପ୍ରତିଷ୍ଠା କରିବାରେ ସଫଳ ହେଲା । ଏହି ଆତ୍ମଚରିତ୍ରଣ ଅବଶ୍ୟ ବ୍ୟକ୍ତିବାଦୀ ଚେତନାର ବୈଭିନ୍ନ୍ୟ ନେଇ ପ୍ରକାଶିତ ହେଲା । ବ୍ୟକ୍ତିବାଦର ପ୍ରଭାବ ଦ୍ୱାରା ବ୍ୟକ୍ତିର ତା ନିଜପ୍ରତି ନୂଆ ପ୍ରକାର ଧାରଣା ଜନ୍ମିଲା, ନିଜପ୍ରତି ଆଗ୍ରହ ସୃଷ୍ଟିହେଲା । ନିଜର ଚିନ୍ତାଧାରା, ପ୍ରତିକ୍ରିୟା ଓ ଅନୁଭବକୁ ସେ ବିଶ୍ଳେଷଣ କରିବାରେ ଲାଗିଲା ।

ରୋମାଣ୍ଟିକ୍ କବି ବହିର୍ଜଗତକୁ ତା'ର ନିଜ ଅହଂର ଦର୍ପଣ ମାଧ୍ୟମରେ ଦେଖିଲା । ଘଟଣା ଓ ଦୃଶ୍ୟ ପ୍ରକୃତରେ କଅଣ, ସେଇଟା ଗୁରୁତ୍ୱପୂର୍ଣ୍ଣ ନ ହୋଇ ଘଟଣା ଓ ଦୃଶ୍ୟ ତା'ର ଚକ୍ଷୁ ଓ ହୃଦୟ ସମକ୍ଷରେ ଯେଉଁଳି ପ୍ରତିଭାତ ହେଲା, ତାହାହିଁ ଗୁରୁତ୍ୱପୂର୍ଣ୍ଣ ହେଲା । ତେଣୁ ଉପଲବ୍ଧିର ମାଧ୍ୟମ ଭାବେ କଳ୍ପନାର ଗୁରୁତ୍ୱ ସ୍ୱୀକୃତ ହେଲା । ବ୍ୟକ୍ତିର ଅହଂ ହେଲା ରୋମାଣ୍ଟିକ୍ କବି ପାଇଁ ବିଶ୍ୱର କେନ୍ଦ୍ରବିନ୍ଦୁ । ଆମେ ଯାହା ଦେଖୁ, ଶୁଣୁ, ଅନୁଭବ କରୁ ଓ ସ୍ପର୍ଶ କରୁ, ସେସବୁ ଆମରି ଭିତରେ ରହିଛି—ଏହା ହେଲା ରୋମାଣ୍ଟିକ୍ ବ୍ୟକ୍ତିବାଦର ଉଚ୍ଚାରଣ । ତେଣୁ ରୋମାଣ୍ଟିକ୍‌ମାନେ ଆକ୍ଷରିକ ଭାବେ ଆତ୍ମକୈନ୍ଦ୍ରିକ । ବ୍ୟକ୍ତିର ଏହି ନୂତନ ସମୃଦ୍ଧି ଯୋଗୁ ବ୍ୟକ୍ତିବାଦର ଅସାଧାରଣତା ଅଗ୍ନି ସହ ତୁଳନୀୟ । କାରଣ ରୋମାଣ୍ଟିକ୍ ଆତ୍ମକୈନ୍ଦ୍ରିକତା ଏତେ ପ୍ରବଳ ହୁଏ ଯେ, ଏହା ଖୁବ୍ ଶୀଘ୍ର ଅଗ୍ନି ପରି ବ୍ୟାପିଯାଏ । ସାମ୍ନାରେ ଯାହା ପଡ଼େ, ସବୁକିଛିକୁ ଚରିଯିବାର କ୍ଷମତା ତା'ର ଥାଏ । କେବଳ ଲୋକଙ୍କ ଜୀବନ ନୁହେଁ—କବିତା, କଳା ଓ ପରିଶେଷରେ ଦେଶକୁ ମଧ୍ୟ ଚରିଯାଇପାରେ । ତେଣୁ ବ୍ୟକ୍ତିବାଦ ବ୍ୟକ୍ତି-ସର୍ବସ୍ୱତାରେ ପରିଣତ ହେବା କଳାସୃଷ୍ଟି ପକ୍ଷେ ସ୍ପୃହଣୀୟ ନୁହେଁ ।

ଇଂରାଜୀ ରୋମାଣ୍ଟିକ୍ କବିମାନେ କିନ୍ତୁ ଏହି ବ୍ୟକ୍ତିବାଦ ବିଷୟରେ କିଛି ଲେଖି ନାହାନ୍ତି । ତତ୍ତ୍ୱାଲୋଚନା କାଳରେ କଳାତ୍ମକ ଶୈଳୀ ଓ ପ୍ରକାଶଭଙ୍ଗୀ ବିଷୟରେ ଅନୁସନ୍ଧାନ କରିଛନ୍ତି ଓ୍ୱାର୍ଡସ୍‌ଓ୍ୱାର୍ଥ । କଳ୍ପନାର ଗୁଣକୁ ଉଖାରି ଖୋଜିଛନ୍ତି କଲେରିଜ୍ ଓ ସମାଜରେ କବିତାର ଭୂମିକା ବିଷୟରେ ଭାବିଛନ୍ତି ଶେଲି । ଏହି କବିଗଣ ନିଜ ନିଜ ବାଟରେ ଚିନ୍ତା କଲାବେଳେ ଚିନ୍ତାରେ ବୈଭିନ୍ନ୍ୟ ଦେଖାଦେଇଛି ଓ ସେମାନେ ଆରିଷ୍ଟଟଲ୍‌ଙ୍କ ମତବାଦକୁ ଅସ୍ୱୀକାର କରିଛନ୍ତି । ଆରିଷ୍ଟଟଲ୍ ଚାହୁଁଥିଲେ କବି ତା'ର ବ୍ୟକ୍ତିବାଦ ସହ ବିଶ୍ୱକୁ ସଂପୃକ୍ତ କରୁ, ଅର୍ଥାତ୍ ବ୍ୟକ୍ତିବାଦକୁ ଗୁରୁତ୍ୱ ନ ଦିଆଯିବାର ସପକ୍ଷରେ ତାଙ୍କର ମତ ଉଦ୍ଦିଷ୍ଟ । କିନ୍ତୁ ରୋମାଣ୍ଟିକ୍ କବିମାନେ ନିଜ ବିଷୟରେ ଖୁବ୍ ବେଶି କହିବାକୁ ପସନ୍ଦ କରୁଥିଲେ । ତଥାପି ଓ୍ୱାର୍ଡସ୍‌ଓ୍ୱାର୍ଥ ଏକଥା ବି ଅନୁଭବ କରୁଥିଲେ ଯେ, ଜଣେ ବ୍ୟକ୍ତି ନିଜ ବିଷୟରେ ଏତେ ବେଶି କହିବା ସାହିତ୍ୟର ଇତିହାସରେ ଆଗରୁ କେବେ ଘଟି ନ ଥିଲା । ସେ କହୁଥିଲେ, ରୋମାଣ୍ଟିକ୍ କବି ଜଣେ ମଣିଷ, ଯେ କି ଅନ୍ୟ ମଣିଷଙ୍କୁ କିଛି କହେ ଏବଂ ଅନ୍ୟ ମଣିଷଙ୍କ ଠାରୁ ସେ ଭିନ୍ନ ନୁହେଁ । କେବଳ ଯାହା ତା'ର ଅବବୋଧ କ୍ଷମତା ଢେର ଜୀବନ୍ତ ଓ କଳ୍ପନାଶକ୍ତି ଅସାଧାରଣ ଏବଂ ସେ ଅଧିକତର ଉଚ୍ଚାରଣ କ୍ଷମତାର ଅଧିକାରୀ । ଏଥିରୁ ଜଣାଯିବ ଯେ, ଓ୍ୱାର୍ଡସ୍‌ଓ୍ୱାର୍ଥ ରୋମାଣ୍ଟିକ୍ ବ୍ୟକ୍ତିବାଦର ଗଣତାନ୍ତ୍ରିକତା ଓ ସ୍ୱଭାବସୁଲଭ ସମ୍ଭ୍ରମ ଉପରେ ବିଶ୍ୱାସ କରୁଥିଲେ । ଫଳତଃ ଉଗ୍ର ବ୍ୟକ୍ତିବାଦ ବା ବ୍ୟକ୍ତିସର୍ବସ୍ୱତାକୁ ସେ ସ୍ୱୀକାର କରୁନଥିଲେ ।

**ଓଡ଼ିଆ କାବ୍ୟକବିତା ଜଗତରେ ଏହାର ସ୍ଫୁରଣ ଓ ପ୍ରତିଷ୍ଠା**

ଓଡ଼ିଆ ମଧ୍ୟଯୁଗୀୟ କାବ୍ୟଧାରାର ନିୟମନିର୍ଜିତ ଚରିତ୍ରମାନଙ୍କରୁ ଓହରି ଆସି ପ୍ରଥମେ ନିଜ ବ୍ୟକ୍ତିତ୍ୱର ପ୍ରତିଷ୍ଠା କରିବାକୁ ଆଗେଇ ଆସିଲେ ରାଧାନାଥଙ୍କ କାବ୍ୟଚରିତ୍ର-ମାନେ । ସେମାନଙ୍କଠାରେ ବ୍ୟକ୍ତିବାଦର ବିକାଶ ଘଟିଥିବାର ଦେଖିବାକୁ ମିଳିଲା । ଦେଶ, ଜାତି, କୁଳ, ମାନ, ସମ୍ଭ୍ରମ ଓ ନୀତିନିୟମ ବହିର୍ଭୂତ ଚରିତ୍ରଗଣ ସ୍ୱ-ଆଶା ଆକାଙ୍‌କ୍ଷା, ବିଚାର ଓ ଚିନ୍ତାର ଅଭିନବତ୍ୱ ପ୍ରତିଷ୍ଠା କରିବା ନିମିତ୍ତ ଆଗଭର ହେଲେ । କେଦାରଗୌରୀଙ୍କ ବିହ୍ୱଳ ପ୍ରେମ ସମ୍ପୃକ୍ତ ସାହସିକତା ଚନ୍ଦ୍ରଭାଗାର ଐକାନ୍ତିକ ଚପଳ ଜୀବନଯାପନ, ଜୟନ୍ତ ଓ ଉଷାଙ୍କ ଚରିତ୍ରର ଅଭିନବତ୍ୱ, ଅଭୂତ ବିବାହ ପଣ, ପାର୍ବତୀଙ୍କ ଦୃଢ଼ ବିଚାରଧାରାର ପ୍ରତିଷ୍ଠା ତଥା ନନ୍ଦିକାଙ୍କର ସ୍ୱଚ୍ଛନ୍ଦହୃଦୟାବେଗ ଦ୍ୱାରା ନିର୍ଦ୍ଦେଶିତ ମାର୍ଗରେ ଆଗେଇ ଚାଲିବା ମାଧ୍ୟମରେ ସାମନ୍ତବାଦୀ, ନିର୍ଦ୍ଦିଷ୍ଟ ଗ୍ରାଞ୍ଚରେ ଭିଆରି ଚରିତ୍ରମାନଙ୍କଠାରୁ ଏମାନେ ପୃଥକ୍ ଜଣାପଡ଼ିଲେ । ସ୍ୱଚିନ୍ତା ଓ କର୍ମ ମାଧ୍ୟମରେ ନୂତନତ୍ୱ ପ୍ରଦର୍ଶନ କଲେ । ଗଙ୍ଗେଶ୍ୱରଙ୍କ ପଟ୍ଟମହିଷୀ ପାର୍ବତୀ ପାରମ୍ପରିକ ଓଡ଼ିଆ ରାଣୀଙ୍କ ଚରିତ୍ରଠାରୁ ଭିନ୍ନ ବାଟରେ ଯାଇ ନିଜର ଦୃଢ଼ତା ପ୍ରଦର୍ଶନ କଲେ, ଯେପରି ନନ୍ଦିକା ରାଜକନ୍ୟାର ସମ୍ଭ୍ରମକୁ ଗୁରୁତ୍ୱ ନ ଦେଇ ଆପଣାର ହୃଦୟାବେଗକୁ ପ୍ରାଧାନ୍ୟ ଦେଲେ । ଉଷାଙ୍କ ଅଭୂତ ବିବାହପଣ ମାଧ୍ୟମରେ ଏହି ବ୍ୟକ୍ତିବାଦର ସ୍ୱର ଧ୍ୱନିତ ହୋଇ ଉଠିଲା । ରାଧାନାଥଙ୍କ କାବ୍ୟଦୃଷ୍ଟି ଆହରଣଶୀଳ ଥିଲେ ହେଁ ସେହି ଦୃଷ୍ଟି ଏବଂବିଧ ନୂତନ ବ୍ୟକ୍ତିବାଦୀ ଚରିତ୍ରକୁ ହିଁ ଗ୍ରହଣ କରିଥିଲା । ଏହିପରି ରାଧାନାଥଙ୍କ ପ୍ରତ୍ୟେକ କାବ୍ୟର ଚରିତ୍ରଗଣ ନିଜ ନିଜ ଗୁଣରେ ବ୍ୟକ୍ତିତ୍ୱର ପ୍ରତିଷ୍ଠା ଦିଗରେ ସ୍ୱାତନ୍ତ୍ର୍ୟ ଅର୍ଜନ କଲେ । ରାଜା ଗଙ୍ଗେଶ୍ୱରଙ୍କ ନିକଟରେ ଆତ୍ମମର୍ଯ୍ୟାଦା ତୁଚ୍ଛ । ନନ୍ଦିକାଙ୍କ ନିକଟରେ ଦେଶ ତୁଚ୍ଛ । ପାର୍ବତୀଙ୍କଠାରେ ପରମ୍ପରା ମୂଲ୍ୟହୀନ । ଉଷାଙ୍କଠାରେ ନାରୀର ସ୍ୱାଭାବିକ ସମ୍ବେଦନଶୀଳତା ପରାସ୍ତ ।

ଇଂରେଜ କବିମାନେ ଉଗ୍ର ବ୍ୟକ୍ତିବାଦରେ ବିଶ୍ୱାସ କରୁଥିଲେ ହେଁ ତାହାର ପ୍ରତିଷ୍ଠା ଦିଗରେ ସେମାନେ ଏତେ ଧ୍ୟାନ ଦେଇ ନ ଥିଲେ । କାରଣ ତାଙ୍କ ସମାଜରେ ପରମ୍ପରାରେ ବ୍ୟକ୍ତିବାଦୀ ସ୍ୱାଧୀନତା ଅନେକାଂଶରେ ପୂର୍ବରୁ ଉପସ୍ଥିତ ଥିଲା । ତେଣୁ ରୋମାଣ୍ଟିକ୍ ଚେତନା ମାଧ୍ୟମରେ ବ୍ୟକ୍ତିବାଦର ପ୍ରତିଷ୍ଠା ନିମିତ୍ତ ସେମାନଙ୍କୁ ବେଶି କିଛି ବୈପ୍ଳବିକତାକୁ ଆଶ୍ରୟ କରିବା ଆବଶ୍ୟକ ନ ଥିଲା । ସେଥିପାଇଁ ହିଁ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ବ୍ୟକ୍ତିବାଦକୁ ଅଧିକ ଗଣତାନ୍ତ୍ରିକ ଦୃଷ୍ଟିରେ ଦେଖିବାକୁ ଚାହିଁଥିଲେ । ଇଂଲଣ୍ଡର ପରମ୍ପରାରେ ବ୍ୟକ୍ତିଗତ ମତାମତ ଉପସ୍ଥାପନ, ବ୍ୟକ୍ତିଗତ ଇଚ୍ଛାର ପରିପୂରଣ ଦିଗରେ ସ୍ୱାଧୀନତା ରହିଥିଲା । ରାଜନୀତି ଓ ଧର୍ମଗତ ବିଶ୍ୱାସରେ କିଛିଟା ସ୍ଥାନୀୟ ଉଦାର ମନୋଭାବ ପ୍ରଚଳିତ ଥିଲା । ସେହି ତୁଳନାରେ ଭାରତ ଓ ଓଡ଼ିଶାର ସାହିତ୍ୟରେ ବ୍ୟକ୍ତିବାଦୀ ପ୍ରତିଷ୍ଠା ଖୁବ୍ ବିପ୍ଳବାତ୍ମକ ହୋଇ ଦେଖାଦେଇଥିଲା । ରୋମାଣ୍ଟିକ୍ ବ୍ୟକ୍ତିବାଦର ତୀବ୍ରତାକୁ ଗ୍ରହଣ କରିବାକୁ ଊନବିଂଶ ଶତାବ୍ଦୀର ଶେଷଭାଗର ଓଡ଼ିଆ

ସମାଜ-ଜୀବନ ପ୍ରସ୍ତୁତ ହୋଇ ନ ଥିଲା । ରାଧାନାଥଙ୍କ କାବ୍ୟ-ସାହିତ୍ୟର ସୃଷ୍ଟି କାଳକୁ ଓଡ଼ିଶାରେ ତଥାପି ରକ୍ଷଣଶୀଳ ଦୃଷ୍ଟିଭଙ୍ଗୀ ପ୍ରଚଳିତ ଥିଲା । ଯାହା ଅଛି ତାହା ଭଲ ଓ ବିଶୁଦ୍ଧ । ଯାହା ନାହିଁ ତାହା ମନ୍ଦ ଓ ଅସୁନ୍ଦର । ଏଭଳି ବିଶ୍ୱାସ ଲୋକମାନଙ୍କ ମନରେ ରହିଥିଲା । ସାମନ୍ତବାଦୀ ସଭ୍ୟତାର କାବ୍ୟ ରଚନା ପଦ୍ଧତି ଓ ତହିଁର ସାହିତ୍ୟରେ ଆଦର୍ଶ ଚରିତ୍ର ଅବତାରଣାର ଆବଶ୍ୟକତା ଖୁବ୍ ଗୁରୁତ୍ୱ ସହ ସ୍ୱୀକୃତ ହେଉଥିଲା । ଯାହା ଫଳରେ ସୂର୍ଯ୍ୟଙ୍କ କାମୁକତା, ରାଜା ଗଙ୍ଗେଶ୍ୱରଙ୍କ ପାଶବିକତା, ନନ୍ଦିକାଙ୍କର ପ୍ରେମବିହ୍ୱଳ ଅପରିଣାମଦର୍ଶିତା, ତତ୍କାଳୀନ ସମାଜରେ ଘୋର ଅପନନ୍ଦାର ସମ୍ମୁଖୀନ ହୋଇଥିଲା । ବ୍ୟକ୍ତିବାଦୀ ଚେତନାର ସ୍ୱାଧୀନ ବିଚାରଣ ନିମିତ୍ତ ଓଡ଼ିଶାରେ ସାହିତ୍ୟିକ ବାତାବରଣ ଖୁବ୍ ରକ୍ଷଣଶୀଳ ଥିଲା । ରାଜନୀତି କ୍ଷେତ୍ରରେ ପରାଧୀନତାର ଶୃଙ୍ଖଳ ତଥାପି ଥିଲା ବଳ-ବତ୍ତର । ତେଣୁ ନୂତନ ଚରିତ୍ର ଚିତ୍ରଣ ଓ ସ୍ୱାଧୀନ ଦୃଷ୍ଟିଭଙ୍ଗୀ ପ୍ରତି ଓଡ଼ିଶାର ସମାଜ ଅନେକଟା ପ୍ରତିକ୍ରିୟାଶୀଳ ହୋଇ ପଡ଼ିଥିଲା । ରାଧାନାଥଙ୍କ କାବ୍ୟର ଗଙ୍ଗେଶ୍ୱର, ପାର୍ବତୀ, ନନ୍ଦିକା, ସୂର୍ଯ୍ୟ ଆଦି ଚରିତ୍ରର ଆଚରଣ ପ୍ରଖର ବ୍ୟକ୍ତିବାଦୀ ଚେତନାର ପ୍ରଭାବରେ ଚିରାଚରିତ ଆଚରଣଧାରାଠାରୁ ସ୍ୱତନ୍ତ୍ର ହୋଇଗଲା । ଏଭଳି ଚରିତ୍ରର ଗ୍ରହଣପାଇଁ ସେତେବେଳେ ଓଡ଼ିଆ ମାଟି ପ୍ରସ୍ତୁତ ହୋଇ ନ ଥିଲା । ଫଳରେ ସେ କାଳରେ ରାଧାନାଥ ସାହିତ୍ୟ ସମାଲୋଚକମାନଙ୍କ ଦ୍ୱାରା କମ୍ ନିନ୍ଦିତ ଓ ଭର୍ତ୍ସିତ ହୋଇ ନଥିଲେ । ସେ ସବୁ ଚରିତ୍ରର ସୃଷ୍ଟି ହେତୁ ସମାଜରେ ଯେଉଁ ରୁଚିଗତ ବିପ୍ଲବ ଦେଖାଦେଲା, ତାହା ଗୋଷ୍ଠୀ ନିକଟରେ ବ୍ୟକ୍ତିକୁ ଗୁରୁତ୍ୱସ୍ଥାନ ମନେକଲା ।

**ଇନ୍ଦ୍ରଧନୁ—ବିଜୁଳି-ବିବାଦ—**

ଓଡ଼ିଆ କାବ୍ୟ କବିତାରେ ବ୍ୟକ୍ତିବାଦୀ ଚରିତ୍ରର ପ୍ରତିଷ୍ଠାର ପୃଷ୍ଠପଟରେ ରହିଛି ଐତିହାସିକ ଇନ୍ଦ୍ରଧନୁ ବିଜୁଳି ବିବାଦ । ପାରମ୍ପରିକ ବା ଚିରାଚରିତ ଆଚରଣ ଧାରାଠାରୁ ସ୍ୱତନ୍ତ୍ର ହୋଇଥିବା ଉଷା, ପାର୍ବତୀ, ନନ୍ଦିକା ଇତ୍ୟାଦି ଚରିତ୍ରରେ ପାରମ୍ପରିକ ନାରୀର ସହନଶୀଳତା, ଅସହାୟତା, ମର୍ଯ୍ୟାଦାବୋଧ, ଆତ୍ମତ୍ୟାଗ ଇତ୍ୟାଦି ବିଧିବିଧାନ ଏମାନଙ୍କ ଠାରେ ନାହିଁ । ତେଣୁ ଇନ୍ଦ୍ରଧନୁ ବିଜୁଳି ବିବାଦ ତୀବ୍ରତର ହୋଇଛି ଓ ଏ ବିବାଦ ପୂର୍ବରୁ ମଧ୍ୟ ରାଧାନାଥଙ୍କୁ ଆଲୋଚକଗଣ ତୀବ୍ର ଆକ୍ଷେପ କରିଛନ୍ତି । ନନ୍ଦିକେଶ୍ୱରୀ ସମ୍ପର୍କରେ କୁହାଯାଇଛି—'ଏହି କାବ୍ୟରେ ରାଧାନାଥଙ୍କ କଳ୍ପନାଶକ୍ତି ଅଶ୍ରାବ୍ୟ, ଅପାଠ୍ୟ, ଜଘନ୍ୟ, ନୀଚ ଓ କଦର୍ଯ୍ୟ ଆଖ୍ୟାୟିକାମାନଙ୍କର ଜନ୍ମଦାତ୍ରୀ ଅଟେ ।' ଇନ୍ଦ୍ରଧନୁ ବିଜୁଳି ବିବାଦ (୧୮୯୩-୯୪)ର ଆରମ୍ଭ ପୂର୍ବରୁ ଏମିତି ଅନ୍ୟ ଏକ ଆନ୍ଦୋଳନ ଉପେନ୍ଦ୍ର—ରାଧାନାଥଙ୍କୁ କେନ୍ଦ୍ରକରି ମୁଣ୍ଡ ଟେକିବାରୁ ମନେହୁଏ 'ମହାଯାତ୍ରା କାବ୍ୟ ମଧ୍ୟ ଅସମ୍ପୂର୍ଣ୍ଣ ରହିଗଲା ।' ପାର୍ବତୀ କାବ୍ୟ ମଧ୍ୟ ଏହିପରି କାରଣରୁ ଅସମ୍ପୂର୍ଣ୍ଣ ରହିଲା । 'ସମ୍ବଲପୁର ହିତୈଷିଣୀ' ପତ୍ରିକାରେ 'ପାର୍ବତୀ' କାବ୍ୟ ଉପରେ ସମାଲୋଚନା ହେଲା—'ରାଧାନାଥବାବୁ କେଉଁ

ଉଦ୍ଦେଶ୍ୟ ସାଧନାର୍ଥ ସାରସ୍ୱତ ଓଡ଼ିଶାର ବର୍ତ୍ତମାନ ଇତିହାସରୁ ଏହି ଜଘନ୍ୟ ପାପମୟ ବିଷୟ ଉଦ୍ଧାର କରି କବିତାମୟୀ ପୁସ୍ତିକାରେ ଲିପିବଦ୍ଧ କରିବାକୁ ପ୍ରୟାସ ପାଇଅଛନ୍ତି ତାହା ଆମ୍ଭେମାନେ ଅନୁମାନ ସୁଦ୍ଧା କରିପାରୁ ନାହୁଁ । ଆମ୍ଭେମାନେ କେବଳ ଏତିକି କହିବୁ ଯେ, ଏଭଳି ବିଷୟ ଲିପିବଦ୍ଧ କରିବାକୁ ଯାଇ ତାଙ୍କର ସୁନ୍ଦର ଲେଖନୀ କଳଙ୍କିତ ହୋଇଅଛି ।' ଦୀର୍ଘ ଦଶ ବର୍ଷର ଏହି ବିବାଦର ପରିଣତି ସ୍ୱରୂପ ଇନ୍ଦ୍ରଧନୁ-ବିଜୁଳି ବିବାଦ ପ୍ରକାଶ ଲାଭକଲା । ଏସବୁ ସତ୍ତ୍ୱେ ପୁରୁଣା ପରମ୍ପରା ଉପରେ ରୋମାଣ୍ଟିକ୍ କାବ୍ୟସୌଧ ବ୍ୟକ୍ତିବାଦର ପ୍ରାଣ ପ୍ରତିଷ୍ଠା କରିଥିଲା । କବିତା ଗୋଟିଏ ଏକକ ବ୍ୟକ୍ତିତ୍ୱର ସ୍ୱତନ୍ତ୍ର ଅଭିଜ୍ଞତା ରୂପେ ସମ୍ମାନିତ ହେଲା—କାରଣ ସେହି ଅଭିଜ୍ଞତା ସତ୍ୟାଶ୍ରୟୀ ଅନ୍ତର୍ଦୃଷ୍ଟି ଦ୍ୱାରା ପରିପୁଷ୍ଟ ହୋଇଥିଲା ।

ଇଂରାଜୀ ରୋମାଣ୍ଟିକ୍ କବିମାନେ ତତ୍ତ୍ୱାଲୋଚନା କ୍ଷେତ୍ରରେ ଖୁବ୍ ସକ୍ରିୟ ନ ହୋଇଥିଲେ ବି ଘରଚନା କ୍ଷେତ୍ରରେ ସେମାନେ ଖୁବ୍ ବ୍ୟକ୍ତିବାଦୀ । ସେମାନଙ୍କଠାରେ ପରସ୍ପରର ପରିପୂରକ ଏକ ତତ୍ତ୍ୱ-ଜିଜ୍ଞାସା ଅନୁପସ୍ଥିତ ଥିଲା । ସ୍ୱତନ୍ତ୍ର ଗୋଷ୍ଠୀ ତିଆରି କରିବାରେ ସେମାନେ ଥିଲେ ଅନିଚ୍ଛୁକ । ତେଣୁ ସେମାନଙ୍କ ଭାବଧାରାର ଅନ୍ତଃସ୍ୱାଧୀନତା ଅପ୍ରତିହତ ଥିଲା । ବ୍ୟକ୍ତି ଥିଲା ମୁଖ୍ୟ ଏବଂ ଏହି ବ୍ୟକ୍ତିବାଦର ପ୍ରାଧାନ୍ୟ ହେତୁ ରୋମାଣ୍ଟିକ୍ କବିମାନେ ଅପେକ୍ଷାକୃତ ପ୍ରଶସ୍ତ ପରିସର ମଧ୍ୟରେ ବିଭିନ୍ନ ପ୍ରକାଶଭଙ୍ଗୀ ଓ ଭାବଧାରାକୁ ଗୁରୁତ୍ୱ ପ୍ରଦାନ କରି ମଧ୍ୟ ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା କରିବାରେ ସମର୍ଥ ହୋଇଥିଲେ । ସେହିପରି ଓଡ଼ିଆ ରୋମାଣ୍ଟିକ୍ କବିମାନଙ୍କ ମଧ୍ୟରେ ରାଧାନାଥ, ମଧୁସୂଦନ, ଫକୀରମୋହନ, ନନ୍ଦକିଶୋର, ଗଙ୍ଗାଧର, ଗୋଦାବରୀଶ, ବୈକୁଣ୍ଠନାଥ ଆଦିଙ୍କ ରଚନା ପରସ୍ପରର ସ୍ୱତନ୍ତ୍ର ସ୍ୱାଦ ଓ ଗନ୍ଧ ନେଇ ପ୍ରତିଷ୍ଠିତ । ରାଧାନାଥଙ୍କ ପ୍ରକୃତିପ୍ରୀତି, ସ୍ୱଦେଶପ୍ରେମ, ଅଲୌକିକତାର ସଂଯୋଜନା ଓ ଦୀର୍ଘ କାବ୍ୟରଚନା ସାଙ୍ଗକୁ ମଧୁସୂଦନଙ୍କ ଅତୀନ୍ଦ୍ରିୟବାଦ ଓ ଗୀତିକବିତା ରଚନା, ଚତୁର୍ଦ୍ଦଶପଦୀ ରଚନା, ନନ୍ଦକିଶୋରଙ୍କ ପଲ୍ଲୀପ୍ରାଣତା, ଅତୀତ-ଆନୁଗତ୍ୟ ଓ ବିଷାଦ ତଥା ବୈକୁଣ୍ଠନାଥଙ୍କ ଗୋଲୋକ ପରିକଳ୍ପନା—ଉକ୍ତ କବିମାନଙ୍କ ଅନ୍ତର୍ଗତ ସ୍ୱାତନ୍ତ୍ର୍ୟ ଚିହ୍ନାଇବାକୁ ଯଥେଷ୍ଟ ହୋଇଥାଏ ।

ପାଦପୀଠ ଉପରେ ପ୍ରତିମୂର୍ତ୍ତି ରହିଲା ପରି କଳାକାର ମାନବିକତା ଉପରେ ଦଣ୍ଡାୟମାନ ହୋଇଥାଏ । ନିଜ ଭିତରେ ତା'ର ନାଭିକେନ୍ଦ୍ର ଥିବାରୁ କଳାକାର ଅନ୍ୟାନ୍ୟ ମଣିଷଠାରୁ ବେଶି ଅନୁଭବ-ପ୍ରବଣ । ଉପଲବ୍ଧିର ସ୍ୱତନ୍ତ୍ର ଶକ୍ତି ଯୋଗୁ ଓ ସାନ୍ଦ୍ର ଅଭିଜ୍ଞତା ନିମିତ୍ତ ଅଧିକ କ୍ଷମ ହୋଇଥିବାରୁ କଳାକାରର ଶୁଦ୍ଧ ଅନ୍ତର୍ଦୃଷ୍ଟି ଥାଏ, ଯାହା ସାଧାରଣ ମଣିଷର ଅନ୍ତର୍ଦୃଷ୍ଟି ଠାରୁ ଅଧିକ । ତୀବ୍ର ଓ ସ୍ୱଚ୍ଛ ଅତିକ୍ରମଣଶୀଳ ବାସ୍ତବତା ସହ ତା'ର ସମ୍ପର୍କ ନିବିଡ଼ତର । ତେଣୁ ଜୀବନର ଅର୍ଥ ଅବବୋଧ ନିମିତ୍ତ ସେ ଅଧିକ ପାରଙ୍ଗମ ଓ ଏହି ଅର୍ଥକୁ ସାଧାରଣଙ୍କ ନିକଟରେ ପହଞ୍ଚାଇବା ନିମିତ୍ତ ସେ

ଏକ ମାଧ୍ୟମ । ସେଥିପାଇଁ ଏହି ଧାରଣା ଓ ଭୂମିକା ହେତୁ କଳାକାର ଜଣେ ନେତା ପଦବାଚ୍ୟ—କଳାର ନୂଆ ଧର୍ମର ସେ ଜଣେ ପ୍ରବକ୍ତା । ସୃଜନକ୍ରିୟା ପାଇଁ କ୍ଷମତା ଥିବାରୁ ସେ ମଧ୍ୟ ସ୍ରଷ୍ଟାଙ୍କ ନିକଟବର୍ତ୍ତୀ ।

ଏହି କାଳରେ କବି ସୃଜନକ୍ରିୟା ମାଧ୍ୟମରେ କବିତାର ମୁକ୍ତ ପ୍ରବୃତ୍ତି ରୂପ ଦେବାର ସୁଯୋଗ ପାଇଲା । କବିତା କ୍ରମଶଃ ଅଭୂତ ଓ ନୂତନ ଅଭିଜ୍ଞତା ଏବଂ ଅଞ୍ଚଳର ଆବିଷ୍କାର ଓ ଉଦ୍‌ଘାଟନରେ ବ୍ରତୀ ହେଲା । ମୌଳିକତା ସ୍ୱୀକୃତ ହେବା ସହିତ ବ୍ୟକ୍ତିବାଦର ପ୍ରାଧାନ୍ୟ ସ୍ୱୀକୃତ ହେଲା । ସ୍ୱାଧୀନତା ଲାଭ ଓ ଯେ କୌଣସି ଧରାବନ୍ଧା ନିୟମର ପ୍ରତ୍ୟାଖ୍ୟାନ ମଧ୍ୟରେ ରୋମାଣ୍ଟିକ୍ ଚେତନା ଆତ୍ମପ୍ରକାଶ କଲା ଓ ବିକାଶଲାଭ କଲା । 'ମୁକ୍ତ', 'ମୌଳିକତା', 'ପ୍ରତିଭା', 'ସ୍ୱଭାବ', 'ସତ୍ୟ' ଇତ୍ୟାଦି ଶବ୍ଦ ତୀବ୍ର ବ୍ୟକ୍ତିବାଦକୁ ବୁଝାଇଲା । ପୁରୁଣା ଧାରା ଉପରେ ନୂଆ ଧାରାର ପ୍ରତିଷ୍ଠା ହେଲା ।

ରୋମାଣ୍ଟିକ୍ କାବ୍ୟ-ମାନସର ମୂଳଦୁଆରେ ଯେତେ ଅସାମଞ୍ଜସ୍ୟ ଥାଉନା କାହିଁକି, ତା'ର ମୂଳ ବ୍ୟକ୍ତିବାଦ କଳା ସୃଷ୍ଟିର ଶୈଳୀ ଓ ପୃଥିବୀ ପ୍ରତି ଦୃଷ୍ଟିକୋଣକୁ ପ୍ରଭାବିତ କଲା । ଏହା ଦ୍ୱାରା କଳା ସୃଷ୍ଟିର ମୂଳ, ସ୍ୱଭାବ ଓ କ୍ରିୟାଶୀଳତାର ଏକ ଆମୂଳ ପରିବର୍ତ୍ତନ ଘଟିଲା । ପୂର୍ବରୁ କଳା ନିୟମବଦ୍ଧ ଗୋଟିଏ ଗୁରୁତ୍ୱ ଓ ସାମର୍ଥ୍ୟକୁ ବୁଝାଉଥିଲା । କିନ୍ତୁ ବର୍ତ୍ତମାନ ତାହା ଗୋଟିଏ ଗୋପନ ରହସ୍ୟବେଷ୍ଟିତ ସ୍ୱତନ୍ତ୍ର ଅନୁଭୂତି-ସମ୍ଭୂତ ଅଭିଜ୍ଞତା ବା ପ୍ରେରଣାକୁ ବୁଝାଇଲା । ଏହି ପରିବର୍ତ୍ତନ କଳାକାରର ନୂତନ ଦୃଷ୍ଟିକୋଣରୁ ଉଦ୍ଭୂତ ହେଲା । ଏଣିକି କଳାକାର ଆଉ ଜ୍ଞାନର ପ୍ରବକ୍ତା ହୋଇ ରହିଲା ନାହିଁ । ବର୍ତ୍ତମାନ କଳାସୃଷ୍ଟି କଳାକାରର ବ୍ୟକ୍ତିବାଦର ପ୍ରତ୍ୟକ୍ଷ ପ୍ରକାଶ ରୂପେ ଆତ୍ମପ୍ରକାଶ କଲା । କଳା ସୃଷ୍ଟି ଆଉ କୌଣସି ପ୍ରଚଳିତ ଧାରାର ବଶବର୍ତ୍ତୀ ହୋଇ ରହିଲା ନାହିଁ । ଏବେ ସ୍ୱାଭାବିକତା ହିଁ (naturalness) ବ୍ୟକ୍ତିର ସ୍ୱାଧୀନତା ରୂପେ ସ୍ୱୀକୃତ ହେଲା ।

## ପ୍ରକୃତ ସହ ସଂପର୍କରେ ବ୍ୟକ୍ତିବାଦର ଭୂମିକା

ଚତୁଃପାର୍ଶ୍ୱର ବିଶ୍ୱ, ମୁଖ୍ୟତଃ ପ୍ରକୃତି ସହ ସମ୍ପର୍କ ରୋମାଣ୍ଟିକ୍ କବିର ବିଶୁଦ୍ଧ ବ୍ୟକ୍ତିବାଦୀ ଚେତନା ଦ୍ୱାରା ପ୍ରଭାବିତ ହୋଇଥାଏ । ଅବଶ୍ୟ ଏହି ସମ୍ପର୍କ କ୍ଷେତ୍ରରେ ରୋମାଣ୍ଟିକ୍ କବି ବିପୁଳତମ ଖ୍ୟାତି ଅର୍ଜନ କରିଛି । ଏପରିକି କେତେକ ରୋମାଣ୍ଟିକ୍ କବିତାକୁ ପ୍ରକୃତି କବିତା ବୋଲି ବୁଝି ଥାଆନ୍ତି । ପ୍ରକୃତି ଚେତନାମୂଳକ କବିତାରେ ବାହ୍ୟ ପ୍ରକୃତିର ପ୍ରବକ୍ତା ଏହି କବି ସ୍ୱବ୍ୟକ୍ତି ଚେତନାର ସ୍ଫୁରଣ ଘଟାଇବାର ସୁଯୋଗ ଲାଭ କରେ । ରୋମାଣ୍ଟିକ୍ ଯୁଗ ପୂର୍ବରୁ ପ୍ରକୃତିକୁ ଯନ୍ତ୍ର ରୂପରେ ଏବଂ ସୃଷ୍ଟିର ପ୍ରାରମ୍ଭ କାଳରୁ ଏ ଯାଏ ପ୍ରକୃତି କେତେକ ସ୍ଥିର ନିର୍ଦ୍ଦିଷ୍ଟ ନିୟମରେ ଚାଲୁଥିବାର ବିଶ୍ୱାସ କରାଯାଉଥିଲା । ଉଦାହରଣ ସ୍ୱରୂପ 'ଗଛ କଥା କହିପାରେ ନାହିଁ, ଚାଲିପାରେ ନାହିଁ'—

ଏହିପରି ବିଶ୍ୱାସ ରୋମାଣ୍ଟିକ୍ ପ୍ରକୃତି ଦୃଷ୍ଟି ହେତୁ ପରିବର୍ତ୍ତିତ ହେଲା । ବର୍ତ୍ତମାନ ପ୍ରକୃତି ନିୟତ ପରିବର୍ତ୍ତନଶୀଳ, ବିକାଶଶୀଳ, ନିଜସ୍ୱ ଶରୀର ଓ ଆତ୍ମାଧାରୀ ଜୀବନ୍ତ ରୂପେ ବିବେଚିତ ହେଲା । ଉଦାହରଣ ସ୍ୱରୂପ—ଗଛ ଲତା ମଣିଷ ଦୁଃଖରେ ସମ୍ବେଦନଶୀଳ ହୋଇ ଲୁହ ଝାଡ଼ି ପକାଇଲେ । ପବନ ଆବେଗମୟ ଆଲିଙ୍ଗନରେ ବେଢ଼ାଇ ଧରିବାକୁ ସମର୍ଥ ହେଲା । ପ୍ରକୃତି ପ୍ରତି ଏହି ବୈପ୍ଳବିକ ଦୃଷ୍ଟିପାତ ଦ୍ୱାରା କବିତା ହେଲା ଐଶ୍ୱର୍ଯ୍ୟ-ମଣ୍ଡିତ । ବିଜ୍ଞାନର ଯୁଗାନ୍ତକାରୀ ଗବେଷଣା ଓ ଆବିଷ୍କାର ଗତିଶୀଳ ପ୍ରକୃତି ଓ ତା'ର ଶକ୍ତି ବିଷୟରେ ସଚେତନତା ଯୋଗାଇ ଦେଇଥିଲା । ପ୍ରକୃତିର ଉପାଦାନଗଣ ତେଣୁ ନିଷ୍ପ୍ରାଣ ନହୋଇ (ଗଛ, ଲତା, ବୁଦା, ପଥର, ତାରା ଇତ୍ୟାଦି) ପୃଥିବୀର ନିଷ୍ପ୍ରାଣୀକ ପ୍ରାଣୀ ଭାବେ, ମଣିଷ ପରି ସଜୀବ ଭାବେ ପରିଗଣିତ ହେଲେ ।

ଏଠାରେ ପ୍ରଶ୍ନ ଉଠେ ଯେ, ରୋମାଣ୍ଟିକ୍ କବିମାନେ କ'ଣ ପ୍ରକୃତରେ ପ୍ରକୃତିକୁ ରହସ୍ୟମୟ ଦୃଷ୍ଟିରେ ନିରୀକ୍ଷଣ କରି ଏତେ ବେଶି ପସନ୍ଦ କରି ଭଲ ପାଉଥିଲେ ? ସେମାନେ କ'ଣ ପ୍ରକୃତରେ ଯଥେଷ୍ଟ ଆତ୍ମଅନାସକ୍ତ ଓ ସମ୍ବେଦନଶୀଳ ଥିଲେ ଯାହାକି ପ୍ରକୃତିର ଆତ୍ମାକୁ ଛୁଇଁ ପାରିଥିଲେ ? ସେମାନଙ୍କ ବ୍ୟକ୍ତିବାଦୀ ଚେତନା ସେମାନଙ୍କୁ ନିଜେ ହିଁ ନିଜ ଜୀବନର କେନ୍ଦ୍ରବିନ୍ଦୁ ବୋଲି ଉଦ୍‌ବୁଦ୍ଧ କରାଇ ସେମାନଙ୍କ ଦୃଷ୍ଟିକୁ ସର୍ବଦା ଅନ୍ତର୍ମୁଖୀ କରୁଥିଲା ? ଯାହା ଅବଶ୍ୟ ଏକ ଜଟିଳ ପ୍ରଶ୍ନ, କାରଣ ପ୍ରକୃତି ପ୍ରତି ରୋମାଣ୍ଟିକ୍ କବିଙ୍କ ଦୃଷ୍ଟିକୋଣ ଖୁବ୍ ବ୍ୟାପକ ସ୍ତରରେ ପ୍ରକଟିତ । ତେବେ, ରୋମାଣ୍ଟିକ୍ କବିର ଅହଂ ଯେ ତାକୁ ବାହ୍ୟ ପୃଥିବୀ ଠାରୁ ଅଲଗା କରି ରଖିଛି—ଏହା ସବୁ ରୋମାଣ୍ଟିକ୍ କବି ପାଇଁ ସତ ନୁହେଁ । କୀଟ୍‌ସ୍ ପ୍ରକୃତି ପ୍ରତି ଓ ନିଜ ପ୍ରତି ଭାବପ୍ରବଣ ନଥିଲେ—ତାଙ୍କ ପତ୍ରାବଳୀରୁ ଜଣାଯାଏ ଯେ, ଅନାସକ୍ତ ମିଥ୍ୟା ଆବେଗ ସହିତ ଏକ ଆତ୍ମସମୀକ୍ଷାର ସାମର୍ଥ୍ୟ ତାଙ୍କର ଥିଲା । ବାଇରଣ୍ କେବେ ତାଙ୍କ ନିଜସ୍ୱ ଆବେଗରେ ସିକ୍ତ ହୋଇନାହିଁ । କବି ରାଧାନାଥ ଓ ଗଙ୍ଗାଧରଙ୍କ ପରି ମାନବର ଦୁଃଖ ଦୁର୍ଦ୍ଦଶାରେ ପ୍ରକୃତି ଅଂଶୀଦାର ହେବା କଥା କୀଟ୍‌ସ୍ ଭାବନ୍ତି ନାହିଁ । ବରଂ ପ୍ରକୃତିର ସ୍ୱଭାବ ଉଦାସୀନତା (ମଣିଷର ଦୁର୍ଦ୍ଦଶା ପ୍ରତି ପ୍ରକୃତିର ଅନବଧାନଜନିତ ଉଦାସୀନତା)କୁ ଗ୍ରହଣ କରିଥାଆନ୍ତି । ଓ୍ୱାର୍ଡସଓ୍ୱାର୍ଥ ପ୍ରକୃତି ଭିତରେ ଆଧ୍ୟାତ୍ମିକତା ଆବିଷ୍କାର କରିଛନ୍ତି । ପ୍ରକୃତି ରହସ୍ୟଗୁଣ ଉନ୍ମୋଚିତ କରିଛନ୍ତି ।

ମଣିଷ ସହ ପ୍ରକୃତିର ଯୋଗାଯୋଗ ନେଇ ରୋମାଣ୍ଟିକ୍‌ମାନଙ୍କର ଏକ ପ୍ରକାର ଧର୍ମବିଶ୍ୱାସ ରହିଛି । କଲେରିଜ୍ କହୁଥିଲେ, 'କବିର ହୃଦୟ ଓ ପ୍ରଜ୍ଞା ନିବିଡ଼ଭାବେ ଯୁକ୍ତ ହୋଇ ପ୍ରକୃତି ସହ ଏକୀଭୂତ ହେବା ଉଚିତ ।' ଏହି ଦୃଷ୍ଟିଭଙ୍ଗି ରୋମାଣ୍ଟିକ୍ କବିତାରେ ପ୍ରାୟ ପରିଦୃଷ୍ଟ ହୁଏ—ଏଠାରେ ପ୍ରକୃତି କବି ସହ ସତତ ସମ୍ବେଦନଶୀଳ, ତା'ର ସୁଖ ଦୁଃଖରେ ଭାଗୀଦାର ।

କିନ୍ତୁ ମାନବ ସହ ପ୍ରକୃତିର ଏହି ଅଂଶଗ୍ରହଣରେ ଗୋଟିଏ ଉପାଦାନ ମୁଖ୍ୟ ହୋଇ ଅନ୍ୟଟି ଗୌଣ ହୋଇଯାଏ—ଯେତେବେଳେ କି କବିର ଅହଂ ଏତେ ବେଶି ତା'ର ଧ୍ୟାନକୁ ନିମଜ୍ଜିତ କରି ରଖେ ଯେ, ପ୍ରକୃତି ଆଉ ସ୍ୱାଧୀନ ବସ୍ତୁ ରୂପେ ଗୃହୀତ ହୋଇପାରେ ନାହିଁ । ବରଂ କବିର ଆବେଗର ପ୍ରତିଫଳନ ନିମିତ୍ତ ତାହା ଏକ ଦର୍ପଣ ରୂପେ ପରିଗଣିତ ହୁଏ । ଏହି ବିନ୍ଦୁରେ ଅନ୍ତର୍ମୁଖୀ ବ୍ୟକ୍ତିବାଦ ବହିର୍ବିଶ୍ୱ ସହ କବିର ସମ୍ବନ୍ଧରେ ହସ୍ତକ୍ଷେପ କରେ—ପ୍ରକୃତି ପ୍ରତି କବିର ସକଳ ସୂକ୍ଷ୍ମ ଅନୁଭବ ଆତ୍ମସତ୍ତାର ଅନୁଭବ ଦ୍ୱାରା ଆଚ୍ଛନ୍ନ ହୋଇପଡ଼େ ଓ କବି ପ୍ରକୃତି ଠାରେ ଆତ୍ମଅନ୍ୱେଷୀ ସମ୍ବେଦନାର ପ୍ରକଟନ ଦେଖେ ।

ମଣିଷଠୁଁ ଆମେ ଯେତେବେଳେ ସମ୍ବେଦନା ନପାଉ, ଫୁଲକୁ ଭଲ ପାଉ, ଘାସ, ପାଣି ଓ ଆକାଶକୁ ଭଲ ପାଉ, ବସନ୍ତର ପନ୍ଥରେ, ମଳୟ ପବନରେ ଆମେ ହୃଦୟ ଯୋଗାଯୋଗର ସନ୍ଧାନ ପାଉ । ଉଦାହରଣ ସ୍ୱରୂପ—ସ୍ୱର୍ଗତ କବି କୁନ୍ତଳାକୁମାରୀଙ୍କ 'ଶେଫାଳି ପ୍ରତି' କବିତାର ନିମ୍ନୋକ୍ତ ପଂକ୍ତି ସମୂହକୁ ନିଆ ଯାଇପାରେ—

"ଶେଫାଳି, କହେ ତୋ ଆଗରେ ସବୁ ଗୁ କି ବନ୍ଧୁ ଜୀବିତ
ହେଲେ ମୋ ହୃଦୟ ଶତ ବେଦନାରେ ବ୍ୟଥିତ
× × × କହି କହି କିନ୍ତୁ ମୁହିଁ ଲଭେଁ ପ୍ରାଣେ ଆରାମ
ତୋ ବୁଝିବା ନବୁଝିବା ମୋର ପକ୍ଷେ ସମାନ
କହି କହି ହବାରାତି
ପ୍ରାଣେ ତ ଲଭିବି ଶାନ୍ତି
ତୋ ଉଦ୍ଦେଶ୍ୟ ଆରେ ଫୁଲ ମୋ ପ୍ରାଣର ଏ ବ୍ୟଥା × × × ।"

ପୁନଶ୍ଚ କବି ରମାକାନ୍ତଙ୍କର—

"ଆଉଁସି ନପାରି ତମ ଗହଳ ବାଳକୁ
ଆଉଁସୁଛି ସୂର୍ଯ୍ୟଚନ୍ଦ୍ର ଧାନକେଣ୍ଡା ସମୁଦ୍ର ଫେଣକୁ ।"

(କର୍ଫ୍ୟୁ—ସଚନ୍ଦ୍ର ଅନ୍ଧାର)

ଶେଲି ପ୍ରକୃତିଠାରେ ତାଙ୍କ ନିଜ ମନୋଭାବର ମୂର୍ତ୍ତିରୂପ ଦେଖିବାକୁ ଯାହୁଁଥିଲେ ଓ ପ୍ରକୃତିକୁ ନିଜ ଦୁଃଖରେ ଭାଗନେବାକୁ ଆହ୍ୱାନ ଜଣାଉଥିଲେ । ଶେଲିଙ୍କପାଇଁ ସାରା ବିଶ୍ୱ ନିଜ ଅହଂରୁ ହିଁ ବହିର୍ଗତ । ନିଚ୍ଛକ ନିସର୍ଗର ସୂକ୍ଷ୍ମ ଅନୁଧ୍ୟାନ ପ୍ରତି ତାଙ୍କର ଆଗ୍ରହ ନଥିବା ଆଶ୍ଚର୍ଯ୍ୟର କଥା ନୁହେଁ । ଓଡ଼ିଆ କବିଙ୍କର ପ୍ରକୃତି ଦୃଷ୍ଟିରେ ସ୍ୱମନୋଭାବର ପ୍ରତିଫଳନ ନିମ୍ନୋକ୍ତ କବିତା ପଂକ୍ତିରୁ ସ୍ପଷ୍ଟ ହୋଇପାରିବ—ରାଧାନାଥଙ୍କ ବିସ୍ମୟ-ବିମୁଗ୍ଧ ହୃଦୟ ହିମାଳୟର ରୁଦ୍ରକାନ୍ତ ଶୋଭା ମଧ୍ୟରେ ଐଶ୍ୱରୀୟ ସତ୍ତା ସଂଦର୍ଶନ କରିଛି—

"ମିହାର ମୁକୁଟେ ମସ୍ତକ ଶୋଭିତ
ସ୍କନ୍ଧେ ଶୋହେ ଶୁଭ୍ର ଗଙ୍ଗା ଉପବୀତ
ନିସ୍ତବ୍ଧ ନୀରବ ସେ ମହା ବିଜନେ
ସନାତନ ଶ୍ୱେତ ତୁଷାର ଆସନେ
ବ୍ୟୋମକେଶ ମୂର୍ତ୍ତି ଦେଖିଲି ଚମକି
ପଡ଼ିଲି ସେ ରୂପେ ଚିତ୍ତବୃତ୍ତି ଥକି"—

(ଚିଲିକା)

କିମ୍ବା

"ମଧୁସୂଦନଙ୍କ 'ସୀତାବନବାସ'ରେ କାନ୍ଦି ଉଠିଲେ ବିଶ୍ୱମୂର୍ତ୍ତି ଜନନୀ,
ରୁଷିଲେ ଗଙ୍ଗା ରଘୁକୁଳ ପାବନୀ
ତ୍ୱରିତ ବଧୂ ମୋହ ବିନାଶ ଆଶେ
ଶୀକର ଶୀତବାୟୁ ପେଷିଲେ ପାଶେ"

ମାଧ୍ୟମରେ କବି ନିଜ ମାନବିକ ସଂବେଦନଶୀଳ ହୃଦୟର ପ୍ରତିଛବି ଆଙ୍କିଲେ । 'ଆମ ନିତି ଦେଖା ସମୁଦ୍ର' କବି ସୀତାକାନ୍ତଙ୍କ ଆଖିରେ ଉଦାର ମହତ ପୁରୁଷ ଭାବେ ପ୍ରତୀତ ହେଲା—ପ୍ରକୃତି ବ୍ୟକ୍ତିତ୍ୱସମ୍ପନ୍ନ—ଶୀତ ସକାଳ, କୁହୁଡ଼ି ଭିତରେ କବିଙ୍କ ସମୁଦ୍ର ମନେହେଉଛି ବିଶାଳ—

"ସେ ମହାଜନ, କବି ଖାତକ ସମ୍ପର୍କ ନିରୂପିତ—
କେଡ଼େ ଉଦାର ସମୁଦ୍ର, ତା ସମାନ ମହତ ପୁରୁଷ,
ଆସି ଛିଡ଼ା ହୋଇଥିଲି ମୋ'ପରି
ଅକିଞ୍ଚନ ଖାତକ ଦୁଆରେ
ମନେରଖି ଏ ହୀନ ଅଧମ ନାମ,
ବିଶାଳ ଓ ଅନ୍ତହୀନ ଦୁର୍ବୋଧ ତା' ହିସାବ ଖାତାରେ"

( ଚଢ଼େଇରେ ରୁ କି ଜାଣୁ )

ପବନ ପୁଣି ହୁଏ ସଂବେଦନଶୀଳ, ମାନବାୟିତ—ପ୍ରକୃତିର ସମ୍ବେଦନା ହିଁ ପ୍ରକୃତ ପକ୍ଷେ କବି ଅନ୍ତରର ସଂବେଦନାର ପ୍ରତିବିମ୍ବ—

"ଆଉ ଦିନେ ରାଜରାସ୍ତା କଡ଼ରେ ଭିକାରି ଛୁଅଁଟେ ମରିପଡ଼ିଥାଏ ।
କେଜାଣି କି ମୂର୍ଚ୍ଛାସରେ ସେ ନଇଁ ପଡ଼ି ତାକୁ ଆଉଁସି ଲାଗିଥାଏ ।"

(ପବନ)

ଇଂରାଜୀ କବି ଶେଲୀଙ୍କ ପାଇଁ ମନଶ୍ଚକ୍ଷୁରେ ଦେଖୁଥିବା କାଳ୍ପନିକ ଫୁଲ ବେଶୀ ସତ । ତେଣୁ ରୋମାଣ୍ଟିକ୍ କବିମାନଙ୍କ ପାଇଁ ପ୍ରକୃତି ହେଉଛି ବ୍ୟକ୍ତିଗତ ଅନୁଭବମାନଙ୍କର ପ୍ରତିଫଳନ, ପ୍ରକୃତି ଏକ ପୃଷ୍ଠଭୂମି, କବିର ଅନ୍ତର୍ଦୃଷ୍ଟି ଚନ୍ଦ୍ରାଧାରର ଏକ ପ୍ରତିଧ୍ୱନି ।

ତେଣୁ ଏକଥା ସ୍ପଷ୍ଟ ହୁଏ ଯେ, ରୋମାଣ୍ଟିକ୍‌ମାନେ ପ୍ରକୃତ ପକ୍ଷେ ପ୍ରକୃତିକୁ ଦେଖିବାକୁ ଧ୍ୟାନ ଦିଅନ୍ତି ନାହିଁ, ସବୁ ଧ୍ୟାନ ଆପଣାର ଦୃଷ୍ଟି ଓ ଅନୁଭବଠାରେ କେନ୍ଦ୍ରୀଭୂତ କରିଥାଆନ୍ତି । ଇଂରାଜୀ କବି ବ୍ଲେକଙ୍କୁ ଦେଖନ୍ତୁ, ତାଙ୍କ ନିକଟରେ ବାସ୍ତବ ବିଶ୍ୱର ଚେହେରା ଅସ୍ୱୀକୃତ, ବରଂ ସେ ଆଖି ମଧ୍ୟଦେଇ କଳ୍ପନା ସଂଯୋଗରେ ଦର୍ଶନ କରିଥାନ୍ତି । ତାଙ୍କ ନିକଟରେ ପ୍ରକୃତି ପ୍ରଧାନ ନୁହେଁ । କବିର ଅହଂ, ତାର ଚେତନା, ଦୃଷ୍ଟିଭଙ୍ଗୀ ହିଁ ମୁଖ୍ୟ । ବ୍ଲେକ ନିଜେ ଯେଉଁ ଦୃଶ୍ୟ ଦେଖନ୍ତି, ତାହା ଚକ୍ଷୁଦ୍ୱାରା ନୁହେଁ ବରଂ ଚକ୍ଷୁ ମଧ୍ୟ ଦେଇ ଦେଖନ୍ତି । ଚକ୍ଷୁ ତାଙ୍କ ପାଇଁ ବାତାୟନର କାର୍ଯ୍ୟ କରେ । ସୂର୍ଯ୍ୟୋଦୟର ଦୃଶ୍ୟ ସମ୍ପର୍କରେ ଏଠାରେ ବ୍ଲେକ ସ୍ୱବ୍ୟକ୍ତିବାଦ ଓ କଳ୍ପନାକୁ ପ୍ରତିଷ୍ଠା କରିବାକୁ ଯାଇ କହନ୍ତି—"ନିଆଁର ଏକ ପିଣ୍ଡୁଳା ଆକାଶରେ ଉଠୁଛି, ଏହା ଦେଖିବା ପରିବର୍ତ୍ତେ ମୁଁ ଦେଖୁଛି ସୂର୍ଯ୍ୟୋଦୟ କାଳରେ ଜଣେ ସ୍ୱର୍ଗୀୟ ପୁରୁଷ ଈଶ୍ୱରଙ୍କ ଜୟଗାନ କରୁଛନ୍ତି । ଓଡ଼ିଆ କବି ମଧୁସୂଦନ ରାଓଙ୍କର 'ଋଷିପ୍ରାଣେ ଦେବାବତରଣ'ରେ ସରସ୍ୱତୀ ନଦୀ ତଟରେ ଉଷାକାଳରେ ନାୟକ ଏକ ଦିବ୍ୟ ପୁରୁଷଙ୍କୁ ଦେଖିବାକୁ ପାଉଛି । କଳ୍ପନାଦ୍ୱାରା ଯେ ଦର୍ଶନ ସମ୍ଭବ ହେଉଛି ଓ ଏହାଦ୍ୱାରା ବ୍ୟକ୍ତିବାଦୀ ଚେତନା ପ୍ରତିଷ୍ଠିତ ହୋଇଛି । ପ୍ରାକୃତିକ ଦୃଶ୍ୟର ବାସ୍ତବତା ଏହାଠାରୁ ଭିନ୍ନ ନିଶ୍ଚୟ, ମାତ୍ର ସମୟ ଓ ପରିବେଶ ଉପରେ କବିଙ୍କ ସ୍ୱତନ୍ତ୍ର ଦୃଷ୍ଟିଭଂଗୀ ବ୍ୟକ୍ତିବାଦୀ ଚେତନାର ତୀବ୍ର ପ୍ରଭାବ ପଡ଼ିଛି ।

ଭିକ୍ଟର ହ୍ୟୁଗୋ ପ୍ରକୃତି ମଧ୍ୟରେ ନିହିତ ଅଦୃଶ୍ୟ ପୃଥିବୀର ରହସ୍ୟର ଗଭୀରତାକୁ ଗୁରୁତ୍ୱ ଦିଅନ୍ତି । ରୋମାଣ୍ଟିକ୍‌ମାନେ କେବଳ ଚକ୍ଷୁ ଦେଇ ନୁହେଁ, ଧୀଶକ୍ତି ଦେଇ, ଜାଗ୍ରତ ଚେତନା ଦେଇ ଦୃଶ୍ୟକୁ ଗ୍ରହଣ କରନ୍ତି । ତେବେ ଏମାନଙ୍କ ରଚନାରେ ପ୍ରକୃତି ଆବେଗର ସହଚର, ମନୋଭାବ ଓ ପରିବେଶର ସୂଚକ ଭାବେ ଚିତ୍ରିତ ହୁଏ । ପ୍ରକୃତି ପକ୍ଷେ କବିର ମନର ଅବସ୍ଥା ବଦଳିବା ସହିତ ଭୂଚିତ୍ର, ଅରଣ୍ୟ, ନଦୀ, ପକ୍ଷୀ ଓ ଫୁଲ ବଦଳନ୍ତି ନାହିଁ । ମାତ୍ର ଯେତେବେଳେ ବ୍ୟକ୍ତିବାଦୀ ଅନୁଭବ ପ୍ରାଧାନ୍ୟ ବିସ୍ତାର କରେ, ପ୍ରକୃତି ସେତେବେଳେ ତାହାର ଅନୁଗାମୀ ହୋଇଯାଏ ।

## ରୋମାଣ୍ଟିକ୍ ନାୟକର ବ୍ୟକ୍ତିବାଦ—

କବିଙ୍କ ଦୃଷ୍ଟିଭଙ୍ଗୀକୁ କେବଳ ନୁହେଁ, ରୋମାଣ୍ଟିକ୍ ଚେତନା କବିଙ୍କ କଳାକୃତିର ବିଷୟବସ୍ତୁକୁ ମଧ୍ୟ ନିର୍ମାଣ କରିଥାଏ । ତୀବ୍ର ବ୍ୟକ୍ତିବାଦକୁ ସମର୍ଥନ କରୁଥିବା ସାମାଜିକ ଓ ମନସ୍ତାତ୍ତ୍ୱିକ ସମସ୍ୟାଗୁଡ଼ିକ ମଧ୍ୟ ରୋମାଣ୍ଟିକ୍ ନାୟକର ସ୍ଥିର ଧାରଣା ଭାବେ ଚିତ୍ରିତ ହୁଅନ୍ତି । ତେଣୁ ବ୍ୟକ୍ତିର ତା' ପରିପାର୍ଶ୍ୱ ସହ ସମ୍ପର୍କ ବ୍ୟାହତ ହୁଏ । ଇଚ୍ଛା ଆହତ ହେଲେ ବ୍ୟକ୍ତି ନିଜ ଦୁଃଖବୋଧକୁ ପ୍ରବୋଧିବାକୁ ନିଜ ଭିତରକୁ ଫେରିଯାଏ । ନିଜକୁ ନିଜର ଦେଇ ଦେଇ ଆତ୍ମନିରୀକ୍ଷା, ଆତ୍ମ-ବିଶ୍ଳେଷଣ, ଆତ୍ମ-କରୁଣା କରି କରି ସେ ଅହଂକୈନ୍ଦ୍ରିକତାର କାନ୍ଦୁଅ ଭିତରେ ଲଟପଟ ହୁଏ । ଏହି ପ୍ରକାର ଆତ୍ମ-କୈନ୍ଦ୍ରିକତା

ରୋମାଣ୍ଟିକ୍ ନାୟକର ବଡ଼ ଦୁର୍ବଳତା । ଅଥଚ ଏକଥା ସେ କେବେ ବି ବୁଝି ପାରେନା । ଏହି ନାୟକର ରହସ୍ୟମୟ ଯନ୍ତ୍ରଣାର ଉତ୍ସ ତା' ନିଜ ଭିତରେ ହିଁ ରହିଥାଏ । ସେ ନିଜକୁ କହେ ଦୁର୍ଭାଗା; ଜାଣିପାରେନା ଯେ, କେତେକାଂଶରେ ତା'ର ଭାଗ୍ୟ ତା ନିଜ ହାତରେ ରହିଛି । ସେ ନିଜକୁ ଅନ୍ୟଠୁ, ସମାଜଠୁ ଅଲଗା ରଖି ଦେଖିବାକୁ ଚାହେଁ । ସେ କାହାରିକୁ ସ୍ନେହ ଦେଇ ପାରେନା । କାରଣ ଆତ୍ମକୈନ୍ଦ୍ରିକତାର ଜାଲ ଭିତରୁ ସେ ପଦାକୁ ଗୋଡ଼ କାଢ଼ି ପାରେନାହିଁ, ନିଜକୁ ଚେଇଁ ଅନ୍ୟ କାହାରି ପାଖରେ ପହଞ୍ଚି ପାରେ ନାହିଁ । ତା' ଶକ୍ତିର କେନ୍ଦ୍ର ହେଉଛି ତାର ମହାମୂଲ୍ୟ ଆତ୍ମଂଭରିତା । ତା'ର ସମସ୍ତ ଅନୁଭବକୁ ସେ ଆତ୍ମଂଭରିତା ଦ୍ୱାରା ମୂଲ୍ୟାୟିତ କରେ । ତେଣୁ ଶୁଦ୍ଧ ତ୍ୟାଗପୂତ ପ୍ରେମ ତା ପକ୍ଷରେ ସମ୍ଭବ ନୁହେଁ । ଏହି ନାୟକ ଅହଂକୈନ୍ଦ୍ରିକ ଅସ୍ତିତ୍ୱର ଭୟଙ୍କର ବିରକ୍ତି ଓ ଶୂନ୍ୟତାକୁ ଭୋଗକରେ । ସେ ପ୍ରତି ମୁହୂର୍ତ୍ତରେ କାନ୍ଦେ ଓ ସମବେଦନା ଖୋଜେ । ତେଣୁ ଅହଂକୈନ୍ଦ୍ରିକ ବ୍ୟକ୍ତିବାଦ ଅତିଶକ୍ତ ଆତ୍ମ-ସଚେତନତାମୂଳକ ହେଲେ ଆତ୍ମସମୀକ୍ଷା, ବିଷାଦ, ଅସ୍ଥିରତା, ଆବେଗର ଅସମତା, ବର୍ତ୍ତମାନର ବାସ୍ତବତା ପ୍ରତି ଅସନ୍ତୋଷ ଓ ଅଦ୍ଭୁତ ସ୍ୱପ୍ନ-ଅଭିଳାଷ ଆଡ଼କୁ ପ୍ରଧାବନ ଦେଖାଦିଏ, ଯେହେତୁ ସାଧାରଣ ମଣିଷ ପରି ସୁଖଟିଏ ପାଇବାକୁ ତା'ର ମନୋବୃତ୍ତି ତାକୁ ବାଧା ଦିଏ । ସେ ମଧୁର ବିଷାଦକୁ ଆସ୍ୱାଦନ କରେ । ଅନ୍ୟଠୁ ନିଜକୁ ଅଲଗା କରି ଦେଖୁଥିବା ରୋମାଣ୍ଟିକ୍ ନାୟକ ଭାଗ୍ୟର କବଳରେ ନିଜକୁ ଦେଖେ ଓ ଅସାଧାରଣ ଦୁଃଖ ଓ ନାଟକୀୟ ଦୁର୍ଭାଗ୍ୟକୁ ସ୍ୱାଗତ କରେ । କେତେକ ସମୟରେ ତା'ର ଦୁଃଖ ଦୁର୍ଭାଗ୍ୟର ଅନୁଭବ ଖୁବ୍ ନିଷ୍ଠାପର ଓ ହାର୍ଦ୍ଦିକ ହୋଇଥିଲା ବେଳେ ଅନ୍ୟ ସମୟରେ ତାହା ଛଳନାପୂର୍ଣ୍ଣ ବି ହୋଇପାରେ । କିନ୍ତୁ ପ୍ରକୃତ ଦୁଃଖ, ଯାହା ତାକୁ କୋରି ଖାଏ, ତାହା ତା' ନିଜ ଭିତରୁ ହିଁ ଉଦ୍ଭୂତ । ତା'ର ଅହଂକୈନ୍ଦ୍ରିକ କଳ୍ପନା ତା'ର ସର୍ବନାଶର କାରଣ ବି ହୋଇପାରେ । ବହିର୍ଗତ ଭାଗ୍ୟ ନୁହେଁ, ତା'ର ନିଜ ମନୋବୃତ୍ତି ବିଷାଦ-କବଳିତ ହୋଇ ତା'ର ଅନ୍ଧ ବ୍ୟକ୍ତିବାଦ ବା ବ୍ୟକ୍ତି-ସର୍ବସ୍ୱତାର ପ୍ରସାର ଘଟାଏ । ତା'ର ବିଷାଦ ଯାହା ସେ ଭୋଗ କରେ, ପରିବେଶ ପ୍ରତି ସେ ଦୃଷ୍ଟିଭଙ୍ଗୀ ବଦଳାଇଲେ ସେହି ବିଷାଦ ରହିବନି ନାହିଁ । ମାତ୍ର ବାସ୍ତବତା ଠାରୁ ଦୂରେଇ ଯାଇ ସେ କଳ୍ପନା ଦ୍ୱାରା ଗଠିତ ବାସ୍ତବତାରେ ପହଞ୍ଚେ ଓ ତା'ର ବ୍ୟକ୍ତି-ସର୍ବସ୍ୱତା କ୍ରିୟାରହିତ ମନୋବୃତ୍ତିର ବିକାଶ ଘଟାଇ କଳାକୁ କ୍ଷୟଶୀଳ କରାଇବାରେ ଦାୟୀ ହୁଏ । ତେଣୁ ରୋମାଣ୍ଟିକ୍ ବ୍ୟକ୍ତିବାଦ କବିର ସମଗ୍ର ଚେତନା ଓ ଦୃଷ୍ଟିକୋଣକୁ ପ୍ରଭାବିତ କରି ତା'ର ନିଜସ୍ୱ ଅହଂ ପ୍ରତିଷ୍ଠା କରିବାରେ ତୀବ୍ର ଭାବେ କ୍ରିୟାଶୀଳ । ଏହା ବ୍ୟକ୍ତି-ସର୍ବସ୍ୱତାରେ ପରିଣତ ହେବା ସାହିତ୍ୟ ସରଚନା ପକ୍ଷେ ଆଶୀର୍ବାଦ ହୁଏନାହିଁ ।

(ସ୍ନାତକୋତ୍ତର ଓଡ଼ିଆ ବିଭାଗ 'ଉଜ୍ଜୀବନ ପାଠଚକ୍ର'ରେ ପ୍ରଦତ୍ତ ବକ୍ତୃତାର ନିର୍ବାଚିତାଂଶ)

# କବିତାରେ କଳା

ପୁରାଣ ପୃଥିବୀର ଜୀବନ ସଙ୍ଗୀତ ଏଇ କବିତା । ଶବ୍ଦ ଓ ଭାବର କଳାଗତ ସଂଯୋଜନାରେ ତା'ର ସୃଷ୍ଟି । ଭାଷାଗତ କଳା ମଧ୍ୟରେ କବିତା ସବୁଠାରୁ ଅଧିକ ଭାବସାନ୍ଦ୍ର ହୋଇଥିବାରୁ ଏହାର ଚମତ୍କାରିତା ସହଜରେ ଉପଲବ୍‌ଧି କରିହେବ । କଳା ହିଁ କବିତାର ପ୍ରାଣ, କବିତାର ଲାବଣ୍ୟ, ବରଂ କବିତାର କବିତାତ୍ୱ । ଏହି ପ୍ରାଣ ଓ ଲାବଣ୍ୟ ଅତ୍ୟନ୍ତ ସୂକ୍ଷ୍ମ ବ୍ୟାପାର—ଉପଲବ୍‌ଧିର ଧନ । ଏହାକୁ ବିଶ୍ଳେଷଣ କରିବସିଲେ, ସ୍ଥୂଳଭାବରେ ବ୍ୟବଚ୍ଛେଦ କରିବସିଲେ, କିଛି ତଥାପି ଅବୁଝା ରହିଯାଏ । ଆଜିର ଓଡ଼ିଆ କବିତା ଆଙ୍ଗିକ ଓ ଆଭିମୁଖ୍ୟରେ ନୂତନ ଦିଗନ୍ତର ଉନ୍ମୋଚନ କରିଅଛି । ଭାବ ଦିଗରୁ ତାହା ଆନ୍ତର୍ଜାତିକ ଆଧୁନିକ ମଣିଷର ଜୀବନ ସଙ୍କଟ, ବିପନ୍ନତା ଓ ତହିଁରୁ ଉତ୍ତରଣର ପ୍ରୟାସରେ ନିର୍ମିତ ହୋଇଅଛି । ମାତ୍ର କବିତାରେ 'କଳା' କହିଲେ କବିତାର ଯେଉଁ କେତୋଟି ଗୁଣ ସ୍ୱତଃ ଅବବୋଧରେ ଆସିଯାଏ, ତାହାର ବିଶ୍ଳେଷଣ ଏଠାରେ କରାଯାଉଛି । ବର୍ଣ୍ଣମୟ କଳ୍ପନା, ପୁଲକିତ ଭାବସମ୍ବେଗ, ସୂକ୍ଷ୍ମତର ଚିନ୍ତା କବିତାର ପ୍ରାଣ-ସମ୍ପଦ । ଏ ସବୁର ସାର୍ଥକତମ ବାହକ ହେଉଛି ଭାଷା । ଏହି ଭାଷା ପୁଣି ଶବ୍ଦର ଯଥାର୍ଥ ସଂଯୋଜନା ଓ ଲାଳିତ୍ୟ ଦ୍ୱାରା ନିୟନ୍ତ୍ରିତ । କଳା ଯେହେତୁ କବିତାର ପ୍ରାଣ ଓ ଲାବଣ୍ୟ, ଭାବ ଓ ରୂପ ଉଭୟ ସହ ଏହାର ନିବିଡ଼ ସମ୍ପୃକ୍ତି ଓ ପ୍ରଚ୍ଛନ୍ନ ସଦ୍ଭାବ ରହିଛି । ଭାବୋ-ପଲବ୍‌ଧି ଦିଗରେ ଅଭିନବ ଦୃଷ୍ଟି ଓ ଶୈଳୀଗତ ଉତ୍କର୍ଷ କଳାର ଆଶୀର୍ବାଦରୁ ସମ୍ଭବ ହୋଇଥାଏ । କଳାର ଅପ୍ରମିତ ଶକ୍ତି । ଏହା କୁତ୍ସିତକୁ ସୁନ୍ଦର, କ୍ଷଣିକକୁ ଚିରନ୍ତନ, ହତାଶାକୁ ସମ୍ମୋହନରେ ପରିଣତ କରିପାରେ । ଏହା ଅନୁଭବ ଓ ଅଭିଜ୍ଞତା ସ୍ତରର ସକଳ ଘଟଣା ଓ ପରିବେଶ ମଧ୍ୟରୁ ନିର୍ଯ୍ୟାସତକ ନିଗାଡ଼ି ଆଣି ପରିବେଷଣ କରିଥାଏ । ସାଧାରଣ ଆଖି ଆଗରେ ଯାହା ତୁଚ୍ଛ, ଇତର ଓ ଦୈହିକ, କଳାର କାଉଁରୀ ସ୍ପର୍ଶରେ ତାହା ଉତ୍ତରଣ ପଥରେ ଅଧିରୂଢ଼ ହୋଇଥାଏ । ତନ୍ମଧ୍ୟରୁ ମାର୍ଜିତ, ଅପାର୍ଥିବ, ମହାମୂଲ୍ୟ ଭାବରାଶି ପ୍ରକଟିତ ହୋଇଥାଏ । ଜୀବନ ଓ ତା'ର ବ୍ୟାପକ ବୈଚିତ୍ର୍ୟକୁ କଳା ଚିରନ୍ତନର ମୂଲ୍ୟରେ ମଣ୍ଡିତ କରେ । କଳା ହିଁ କାଳେ କାଳଜୟୀ । କବିର ଅନୁଭୂତ ଜଗତର କଳାପ୍ରବଣତା ଭାଷା ମାଧ୍ୟମରେ ପ୍ରତ୍ୟକ୍ଷୀଭୂତ ହୁଏ । ଅନୁଭୂତ କ୍ରମଶଃ ଅଭିଜ୍ଞତାରେ ପରିଣତ ହୁଏ ଓ କବି ଅନ୍ତରକୁ ମଥିତ କରି ପ୍ରକାଶ ପାଏ । ଶବ୍ଦ ଓ ଛନ୍ଦ

ବର୍ତ୍ତିମାନ ହାତ ଧରାଧରି ହୋଇ କବିତା ରାଜ୍ୟରେ ଅବତୀର୍ଣ୍ଣ ହୁଅନ୍ତି । ତେଣୁ ଭାଷାଗତ କଳାସୃଷ୍ଟିରେ ଶବ୍ଦର ଓ ଶବ୍ଦ ସଜ୍ଜୀକରଣର ଉପଯୋଗିତା ସମ୍ପର୍କରେ କଳାକାର ମାନେ ସଚେତନ ।

କିନ୍ତୁ ଏଇ ବୈଚିତ୍ର୍ୟମୟ ଜୀବନ ସ୍ୱୟଂ କଳା ଠାରୁ ଆହୁରି କଳାମୟ । ଜୀବନକୁ ଘେରି ରହିଥିବା ଆବେଗ, ସଂବେଗ, ଅନୁଭୂତି ଓ ଉପଲବ୍ଧି ଭାଷା ମାଧ୍ୟମରେ ସରସ ଭାବେ ମୂର୍ତ୍ତି ହୁଅନ୍ତି । ପୁଣି ବିଶେଷ ଶବ୍ଦ-ସଂଯୋଜନା ସଫଳ ଅଭିବ୍ୟକ୍ତିର ମୂଳଭିତ୍ତି । ଶବ୍ଦଟିର ଅର୍ଥକୁ ଉତ୍ତମରୂପେ ଅବଗତ ହୋଇ ତାକୁ ସୁପ୍ରଯୁକ୍ତ କରିବାରେ କବିର କଳାସଚେତନତା ସ୍ପଷ୍ଟ ହୁଏ । ଏହି କଳାସଚେତନତାର ଉତ୍ସ ଦ୍ୱିବିଧ । ପ୍ରଥମଟି ଦିବ୍ୟ-ଶକ୍ତିର ପ୍ରେରଣା—ଯାହାକୁ ଆମେ କବିର ସଂସ୍କାର ବୋଲି ମଧ୍ୟ କହିପାରିବା । କବିର ଚିନ୍ତା ଚେତନା ଓ ବିଶ୍ୱାସ ଏହି ସଂସ୍କାର ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଦ୍ୱିତୀୟରେ କବିର ସମ୍ପୂର୍ଣ୍ଣ ସଚେତନ ପ୍ରଚେଷ୍ଟା – ସୁନ୍ଦର ଢଗକୁ ତା'ର ଅପ୍ରତିହତ ନିଷ୍ଠା । ଅନ୍ୟ-କଥାରେ କହିଲେ କବି ନିଜର ଚେତନାକୁ ମାର୍ଜିତ ଓ ସୁନ୍ଦର କରିପାରିଲେ ହିଁ ଦିବ୍ୟଶକ୍ତିର ପ୍ରେରଣା ଆଶୀର୍ବାଦ ପରି ଝରିପଡ଼େ । କବି ନିଜକୁ ନିଜ ଧ୍ୟାନ ଧାରଣା ଦ୍ୱାରା ଏକ ରସାଳ ବୃକ୍ଷରେ ପରିଣତ କରିପାରିଲେ କଳା-ରୂପୀ ଦିବ୍ୟ ଶୁକପକ୍ଷୀଟି ତହିଁକୁ ଅବତରଣ କରିଆସେ ।

'ଭାବ ଓ ଭାଷାର ପାରସ୍ପରିକ ସମ୍ପର୍କ ଏତେ ନିବିଡ଼ ଓ ରହସ୍ୟମୟ ଯେ, ଭାବ ଅଧିକାଂଶତଃ ନିଜର ବାହନ ଭାଷାକୁ ସାଥିରେ ନେଇ ପ୍ରକଟିତ ହୋଇଥାଏ । ଅପ୍ରକଟ ଉପଲବ୍ଧି ସ୍ତରରେ ଘଟୁଥିବା ସୂକ୍ଷ୍ମ ସ୍ପନ୍ଦନଗୁଡ଼ିକ ଶବ୍ଦରେ ପ୍ରକାଶ ପାଇଲା ବେଳକୁ ସ୍ଥୂଳ ଓ ଖର୍ବ ହୋଇଯିବାର ଆଶଙ୍କା ମଧ୍ୟ ରହିଥାଏ । ଏକମାତ୍ର କୁଶଳ ବିନ୍ଧାଣି ହିଁ ଏହାକୁ କଳାଗତ ଉତ୍କର୍ଷ ପ୍ରଦାନ କରିପାରେ । କବିତାର କଳାଗୁଣ ତେଣୁ ଶବ୍ଦ ନିର୍ବାଚନ ଓ ପ୍ରୟୋଗରେ, ଭାଷାର ସାମର୍ଥ୍ୟ ଉପରେ କେତେକାଂଶରେ ନିର୍ଭରଶୀଳ । ସେଥିପାଇଁ ଆଜିର କବି ନିଜ କବିତାରେ ଶବ୍ଦ ନିର୍ବାଚନ, ପ୍ରୟୋଗ ଓ ଭାଷା ସଂଯୋଜନା ଢଗରେ ଖୁବ୍ ସତର୍କ । କାଳକ୍ରମେ ବହୁ ବ୍ୟବହାର ଫଳରେ ତୀକ୍ଷ୍ଣତା ହରାଇ ମ୍ଳାନପ୍ରଭ ହୋଇ ଯାଇଥିବା ଶବ୍ଦକୁ ସେ ଯଥାସମ୍ଭବ ପରିହାର କରିଛୁ । କବିତାର କଳାମୂଲ୍ୟର ଅଭିବୃଦ୍ଧି-ନିମିତ୍ତ ସେ ଭାଷାକୁ ନୂତନ ଭାବେ ଅର୍ଥାନ୍ୱିତ କରି ପ୍ରୟୋଗ କରିବାରେ ଆଗ୍ରହୀ । ଏ ସମ୍ପର୍କରେ ଓଡ଼ିଆ କବିତାରୁ ଉଦାହରଣଟିଏ ନିଆଯାଉ—

"ଆସ ବୋଲି ତମମାନଙ୍କୁ ଡାକନ୍ତି, ହେଲେ, ନାଁ ।
ଦୁଃଖକୁ ଆଉ ନିଜର ବୋଲି କହିହେଉନି ।"

(ଦୁଃଖ କ'ଣ ?—ସୌଭାଗ୍ୟ କୁମାର ମିଶ୍ର)

ଏଠାରେ ଶୈଳୀ ମାଧ୍ୟମରେ କବି ମନର ଦ୍ୱନ୍ଦ୍ୱ ଓ ଆସକ୍ତି ଉଭୟ ସ୍ପଷ୍ଟ ହେଉଛି ।

କମ୍ପା

"ଅନ୍ଧ ମହୁମାଛି ।
ଉଡ଼ୁଥା', ବୁଲୁଥା', ବୁଲୁଥା'
କିଛି ଦେଖିନା, ଦେଖିନା, ଦେଖିନା"

(ଅନ୍ଧ ମହୁମାଛି—ସୌଭାଗ୍ୟ କୁମାର ମିଶ୍ର)

ଶବ୍ଦ ସଂଯୋଜନାର ବୈଶିଷ୍ଟ୍ୟ ହେତୁ ଶଂସିତ ପଂକ୍ତିଗୁଡ଼ିକରୁ ଜୀବନର ଗତାନୁଗତିକ ଧାରାପ୍ରତି ବେଖାତିର ଭାବ ସହ ଏକ ସାହସିକ ସ୍ୱରର ସୂଚନା ମିଳୁଅଛି ।

ଉତ୍କୃଷ୍ଟ ଶୈଳୀ ମାଧ୍ୟମରେ ଭାବଜଗତର ପ୍ରତୁଳ ସ୍ପନ୍ଦନ ଅସାଧାରଣ ଅର୍ଥମୟ ହୋଇଉଠେ । ଭାବ ଓ ରୂପ ଏକାତ୍ମ ହୋଇଯାଆନ୍ତି । ସେଠାରେ ତାଙ୍କର ବିଚ୍ଛିନ୍ନ ସତ୍ତାକୁ ଆଉ ଚିହ୍ନି ହୁଏ ନାହିଁ । ସେହିଠାରେ ହିଁ ସମାଲୋଚକଗଣ କବିତାକୁ ପ୍ରତୀକ, ଚିତ୍ରକଳ୍ପ ଓ ପୌରାଣିକ ଚେତନା ଆଦିକୁ ବିଶ୍ଳେଷଣ କରନ୍ତିଅନ୍ତି । ପ୍ରତୀକ, ଚିତ୍ରକଳ୍ପ, ପୌରାଣିକ ଚେତନା କଳା-ସୃଷ୍ଟିର ଗୋଟିଏ ଗୋଟିଏ ଉପାଦାନ — ଯାହା ମଧ୍ୟରେ ଆତ୍ମିକ (ଭାବ) ଓ ଆଙ୍ଗିକ (ରୂପ) ଏକ ଓ ଅବିଚ୍ଛେଦ୍ୟ ହୋଇ ଯାଇଥାଆନ୍ତି ।

ସକଳ କଳାତ୍ମକ ଉତ୍କର୍ଷ ପାଇଁ ପ୍ରତୀକ ପ୍ରୟୋଗ ଅପରିହାର୍ଯ୍ୟ । ମାନବ ଜୀବନର ଆଦିକାଳରୁ ତାର ପ୍ରତୀକ ସହ ଯୋଗାଯୋଗ ରହିଛି । ଯେ କୌଣସି ଧ୍ୱନିପୂର୍ଣ୍ଣ କାବ୍ୟିକ ପ୍ରକାଶରେ, ତାତ୍ପର୍ଯ୍ୟମୂଳକ କୌଣସି ପୌରାଣିକତାର ସଂଯୋଜନାରେ ଏବଂ ଚିତ୍ରକଳ୍ପ ରଚନାରେ ପ୍ରତୀକାତ୍ମକତା ହିଁ ମୁଖ୍ୟ ଅଂଶ ଗ୍ରହଣ କରିଥାଏ । ନିକଟବର୍ତ୍ତୀ ପରିଚିତ ଅର୍ଥ ଅପେକ୍ଷା ଏହା ବହୁ ବ୍ୟାପକ ଓ ଆଶ୍ଚର୍ଯ୍ୟ ଅର୍ଥର ଉଦ୍‌ଘାଟନ କରିପାରେ । କୌଣସି ବସ୍ତୁ ବା ଚିନ୍ତାକୁ ବିଭିନ୍ନ ପ୍ରତୀକରେ ଅଭିବ୍ୟଞ୍ଜିତ କରିବା କବିତାର ଧର୍ମ । ଏଠାରେ ଗୋଟିଏ ସଫଳ ପ୍ରତୀକର ବିଶ୍ଳେଷଣ କରିଯାଇପାରେ । ମୃତ୍ୟୁ ଅନିବାର୍ଯ୍ୟ ଏକ ପରିଣତି ଏଇ ମାନବ ଜୀବନର । ତାର ସ୍ୱରୂପ ସର୍ବଦା ଅସ୍ପଷ୍ଟ ଓ ସଂଶୟାଚ୍ଛନ୍ନ । ଅତଏବ ତାହାକୁ ଏକ ଅଦ୍ଭୁତ ଅତିଥି ରୂପେ ପ୍ରତୀକିତ କରିଛନ୍ତି କବି ରମାକାନ୍ତ ରଥ । ଏହି ଅଭିନବ ପ୍ରତୀକ ମାଧ୍ୟମରେ ମୃତ୍ୟୁର ଅସ୍ପଷ୍ଟତା ଅଥଚ ଅପ୍ରତିହତ ପରାକ୍ରମ ଓ ତା' ନିକଟରେ ମଣିଷର ଅସହାୟ ଆତ୍ମସମର୍ପଣ ସ୍ପଷ୍ଟ ହୋଇଉଠୁଛି । ପୁଅର ମୃତ୍ୟୁ ଯଦି ଅବଶ୍ୟମ୍ଭାବୀ, କାହିଁକି ତେବେ ମୃତ୍ୟୁ ପ୍ରତି ଏତେ ଗୁଡ଼ ଗୁଡ଼ ଭାବ ? କୋଳର ସନ୍ତାନଟିକୁ ଅନନ୍ୟୋ-ପାୟରେ ସମର୍ପି ଦେଲାବେଳେ ମୃତ୍ୟୁକୁ ଭୟଙ୍କର ଭାବିଲେ ଦୁଃଖ ବହୁଗୁଣିତ ହୋଇଯିବା ସ୍ୱାଭାବିକ । ବରଂ ତାକୁ ଏକ ଗୃହାଗତ ଅତିଥିରୂପେ ଗ୍ରହଣ କରି ନେଇ ତାକୁ ବାଟେଇ ଦେଇ (See off) ଆସିବା ପାଇଁ ନିଜ ପୁଅକୁ ତା ସଙ୍ଗେ ଉଠାଇ ଦିଆଯାଇପାରେ । ଏହାଦ୍ୱାରା ନୂଆପ୍ରକାରର ଅତିଥିସତ୍କାର ମଧ୍ୟ କରିହେବ ।

ଆଉ ଏକ ପ୍ରକାରର ଚମତ୍କାରିତା ସପ୍ତମ ଋତୁରେ ଦେଖାଯାଏ । ଏହି ନାମଟି ମୃତ୍ୟୁଭିତ୍ତିର କାଳକୁ ପ୍ରତୀକିତ କରୁଛି । ଏ ଦେହରେ ସେ ଋତୁର ଭୋଗାଭୋଗ ହୋଇପାରେ ନାହିଁ । ପୁନଶ୍ଚ ଭାବଗର୍ଭିକ ରହସ୍ୟଚେତନା-ସବଳିତ କବି ସୀତାକାନ୍ତ ମହାପାତ୍ରଙ୍କ ସୃଷ୍ଟ ଏକ ପ୍ରକାରର ଉପଯୋଗିତା ପରୀକ୍ଷା କରାଯାଉ । କବି "ସମୁଦ୍ର" ମାଧ୍ୟମରେ ବିପୁଳ ଜୀବନରହସ୍ୟର ପ୍ରତୀକାତ୍ମକ ପ୍ରକାଶ ଘଟାଇଛନ୍ତି । ମାନବଜୀବନର ଉଚ୍ଚତର ମୂଲ୍ୟବୋଧକୁ, ମୃତ୍ୟୁକୁ ଓ ଐଶ୍ୱରିକ ସତ୍ତାକୁ ଏକାଧାରରେ କବି ସମୁଦ୍ର ଦ୍ୱାରା ପ୍ରତୀକିତ କରିଛନ୍ତି । ସମୁଦ୍ର ପରି ଏ ସବୁର ପରିବ୍ୟାପ୍ତି ଓ ଗଭୀରତା ମଣିଷର ଜ୍ଞାନ ଓ ଚେତନାର ଅଗୋଚର । 'ପର୍ବତ'ର ପ୍ରତୀକ ମାଧ୍ୟମରେ କବି କାବ୍ୟିକ ବ୍ୟକ୍ତିତ୍ୱ ଓ ଅଭୀପ୍ସାର ତୁଙ୍ଗତାକୁ ସୂଚାଇ ଦିଅନ୍ତି—ଅନମନୀୟ ବ୍ୟକ୍ତିତ୍ୱର, ଗର୍ବିତ ଆତ୍ମବିଶ୍ୱାସର ପ୍ରତୀକ ଶୈଳ । କବି ରାଜେନ୍ଦ୍ର ପଣ୍ଡାଙ୍କର 'ଶୈଳକଳ୍ପ' ଶୀର୍ଷକଟି ଉପରୋକ୍ତ ଭାବର ପ୍ରତୀକତା କରେ । ଏହିପରି ବହୁ ପ୍ରକାରର ଅଭିନବତ୍ୱରେ ଆଜିର ଓଡ଼ିଆ କବିତା ସମୃଦ୍ଧ ।

ବର୍ତ୍ତମାନ ଚିତ୍ରକଳ୍ପର ଗୁରୁତ୍ୱକୁ ବିଚାରକୁ ନିଆଯାଉ । ବକ୍ତବ୍ୟକୁ ଅଧିକ ଶାଣିତ ଓ ପ୍ରତ୍ୟକ୍ଷ କରିବା ନିମିତ୍ତ ଚିତ୍ରକଳ୍ପ ଏକାନ୍ତ ଉପଯୋଗୀ । ଅବଶ୍ୟ ଚଳିତ ଶତକର ଚତୁର୍ଥରୁ ଷଷ୍ଠ ଦଶକ ମଧ୍ୟରେ ରଚିତ କବିତାମାନଙ୍କ ପରି ଆଜିର (ସପ୍ତମ ଓ ଅଷ୍ଟମ ଦଶକର) କବିତାରେ ଚିତ୍ରକଳ୍ପ ଏକମାତ୍ର ଧ୍ୟେୟ ନ ହେଲେହେଁ ନିବିଡ଼ ରସାନୁଭୂତିରେ ଏହାର ସହଯୋଗିତା ଅନସ୍ୱୀକାର୍ଯ୍ୟ । ପ୍ରକୃତ ପକ୍ଷେ ବକ୍ତବ୍ୟଟିକୁ ସିଧାସଳଖ କହିଦେଲେ ତାହା କଦାପି ପ୍ରଭାବ ବିସ୍ତାର କରିପାରିବ ନାହିଁ । ସବୁପ୍ରକାର ଉପମା, ରୂପକ ମଧ୍ୟ ଏହି ଚିତ୍ରକଳ୍ପର ଦ୍ୟୋତନା ମଧ୍ୟରେ ନିହିତ । ଚିତ୍ରକଳ୍ପ ଅର୍ଥ ପ୍ରକୃତ ବସ୍ତୁ ନୁହେଁ । ରୂପ ଓ ଗୁଣରେ ଅବିକଳ ସେହି ବସ୍ତୁର ଅନୁରୂପ । ତେଣୁ ଚିତ୍ରକଳ୍ପର ଦାୟିତ୍ୱ ଅନେକ । ଏହା ଅଭିବ୍ୟକ୍ତିର ଅପରିହାର୍ଯ୍ୟ ଅଙ୍ଗ । ବୌଦ୍ଧିକ ଓ ଇନ୍ଦ୍ରିୟଗ୍ରାହ୍ୟ ଏକ ଚିତ୍ର ଅଙ୍କନ କରି ବକ୍ତବ୍ୟକୁ ଅଧିକ ରସୋଜ୍ଜ୍ୱଳ, ପ୍ରାଣବନ୍ତ ଓ ସ୍ପଷ୍ଟ କରିବାରେ ଏହା ସାହାଯ୍ୟ କରେ । ଭାବାନୁଭୂତିକୁ ମୂର୍ତ୍ତି କରି ପାଠକର ଅବବୋଧକୁ ଉଦ୍‌ବୋଧିତ କରିଥାଏ । ଭାବାନୁଭୂତି ସ୍ତରର ସୂକ୍ଷ୍ମ ସ୍ପନ୍ଦନଗୁଡ଼ିକୁ ଇନ୍ଦ୍ରିୟ ନିକଟରେ ପରିଚିତ କରାଏ । ଚିତ୍ରକଳ୍ପର କିଞ୍ଚିତ ସୂଚନା ଏଠାରେ ଦିଆଯାଉ—

ଆଜିର ଜୀବନରେ ଆଶା, ଆଗ୍ରହ ଓ ଅଭିଳାଷର ଅସମର୍ଥତା ତଥା ଅଚରି-ତାର୍ଥତାକୁ ଲକ୍ଷ୍ୟକରି କବି ରମାକାନ୍ତଙ୍କର ଏ ଚିତ୍ରଟି—

"କାହାଣୀ ସରିବ ନାହିଁ, ଶବ୍ଦ ଅନ୍ଧ ଭିକାରୀଙ୍କ ପରି
ବୁଲୁଥିବେ ଅପନ୍ତରା ଇତିହାସ ଯାକ
ବା ମୂକଲୋକଙ୍କ ପରି ବର୍ଣ୍ଣହୀନ ଶୂନ୍ୟତା ଭିତରେ
ରହିଥିବେ"—

(ଘିଷ୍ଟାରା)

ଏ ପ୍ରକାର ଅଚରିତାର୍ଥତା ଓ ତଜ୍ଜନିତ ଆକୁଳତାକୁ କବି ମୂକ ଲୋକର କଣ୍ଠ-ନାଳୀରେ ବର୍ତ୍ତମାନଙ୍କ ନିଶବ୍ଦ ରକ୍ତ ରୂପେ ଚିହ୍ନିତ କରିଛନ୍ତି । ଅନ୍ଧକାର ଅପରାହ୍ନରେ ଘୂରିଲାପରି ଶବ୍ଦମାନେ ଇତସ୍ତତଃ ଘୂରି ବୁଲୁଥିବେ—କୌଣସି ସାର୍ଥକତାରେ ପହଞ୍ଚି ପାରିବେ ନାହିଁ । ଯୌବନ କାଳର ଦୁର୍ବାର ଆଶା, ଆକାଂକ୍ଷା ଓ ସ୍ୱପ୍ନର ପରବର୍ତ୍ତୀକାଳୀନ ବିପର୍ଯ୍ୟୟ, ତତ୍‌ସମ୍ଭୂତ ଯନ୍ତ୍ରଣା ଏବଂ ଅନିବାର୍ଯ୍ୟତା ମଧ୍ୟରେ ଯୌବନର ବିଳୟ କବି ସୀତାକାନ୍ତଙ୍କ ସଂଯୋଜିତ ଏକ ଚିତ୍ରକଳ୍ପରେ ପ୍ରମୂର୍ତ୍ତ—

"ବସନ୍ତ ମରିବାର ଏକୁଟିଆ ନିଶବ୍ଦ ଛେଳିଛୁଆଟିପରି
ବିପର୍ଯ୍ୟସ୍ତ, କ୍ଷତ-ବିକ୍ଷତ ସ୍ୱାସ୍ଥ୍ୟ, ଆଶାସ୍ଥି ଅପେକ୍ଷାରେ
ରକ୍ତହୀନ ହାଲଦିଆ
ତାର ପ୍ରାଥମିକ ଦୁର୍ବାର ଅଭିଳାଷର ନିଶ୍ଚେଷ୍ଟ
ଶରୀର"—

'ଗ୍ରୀଷ୍ମ, ବୁଢ଼ାଲୋକ'

ନିଜର ଅତୃପ୍ତି ଓ ଆକାଂକ୍ଷିତ ଶରୀରଟିକୁ ରୂପ ଦେଲାବେଳେ କବିଙ୍କ ମୁଗ୍ଧ ଅନୁଭବ ବାଙ୍ମୟ ହୁଏ ଚିତ୍ରଟି ମଧ୍ୟରେ—

"ଏଠି ତମ ଦେହର ନିଭୃତ
ଗୁଇ ଗୁଇ ସଡ଼କର ପ୍ରତି ମୋଡ଼େ ମଧୁର ସୋରେଇ"

କିମ୍ବା ଦୁଃଖର ଏକ ହୃଦୟ-ସଂବେଦୀ ଚିତ୍ର ଆଖି ଆଗରେ ଖୋଲିଯାଏ—

"କହୁ ମୋର ଲୋଚ୍ୟୁକୋଷ୍ଠ ବିଛଣାରୁ
ବିଷାକ୍ତ ଶରଚରେ ଘାଏଲ ଚଢ଼େଇପରି ଉଠି ଧୀରେ ଧୀରେ
ଗ୍ଳାନିଯାଏ ମୋର ଦୁଃଖ"—

(ସପ୍ତମ ଋତୁ—ରମାକାନ୍ତ ରଥ)

ଆଜିର ଓଡ଼ିଆ କବିତା ଏହିପରି ବହୁ ଭାବ-ପ୍ରବୋଧକ ଚିତ୍ରକଳ୍ପ ସଂଯୋଗରେ ଋଦ୍ଧିମନ୍ତ ।

କବିତାର କଳାତ୍ମକ ଅଭିବ୍ୟକ୍ତି ପାଇଁ ଏ ଯୁଗରେ ଯେଉଁ ବିଭାବଟି ସର୍ବାପେକ୍ଷା ଅଧିକ ଆଧୁନିକ ଓ ସଫଳ, ତା ହେଉଛି କବିର ପୌରାଣିକ ଚେତନା । ପୁରାଣ ଚରିତ୍ର ଓ ପରିବେଶର ଗଭୀର ସଂସ୍କାରବୋଧ ସହ ଆଧୁନିକ ଜୀବନସଂକଟର ସଂଘର୍ଷରୁ ସମ୍ଭୂତ ଏହି ଚେତନା କବିତାରେ ସଂଚରିତ ହୋଇଥାଏ । ଅସରନ୍ତି ଜୀବନ-ବୈଚିତ୍ର୍ୟର ଗନ୍ତାଘର ଏହି ପୁରାଣ ସାହିତ୍ୟ । ଏଇ ପୁରାଣ ପୃଥିବୀରେ କାଳଭେଦରେ ପୌରାଣିକ ମାନବର ଜୀବନସଂଗ୍ରାମ ଏବେବି ଅବ୍ୟାହତ । ଏବେବି କ୍ଳିଷ୍ଟଦର୍ଶନ-ଲାଳସୀ ଅନ୍ଧ ରାଜଦାଣ୍ଡରେ

ରଥ ବାହି ଚାଲିଛି—ଜନ୍ମ ଜନ୍ମ ଧରି ଚାଲି ଲାଗିଛି । ତା'ର ମୁମୁକ୍ଷୁ ଅନ୍ତର କାନୁ ସମର୍ପଣ ଅପେକ୍ଷା ସଂଶୟରେ ଅଧିକ ଆନ୍ଦୋଳିତ । କବି ଗୁରୁପ୍ରସାଦ ମହାନ୍ତି ସେଇ ସଂଶୟର ଚିତ୍ର ଆଙ୍କିଛନ୍ତି—

"ତୁମେ ମୋର ଏ ଦେହର ଚିରନ୍ତନ ଏ ଯାତ୍ରାର ଧୂସର କ୍ଲାନ୍ତିରୁ
ଆଜି କ'ଣ ମୁକ୍ତି ଦେବ ସମସ୍ତ ଓ ସମୟର ସଙ୍ଘାତ ରକ୍ତପାତ ଠାରୁ ?
× × ଏ ଯୁଗର ଏ ଗ୍ଲାନିରେ ତୁମର ଯଦିଚ ଏଠି ସମ୍ଭାବନା
ତଥାପି ଏ ଯାତ୍ରା ମୋର ଶୁଭ ହେଉ, ପୂର୍ଣ୍ଣ ହେଉ ତୁମର କ୍ଷମାରେ
ଦେହର ସୀମାନ୍ତ ଡେଇଁ, ପାଶହୋଇ କାରୁଣ୍ୟ ଓ ତୁମର ସହାର ।"

(ଅକ୍ରୂର ଉବାଚ)

ଆଜି ମଧ୍ୟ କୁବୁଜା ବଞ୍ଚିରହିଛି ତା'ର ପ୍ରାଣରେ ଆକୁତି ନେଇ । ଅତ୍ୟାଗୃହୀ ରାଜପୂଜାର ଗ୍ଲାନି ଭାରରେ ପିଷ୍ଟ ତା'ର ଅସ୍ତିତ୍ୱ । ତଥାପି ତା'ର ପ୍ରାଣରେ ନିଭୃତ ଆକାଂକ୍ଷିତ ସ୍ୱପ୍ନଟି ପୁଷ୍ପର ସୁଗନ୍ଧ ପରି ପ୍ରସରିଯାଇଛି ଚିତ୍ରଟିର ପ୍ରତିଟି ଶବ୍ଦରେ—

"ଆଜି ତୋ'ର ପାଇଁ
ଦେହ, ମନ, ହୃଦୟ ଓ ଆତ୍ମାର ନିଦାଘ ଶେଷେ
ରୌଦ୍ରକାଳ ନିପୀଡ଼ିତ ସମୟର ପଥଶେଷେ
ସୀମିତ, ଅପୂର୍ଣ୍ଣ, ରୁଗ୍‌ଣ କୁବ୍‌ଜା ପ୍ରାଣ ମରୁ ଶେଷେ
ସ୍ୱପ୍ନ କ୍ଷମା କୁବୁଜା ଯେ
ଦେହ, ମନ, ହୃଦୟ ମଣ୍ଡାଇ
ବସିଅଛି ପଥ ତୋର ଚାହିଁ ।"

('କୁବୁଜା ପାଇଁ ଗୋଟିଏ ସଙ୍ଗୀତ'—ସୀତାକାନ୍ତ ମହାପାତ୍ର)

ଅ.ମ ଧର୍ମ-ପରମ୍ପରାରେ ରାଧା ଜୀବାତ୍ମା ଓ କୃଷ୍ଣ ପରମାତ୍ମା ରୂପେ କଳ୍ପିତ । ଜୀବାତ୍ମାର ସକଳ ସାଂସାରିକତା ତୁଚ୍ଛ ହୋଇଯାଏ ପରମାତ୍ମାଙ୍କ ପ୍ରତି ଉନ୍ମୁଖତାରେ । ଲୌକିକ ଅର୍ଥରେ ମଧ୍ୟ ରାଧା ଶ୍ରେଷ୍ଠ ପ୍ରେମିକା । କୃଷ୍ଣ ପ୍ରେମିକ ପ୍ରବର । ଅଥଚ ପରିବେଶର ପ୍ରତିକୂଳତା ଅନ୍ତହୀନ । ହୃଦୟର ନିବିଡ଼ ଭାବାବେଗ ଯୁଗେ ଯୁଗେ ପ୍ରତିକୂଳତାରେ ଆକ୍ରାନ୍ତ । ଅଥଚ ଏହି ପ୍ରେମ ଓ ଭାବାବେଗ ଏତେ ଦୃଢ଼ ଓ ନିବିଷ୍ଟ ଯେ, ତାହା କୌଣସି ପ୍ରତିକୂଳତା ସତ୍ତ୍ୱେ ଦୁର୍ବଳ ହୁଏ ନାହିଁ । ସାଧାରଣ ଜୀବନର ତୁଚ୍ଛ ସାଂସାରିକତା ମଧ୍ୟରେ ଏହି ଉର୍ତ୍ତୀର୍ଣ୍ଣ ପ୍ରେମର ସନ୍ତୋଷବିଧାନ ଘଟେ ନାହିଁ । ନିରାକାର ନାଗରଙ୍କ ପ୍ରେମରେ ବିହ୍ୱଳା ଶ୍ରୀରାଧା ଘରଦ୍ୱାର, ଗାଈବାଛୁରୀ, ପିଲାଛୁଆଙ୍କୁ ନେଇ ସନ୍ତୁଷ୍ଟ ରହି ପାରନ୍ତି ନାହିଁ । ଏକ ଅବ୍ୟକ୍ତ ବିପୁଳ ଆକର୍ଷଣରେ ସେ ଉଚ୍ଚାଟିତ । ଏହି ଆଭ୍ୟନ୍ତରୀଣ ଉଚ୍ଚାଟନର ସ୍ୱରୂପ ସ୍ପଷ୍ଟ ହୋଇଯାଏ ନିମ୍ନଲିଖିତ କେତୋଟି ପଂକ୍ତିରେ—

"ମୁଁ କିନ୍ତୁ ତମର ନାଆଁ ଉଚ୍ଚାରଣ କରି ବସିଲେ ହିଁ
କାହିଁକି ହଠାତ୍ ମୋର ଜିଭ ଶୁଖିଯାଏ ?
ଗାଈଗୋରୁ, ପିଲାଛୁଆ ଇତ୍ୟାଦିରେ ମୋର
ଆଗ୍ରହ ବଳାଇ ନାହିଁ କାହିଁକି ଏ ଯାଏ ?"

(ଶ୍ରୀରାଧା—ରମାକାନ୍ତ ରଥ)

ସେଇ ପୁରାଣ ମଣିଷ, ଏକାନ୍ତ ନିବିଡ଼ ତା'ର ଆକାଂକ୍ଷା ଓ ସେହି ଆକାଂକ୍ଷାର ପରିପୂରଣ ପଥରେ ପୃଥିବୀର ସକଳ ପ୍ରତିବନ୍ଧକ । ଆଜିର ମଣିଷ ପାଇଁ ମଧ୍ୟ ସତ୍ୟ ଓ ଅପରିବର୍ତ୍ତନୀୟ । କିନ୍ତୁ ଆଜିର କବି ତାହାକୁ ନୂତନ ଦୃଷ୍ଟି ଓ ଅଭିନବ ଉପଲବ୍ଧିରେ ଅଭିବ୍ୟକ୍ତି କରୁଅଛି । ଏକ ଜର୍ଜରିତ ଅବସ୍ଥାରେ ପୁରାଣକଳ୍ପ (ମିଥ୍) ହେଉଛି ସାମୂହିକ ସ୍ୱପ୍ନର ରୂପକଳ୍ପ । ଆଜିର କବି ମିଥ୍ ମାଧ୍ୟମରେ ସ୍ୱଉପଲବ୍ଧି ବିଶ୍ୱର ତଥା ଅନୁଶୀଳନକୁ ବ୍ୟକ୍ତ କଲାବେଳେ ମିଥ୍‌କୁ ନୂଆକରି ବ୍ୟାଖ୍ୟା କରୁଛି । ପୁରାଣର ଘଟଣା ଓ ପରିବେଶ ଅବିକଳ ଅଙ୍କିତ ପରି ନ ହୋଇ ରୂପାନ୍ତର ଗ୍ରହଣ କରି ଯୁଗୋପଯୋଗୀ ହେଉଛି । ସ୍ଥଳବିଶେଷରେ କାଙ୍କ୍ଷିତ ପରିବର୍ତ୍ତିତ ମଧ୍ୟ ହେଉଛି । ରମାକାନ୍ତଙ୍କ 'ଯଶୋଦା' ପୁରାଣକଳ୍ପର ଏକ ଅର୍ଥମୟ ରୂପାନ୍ତରଣ ରୂପେ ଗୃହୀତ ହେବ—

"ମୁଁ ତୋତେ ଦେଖୁଚି ଠିକ୍
ନିଆଁ ପରି ଘଣ୍ଟା ଦାଉ ଦାଉ
ମୋ ପାଗଳାମିର ଅତି ମନୋରମ ସ୍ୱପ୍ନ
ରାତିସାରା, ଦିନସାରା ଲାଗି ରହିଥାଉ,
ତୁ ଉଡଉଡ଼ାଳିଆଟିଏ
ପଡ଼ିଆ ଭିତରେ ଥିବା ଗଛର ଡାଳରେ
ବସିଅଛୁ, କୋଟି କୋଟି ରୂପ ତୋର,
ଏକୁ ଆରେକ ପଡ଼ୁଛି ବଳି ସୁନ୍ଦରପଣରେ ।"

ଏଥିରେ ଯଶୋଦାଙ୍କ ଉପଲବ୍ଧିରେ ଶ୍ରୀକୃଷ୍ଣଙ୍କ ଅଲୌକିକପଣ ବର୍ଣ୍ଣିତ । ଅନ୍ୟତମ କବି ସୀତାକାନ୍ତ 'ଆରକ୍ତଣୀ' କବିତାରେ ଚର୍ଚ୍ଚିଥିବା ଯଶୋଦାଙ୍କ ସହ ଏହି ଯଶୋଦାଙ୍କର ଅନ୍ତର୍ନିହିତ ସାମଞ୍ଜସ୍ୟ ରହିଛି । ମାତ୍ର ସ୍ନେହ ଯଶୋଦାଙ୍କ ବିଭୋରତା ମାଧ୍ୟମରେ ପୁରାଣକଳ୍ପର କାଙ୍କ୍ଷିତ ପରିବର୍ତ୍ତନ ଘଟିଅଛି । 'ମାନସ ମୃଗୁଣୀ' ସେହିପରି ଏକ କବିତା—ଏଠାରେ କାତର ସ୍ୱରରେ ପ୍ରାର୍ଥନାରତା ମୃଗୁଣୀ ନାହିଁ, ବରଂ ମୃଗୁଣୀର ସକ୍ରିୟ ଅଭିମାନବ୍ୟଞ୍ଜକ ଅଭିଯୋଗର ସ୍ୱର ତୋଳାଛି—ଆଧୁନିକ ବ୍ୟକ୍ତିସତ୍ତାର ପ୍ରତୀକ ମୃଗୁଣୀ 'ପଦାମ୍ବୁଜେ ଶରଣ ପତିତାଂ ରକ୍ଷ ବା ନୈବ ରକ୍ଷ' ପରି ସମର୍ପଣର ବାଣୀ ଉଚ୍ଚାରଣ କରେ ନାହିଁ । ଈଶ୍ୱରଙ୍କ ସର୍ବଜ୍ଞପଣ ପ୍ରତି ତା'ର କ୍ରୂରନ୍ତ ଅଭିଯୋଗ—

"ଧାତୁଖଣ୍ଡେ ଘୋରିପଡ଼ା ମୂନିଅାଁ ହେବାବେଳେ
ପଡ଼ିଲେ ତୋ'ର ପାଦରେ ପରି ଫୋଡ଼ିହବାର ସ୍ପର୍ଶ ପାଉ ?
ଏ ବନସ୍ତରେ ସମସ୍ତ ଫୁଲ୍ ଧାତବ ତୀକ୍ଷ୍ଣ ଆଗ୍ନେୟ ହେଲି
ଆଉ ତୁ ଜାଣିନାହୁଁ ?"

(ରାଜେନ୍ଦ୍ରକିଶୋର ପଣ୍ଡା)

ହିଂସା, ଷଡ଼ଯନ୍ତ୍ରର ଶିକାର ହେଉଥିବା ବ୍ୟକ୍ତିସତ୍ତା ଅକୁଳ ସମର୍ପଣରେ ସ୍ୱର ନ ତୋଳି ବରଂ ଈଶ୍ୱରଙ୍କୁ ପ୍ରଶ୍ନ କରେ, ତାଙ୍କର ଅବିଚାରକୁ କାରିଙ୍ଗୁଳି ଦେଖାଏ—କୌଣସିମତେ ବଞ୍ଚିଯିବା ତା'ର ଉଦ୍ଦେଶ୍ୟ ନୁହେଁ, ସ୍ୱାଭିମାନକୁ ପ୍ରତିଷ୍ଠା କରି ବଞ୍ଚିବାକୁ ସେ ଚାହେଁ—

"ପ୍ରତୀକ୍ଷା କରିଛୁ ପ୍ରାର୍ଥନାକୁ, ଆ' ଡାକକୁ ଛାଡ଼ିପଦକୁ ?
× × ସୁନ୍ଦର ନାଲି ନିଆଁ । ଖା ମତେ ଖା ।"

(ମାନସ ମୃଗୁଣୀ)

ମହାଭାରତ ଯୁଦ୍ଧରେ ବିଷାଦଗ୍ରସ୍ତ ଅର୍ଜୁନଙ୍କୁ କର୍ତ୍ତବ୍ୟ କର୍ମ ଓ ଜୀବନର ସତ୍ୟ ବୁଝାଇବାକୁ ପଣ କରିଥିଲେ ଶ୍ରୀକୃଷ୍ଣ । ଅବସାଦଗ୍ରସ୍ତ ଅର୍ଜୁନଙ୍କ ସମକ୍ଷରେ ରକ୍ତର ଗୋଟିଏ ରଙ୍ଗ— ସେ ରକ୍ତ ଜ୍ଞାତିର ହେଉ କି ଶତ୍ରୁର ହେଉ । ଅର୍ଜୁନ ତଥାପି ଯୁଦ୍ଧରେ ପ୍ରବୃତ୍ତ ହେଲେ । କବି ଏଠାରେ ଗୀତାର ବିଷାଦଯୋଗ ଓ କର୍ମଯୋଗକୁ ପାରମ୍ପରିକ ଭାବରେ ସ୍ୱୀକାର କରିନାହାନ୍ତି । ବରଂ ଶ୍ରୀକୃଷ୍ଣଙ୍କ ଦେବତ୍ୱ ପ୍ରତି ତାଙ୍କର ଘୋର ସନ୍ଦେହ—ପୁରାଣକଳ୍ପର ଘଟଣାବଳୀକୁ କବି ଆଧୁନିକ ମଣିଷର ସମ୍ବେଦନଶୀଳ ଦୃଷ୍ଟିରେ ଭିନ୍ନ ପ୍ରକାରେ ଦେଖିଛନ୍ତି—

"ତୀର ଖସିଯିବାର ତ ଥିଲି ଧନୁରୁ
ଖସିଲି ନାହିଁ କାହିଁକି ?
ଜ୍ଞାତିର ରକ୍ତ ଲାଲ୍
ଶତ୍ରୁର ରକ୍ତ ଲାଲ୍
ଅବକ୍ଷୟର ମୟୂରଚୂଳ ମଥାରେ ଖୋସି
ନାୟକ ମୋର..."

('ଅବସାଦର ରଥରେ ଅର୍ଜୁନ' — ହରପ୍ରସାଦ ଦାସ)

ତେଣୁ ସରସ ଶୈଳୀ ମାଧ୍ୟମରେ ପ୍ରତୀକ, ଚିତ୍ରକଳ୍ପ ଓ ପୁରାଣକଳ୍ପର ସଂଯୋଜନା ଆଜିର ଓଡ଼ିଆ କବିତାକୁ କଳାତ୍ମକ ଉତ୍କର୍ଷ ପ୍ରଦାନ କରିଥିବାର ଲକ୍ଷ୍ୟ କରାଯାଏ ।

(ଓଡ଼ିଆ-ତେଲୁଗୁ ଦ୍ୱିଭାଷିକ ସାହିତ୍ୟ ସମାବେଶରେ ପଠିତ)

## ବିଶ୍ୱାସ ଓ ଅଙ୍ଗୀକାର

**ପ୍ରସଙ୍ଗ :**

(କ) କବି ଯାହା ବିଶ୍ୱାସ କରେ ତାହା ଲେଖେ ନା ପାଠକମାନେ ଯାହା ବିଶ୍ୱାସ କରିବା ଉଚିତ, ତାହା ଲେଖେ ?

ଏଭଳି ଏକ ପ୍ରସଙ୍ଗର ଉତ୍ଥାପନ ହିଁ ଅବାନ୍ତର । ଅପରର ବିଶ୍ୱାସକୁ ନିଜର କରିବାକୁ ଗଲେ ସାହିତ୍ୟିକ ସ୍ୱବିଶ୍ୱାସ ପ୍ରତି ସତ୍ୟଶୀଳ ହୋଇପାରିବ କି ? ଅବଶ୍ୟ ଲେଖକ ଓ ପାଠକ ମଧ୍ୟରେ ସଂଯୋଗ ହିଁ ସାହିତ୍ୟର ଲକ୍ଷ୍ୟ । କିନ୍ତୁ ସାହିତ୍ୟିକ ଯଦି ପାଠକଙ୍କ ବିଶ୍ୱାସ ଅନୁଯାୟୀ ଲେଖିବ, ତେବେ ତାର ବ୍ୟବସାୟୀ ହେବା ଶ୍ରେୟସ୍କର । ସାହିତ୍ୟ ଜିନିଷପତ୍ର (commodity) ନୁହେଁ ଯେ ଗ୍ରାହକର ସୁହିଧା ଅନୁସାରେ ତିଆରି ହେବ । ସାହିତ୍ୟର ସମ୍ପର୍କ ହୃଦୟ ସହିତ ଏବଂ ସାହିତ୍ୟ ସ୍ରଷ୍ଟା ସମାଜର ଏକ ସଚେତନ ବିନ୍ଦୁ । ସ୍ୱଚେତନାରେ ପ୍ରତ୍ୟକ୍ଷୀଭୂତ ଦୃଷ୍ଟିଭଙ୍ଗୀକୁ, ସ୍ୱରକ୍ତରେ ପ୍ରତିପାଳିତ ବିଶ୍ୱାସକୁ ସେ ରୂପ ପ୍ରଦାନ କରି ପରିତୃପ୍ତି ଲାଭକରେ । ଏକଥା ସତ, ତା' ରଚନାରେ ଯେତେ ଅଧିକ ସଂଖ୍ୟକ ପାଠକ ଅନୁପ୍ରାଣିତ ହୁଅନ୍ତି, ସେ ସେତିକି ଅଧିକ ସୁଖୀ ହୁଏ । ହେଲେ, ପାଠକ କ'ଣ ବିଶ୍ୱାସ କରିବା ଉଚିତ, ତାକୁ ଆଖି ଆଗରେ ରଖି ସେ ଲେଖେ ନାହିଁ ।

ସେହି ପାଠକ ପୁଣି କିଏ ? ସାହିତ୍ୟ ସଂରଚକକୁ ବାଦ୍‌ଦେଲେ ବାକି ସମସ୍ତେ ପାଠକ, ପାଠକ ଏକ ବିରାଟ ଜନତା । ଜନତାର ବିଶ୍ୱାସ ଓ ଅଭୀପ୍‌ସା ପୁଣି ବହୁବିଧ । ପ୍ରତ୍ୟେକ ବ୍ୟକ୍ତି ସ୍ୱ ହୃଦୟ-ବୃତ୍ତିକୁ ଉଦ୍‌ବୁଦ୍ଧ କରୁଥିବା ସାହିତ୍ୟକୁ ଭଲପାଏ । ଯୁକ୍ତି ଛଳରେ ଏପରି କହିବା ଅପ୍ରାସଙ୍ଗିକ ହେବ ନାହିଁ ଯେ, ଅସଂଖ୍ୟ ପାଠକଙ୍କ ବିଶ୍ୱାସ ଏକମୁଖୀ ହୋଇ ନପାରେ । ତେଣୁ ସେହି ବିଶ୍ୱାସକୁ ଅବଲମ୍ବନ କରିବା ଲେଖକ ପକ୍ଷରେ ପ୍ରମାଦପୂର୍ଣ୍ଣ । ନିଜର ବିଶ୍ୱାସକୁ ନେଇ ବଞ୍ଚିଥିବା କବି, ଅପରର ବିଶ୍ୱାସକୁ ପ୍ରକାଶ କରିବ କିପରି ? ସେ ବିଶ୍ୱାସରେ ତାର ହୃଦୟ ଆନ୍ଦୋଳିତ ହେବ ବା କାହିଁକି ? ଜଣେ ସତ୍‌କବି ବିଶ୍ୱାସରେ ପ୍ରତ୍ୟକ୍ଷ କରିଥିବା ସତ୍ୟକୁ ଶବ୍ଦଗତ କରିଥାଏ । ତଥାପି ପାଠକ ଓ ଲେଖକର ବିଶ୍ୱାସ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ନ ରହିବା କଥା । କାରଣ, କେବଳ ପ୍ରକାଶକ୍ଷମ ହୋଇଥିବାରୁ କବି ବା ଲେଖକ ପାଠକଠାରୁ ଭିନ୍ନ । କବି ଗେଟେଙ୍କ କଥାରେ "ଯନ୍ତ୍ରଣା-କାତର ହେଉଥିଲେ ବି ଲୋକମାନେ ମୂକ, କେବଳ ଈଶ୍ୱରଙ୍କ

କରୁଣାରୁ ହିଁ ମୁଁ ମୋ' ଯନ୍ତ୍ରଣାକୁ ପ୍ରକାଶ କରିପାରେ ।'' ଯେହେତୁ କବି ପାଠକ ସହିତ ଏଇ ସମାଜରେ ଏକ ପ୍ରକାର ରାଜନୀତିକ ଅ୍ ସ୍ଥା ଓ ନୈତିକ ମାନଦଣ୍ଡ ଭିତରେ ବଞ୍ଚୁଛି, ଉଭୟଙ୍କର ବିଶ୍ୱାସ ଏକ ହୋଇଥିବା ଅସ୍ୱାଭାବିକ ନୁହେଁ । ଏପରିକି ଉଭୟଙ୍କର ବିଶ୍ୱାସର ଉତ୍ସ ମଧ୍ୟ ଗୋଟିଏ—ସେଇ ଏକା ସମାଜ, ଅର୍ଥନୀତି, ଇତିହାସ ଓ ପରମ୍ପରା । ତେଣୁ ଉଭୟଙ୍କ ଚେତନା ସମପର୍ଯ୍ୟାୟର ହୋଇଥିଲେ ହେଁ ଲେଖକର ଚେତନାରେ ଉଦ୍‌ଭାସିତ ଯୁଗ ଓ ଯୁଗୋତ୍ତର ସତ୍ୟ ପାଠକର ନିଜସ୍ୱ ବିଶ୍ୱାସର ଅଙ୍ଗୀଭୂତ ହୋଇପାରେ ।

ତା' ପରେ, ବ୍ୟକ୍ତିର ବିଶ୍ୱାସ ତା'ର ଆଭ୍ୟନ୍ତରୀଣ ଜୀବନର ନିର୍ଯ୍ୟାସ—ଉଚିତ ଅନୁଚିତର ପ୍ରଶ୍ନ ସେଠାରେ ମୂଲ୍ୟହୀନ । ପାଠକ ଯାହା ବିଶ୍ୱାସ କରିବା ଉଚିତ, ଲେଖକ ତାହା ବିଶ୍ୱାସ କରୁ ନଥାଇପାରେ । ତେବେ ଯୁଗର ମନନ ଓ ଅଭୀପ୍ସାକୁ ଲେଖକ ଯେ ସ୍ପଷ୍ଟ ଚହ୍ନି ନପାରେ, ତା' ନୁହେଁ, ସେହି ବିଶ୍ୱାସ ଓ ଅଭୀପ୍ସାକୁ ସେ ନିଜ ଭିତରେ ମଧ୍ୟ ପ୍ରତ୍ୟକ୍ଷ କରିପାରେ । କେତେକ ପାଠକ ତରଳ ଆବେଗର ଲଘୂ ଶିହରଣ ପାଇଁ ପୁସ୍ତକ ପଢ଼ନ୍ତି, ଆଉ କେତେକ ସାମାଜିକ ପ୍ରତିବଦ୍ଧତାର ସ୍ୱରରେ ଉଦ୍‌ବୁଦ୍ଧ ହୁଅନ୍ତି ଏବଂ ଅନ୍ୟ କେହି ଜୀବନର ଏକ ଉଦାତ୍ତ ମୂଲ୍ୟବୋଧରେ ବିଶ୍ୱାସ ସ୍ଥାପନ କଲାବେଳେ, କେହି ହତାଶାର ବିଦୀର୍ଣ୍ଣସ୍ୱରକୁ ଆପଣାର ମନେକରନ୍ତି । କବି ତେବେ କେଉଁ ବିଶ୍ୱାସର ଅନୁସରଣ କରିବ ? ଲଘୂ ଶିହରଣକାମୀ ପାଠକ ପାଇଁ ଲେଖିବାକୁ ବସିବା ତାର ରୁଚିବିରୁଦ୍ଧ ହୋଇପାରେ ଏବଂ ସାମାଜିକ ପ୍ରତିବଦ୍ଧତାରେ ସେ ଆସ୍ଥାବାନ୍ ହୋଇ ନଥାଇପାରେ । କାରଣ ସମାଜର ସ୍ପୃହା ପରିବର୍ତ୍ତନଶୀଳ । ଆଜି ସମାଜର ସ୍ପୃହା ଯାହା, ଶହେ ବର୍ଷ ପୂର୍ବେ ତାହା ହୁଏତ ନଥିଲା ଏବଂ ଶହେବର୍ଷ ପରେ ସେ ସ୍ପୃହା ବଦଳି ଯାଇଥିବ । ଫଳରେ ପାଠକର ବିଶ୍ୱାସଦ୍ୱାରା ସ୍ୱ-ସୃଜନଶୀଳତାକୁ ପରିଚାଳିତ କରିବା କବି ପକ୍ଷରେ ସ୍ପୃହଣୀୟ ନୁହେଁ । ମନେ କରନ୍ତୁ, ଭାରତରେ ଦାରିଦ୍ର୍ୟ ଅଛି । ସାମ୍ୟବାଦୀ ଦର୍ଶନର ପ୍ରତିଫଳନ ପାଠକକୁ ଭଲଲାଗିବ । ମାତ୍ର ଏଥିରେ ବିଶ୍ୱାସ କରୁନଥିବା ସାହିତ୍ୟିକ ଯଦି ପାଠକର ବିଶ୍ୱାସକୁ ଉଜ୍ଜୀବିତ କରିବାକୁ ଆଦର୍ଶବାଦୀ ସାହିତ୍ୟ ଲେଖିବସିବ, ଯାହା ବିଶ୍ୱାସ କରେନା ତାହାହିଁ ଲେଖିବ, ତେବେ ସେ କବି ପଦବାଚ୍ୟ ହେବ ନାହିଁ । କାରଣ, ସାହିତ୍ୟର ଇତିହାସରୁ ଆମେ ଅବଗତ ଯେ, ଲେଖକ ନିଜ ଅନ୍ତଃକରଣରେ ଯାହା ବିଶ୍ୱାସ କରେ, ଉପଲବ୍‌ଧି କରେ, ତାହାର ରୂପାୟନ ହିଁ କାଳଜୟୀ ସାହିତ୍ୟ ସୃଷ୍ଟି କରିଥାଏ । ଯଦି ତାର ଲେଖା ସାମାଜିକ ସ୍ଥିତାବସ୍ଥାରେ ବିପ୍ଳବ ଆଣିଥାଏ, ତେବେ ସେହି ବିପ୍ଳବଚେତନା କବି ନିଜସ୍ୱ ବିଶ୍ୱାସ-ଭୂମିରୁ ଉତ୍ସାରିତ ହୋଇଥିବ ନିଶ୍ଚୟ । ତା'ହେଲେ ଯାଇ ବିପ୍ଳବରେ ବିଶ୍ୱାସୀ ପାଠକକୁ ସେହି ଲେଖା ଉଦ୍‌ବୁଦ୍ଧ କରିବ ।

ଏପରି ବି ହୋଇପାରେ, ଆଜି କବି ଯାହା ବିଶ୍ୱାସ କରେ, ପରବର୍ତ୍ତୀ କାଳରେ ତାଠୁଁ ଦୂରେଇ ଯାଇପାରେ, ମାତ୍ର ଆଜି ଯାହା ସେ ଲେଖୁଛି, ସେହି ବିଶ୍ୱାସର ଭୂମିରେ ଦୃଢ଼ ହୋଇ ଲେଖୁଛି । ଯେଉଁଠାରେ ପାଠକର convictionକୁ କବି ଲକ୍ଷ୍ୟ କରୁଥିବ, ସେ conviction ମଧ୍ୟ ତା ନିଜର ହୋଇଥିବ । ପୁନଶ୍ଚ କବି ଯେଉଁଠାରେ କାଳ-ସଚେତନ, ତା'ର ରଚନାରେ ବହୁସଂଖ୍ୟକ ପାଠକ ଉଦ୍‌ବୁଦ୍ଧ ହେବେ ହିଁ ହେବେ । ଏଠାରେ ପ୍ରଶ୍ନ ଉଠିବା ସମ୍ଭବ ଯେ, କବି ପାଠକ ପ୍ରତି ଏ ପ୍ରକାର ଧ୍ୟାନ ଦିଅନ୍ତି କାହିଁକି ? ରଚନାକୁ ଲୋକପ୍ରିୟ କରିବାକୁ ? ଲୋକପ୍ରିୟତା କଳାତ୍ମକ ଉତ୍କର୍ଷର ମାପକାଠି ନୁହେଁ । କାଳଜୟୀ ସାହିତ୍ୟ ଅଧିକାଂଶତଃ ଲୋକପ୍ରିୟ ହୋଇ ନ ଥାଏ । ବେଳେ ବେଳେ ସାଧାରଣ କବି ସମସାମୟିକ କାଳରେ ଖୁବ୍ ଯଶ ଅର୍ଜନ କରିଥାନ୍ତି ଏବଂ ଖୁବ୍ ବଡ଼ ବଡ଼ କବିମାନେ ଜୀବନକାଳରେ ଅବହେଳିତ ହୋଇଥାନ୍ତି । କବି ଦୀନକୃଷ୍ଣଙ୍କର ବିଡ଼ମ୍ବିତ କାବ୍ୟିକ ଜୀବନର କଥା କିଏବା ନ ଜାଣେ ? ତାଙ୍କ ସମୟର ଗଭୀର ଅନୁଭବ-ଶୀଳ ସ୍ୱାଭିମାନୀ କବି ସେ, ଅଥଚ କେଡ଼େ ଅବହେଳିତ ତାଙ୍କର କାବ୍ୟସାଧନା ! ପରବର୍ତ୍ତୀ କାଳରେ ମଧ୍ୟଯୁଗକୁ ଅନାଇଲେ ଦୀନକୃଷ୍ଣ ଉଜ୍ଜ୍ୱଳ ରତ୍ନଟି ପରି ପ୍ରତୀୟମାନ ହୁଅନ୍ତି । ସେହିପରି ହୋମର୍‌ଙ୍କେ—ଅପାର କବିତ୍ୱ ଓ ଉଦାରତାର ଅଧିକାରୀ ଏହି କବି ଅତ୍ୟନ୍ତ ଅବହେଳିତ ଅବସ୍ଥାରେ ଜୀବନ ବିତାଇଛନ୍ତି । କବି ଓମାର ଖୟ୍ୟାମଙ୍କ କବିତ୍ୱ ତାଙ୍କ କାଳରେ ଯଥୋଚିତ ମର୍ଯ୍ୟାଦାଲାଭ କରିପାରି ନାହିଁ । ସୁଫି ଓ ସାକୀର ଏହି କବିଙ୍କୁ ସମସାମୟିକ କାଳ ଭୁଲ ବୁଝିଥିଲା । ତାଙ୍କ ମୃତ୍ୟୁର ପ୍ରାୟ ଦୁଇଶହ ବର୍ଷ ପରେ ତାଙ୍କ କାବ୍ୟ-ପ୍ରତିଭା ସାରା ପୃଥିବୀରେ ସ୍ୱୀକୃତ ଲାଭକଲା । ଏମାନେ ଥିଲେ କାଳଜୟୀ ସ୍ରଷ୍ଟା । ପାଠକର ବିଶ୍ୱାସକୁ ଗ୍ରହଣ କରି ନିଜ ବିଶ୍ୱାସକୁ ପରିତ୍ୟାଗ କରିବା କୌଣସି ସତ୍‌କବି ପକ୍ଷରେ ସମ୍ଭବ ହୋଇ ନ ଥାଏ ।

କବି ଅନ୍ତଃପ୍ରେରଣାର ବଶବର୍ତ୍ତୀ ହୋଇ ନିଜର ଅନୁଭବ ଓ ବିଶ୍ୱାସକୁ ରୂପ ଦିଏ—ଅନ୍ୟର ପସନ୍ଦ ଅପସନ୍ଦକୁ ଲକ୍ଷ୍ୟ ରଖି ଲେଖେନା । ବର୍ଣ୍ଣାଡ଼ ଶ'. ଏକଥାକୁ ଅଧିକ ପ୍ରାଞ୍ଜଳ କରି କହିଛନ୍ତି—'Poets speak to themselves, the world only overhears' । କବି ନିଜକୁ ନିଜେ ସବୁ କିଛି କହିଯାଏ । ବଡ଼ପାଟିରେ ଡାକି କହିବା ତା'ର ଧର୍ମ ନୁହେଁ, ବିଶ୍ୱ ତା'ର ଉଚ୍ଚାରଣକୁ ଶୁଣିପକାଏ ମାତ୍ର । ତା ବୋଲି କବି ଯେ ପାଠକକୁ ଆଡ଼େଇଯିବ, ଏକଥା ଆଦୌ ବିହିତ ନୁହେଁ, କିନ୍ତୁ କବିତା ପ୍ରଗ୍ଧର propaganda ନୁହେଁ । କବି ମଧ୍ୟ କେବଳ ସମସାମୟିକ କାଳପାଇଁ ଲେଖେ ନାହିଁ । ଅନାଗତ ଭବିଷ୍ୟତ କାଳପାଇଁ ମଧ୍ୟ ଲେଖିଥାଏ । ଆଜି ଅବହେଳିତ ହୋଇଥିବା ସାହିତ୍ୟ ଆସନ୍ତାକାଲି ପ୍ରଭୂତ ଯଶ ସମ୍ମାନ ଓ ଲୋକପ୍ରିୟତା ଅର୍ଜନ କରିଥିବାର ଉଦାହରଣ ପ୍ରଚୁର ରହିଛି ।

କବିର ଭୂମିକା ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପାଠକ ଭିତରର ସୁପ୍ତ ଚେତନାକୁ ଚିଆଇଁ-ଦେବା, ଜୀବନପ୍ରତି ଉପଲବ୍‌ଧିକୁ ଶାଣିତ କରିବା କବିର କାମ । ପାଠକକୁ ନୂତନ

ପାଠକରେ ପାଲିତ କରେ ସେ । ନୂଆ ଦିଗନ୍ତ ଆଡ଼କୁ ଅଗ୍ରସର ହେବାର ଉତ୍ସାହ ପ୍ରଦାନ କରେ । ଶ୍ରେୟ ବିଶ୍ୱାସରେ ତା'ର ଅନ୍ତରାତ୍ମାକୁ ଅଭିଷିକ୍ତ କରାଏ । ପାଠକ ପ୍ରତି ସେ ସବୁବେଳେ ସଚେତନ । କିନ୍ତୁ ସେ ସଚେତନତା ଅଲଗା ଧରଣର । ପାଠକ କ'ଣ ବିଶ୍ୱାସ କରିବା ଉଚିତ, ସେଥିରେ ମୁଣ୍ଡ ଖେଳାଇବା କବିର ଦାୟିତ୍ୱ ନୁହେଁ । ତା'ର ଦାୟିତ୍ୱ ନିଜର ବିଶ୍ୱାସପ୍ରତି ସତ୍ୟଶୀଳ ହେବା ।

ପ୍ରସଙ୍ଗ :

(ଖ) କବିର ଅଙ୍ଗୀକାର—

ସାହିତ୍ୟିକ କିଏ ? ଲେଖିବା ପାଇଁ ସାମାନ୍ୟତମ ଆଗ୍ରହକୁ ଧରି ନାମଯଶର ପ୍ରଲୋଭନରେ ମାତିଥିବା ଲୋକକୁ ଏଠାରେ ଆମେ ସାହିତ୍ୟିକ ବୋଲି ନିଶ୍ଚିତ ଭାବେ କହୁନାହୁଁ । ଆମେ ସାହିତ୍ୟିକ ବୋଲି ଗ୍ରହଣ କରୁଛେ ତାଙ୍କୁ—ଯେ ସ୍ରଷ୍ଟା, ଯେ ଦ୍ୱିତୀୟ ବ୍ରହ୍ମା ।

ସାହିତ୍ୟିକ କାହାପ୍ରତି ଅଙ୍ଗୀକାରବଦ୍ଧ ହେବା ଉଚିତ, ତା'ର ସ୍ରଷ୍ଟାମାନସ କେଉଁ ବିଶ୍ୱାସ ଓ ଲକ୍ଷ୍ୟର ନିର୍ଦ୍ଦିଷ୍ଟତା ନେଇ କ୍ରିୟାଶୀଳ ହୋଇଥାଏ, ସେହି ସମ୍ପର୍କରେ ଏଠାରେ କିଛି ଆଲୋଚନା କରାଯାଉଛି । ମୁଖ୍ୟତଃ ସାହିତ୍ୟ ସୃଷ୍ଟି ସମ୍ପାଦନର ସମ୍ପର୍କରୁ ସଞ୍ଜାତ ଅନ୍ତରଙ୍ଗ ଅନୁଭବକୁ ଏହି ଲକ୍ଷ୍ୟରେ ପର୍ଯ୍ୟାଲୋଚନା କରାଯାଉଛି ।

ସାହିତ୍ୟର ନିଶ୍ଚୟ କିଛି ଉଦ୍ଦେଶ୍ୟ ରହିଛି, ଆଉ ସେହି ଉଦ୍ଦେଶ୍ୟ ସାଧିତ ହେଉଛି ବୋଲି ସାହିତ୍ୟ ଆଜିଯାଏଁ ବଞ୍ଚିରହିଛି । ଯେଉଁ ଶକ୍ତି ଆମ ଜୀବନକୁ ଛିନ୍‌ଭିନ୍ କରି ଆମ ଚେତନାକୁ ପଦାନତ କରିଦେବାକୁ ଉଦ୍ୟତ, ସାହିତ୍ୟ ମାଧ୍ୟମରେ ଆମେ ସେହି ଶକ୍ତିକୁ ଅସ୍ୱୀକାର କରିଥାଉ । ସାହିତ୍ୟିକ ପ୍ରତିଭା ସହଜାତ—ଏକଥା ସତ, ମାତ୍ର ବୌଦ୍ଧିକ, ଆଧ୍ୟାତ୍ମିକ ଓ ଆବେଗିକ ଶୃଙ୍ଖଳା ରକ୍ଷାକରିବା ସାହିତ୍ୟିକ ନିମନ୍ତେ ଅପରିହାର୍ଯ୍ୟ । ସାହିତ୍ୟର ଉଦ୍ଦେଶ୍ୟ ମୂଳତଃ ସତ୍ୟର ଉନ୍ମୋଚନ ଏବଂ ବାସ୍ତବତାର ବିଶ୍ୱସ୍ତ ରୂପାୟନ । ବାସ୍ତବତାର ପ୍ରକାଶବିନା ସାହିତ୍ୟର ଆବେଦନ ଆମକୁ ସ୍ପର୍ଶ କରିପାରେ ନାହିଁ । କିନ୍ତୁ ସାହିତ୍ୟିକର ବାସ୍ତବତା ବସ୍ତୁକୈନ୍ଦ୍ରିକ ବାସ୍ତବତା ନୁହେ କିମ୍ବା ବୈଜ୍ଞାନିକର ବାସ୍ତବତା ମଧ୍ୟ ନୁହେଁ । ସାହିତ୍ୟିକର ବାସ୍ତବତା ତା'ର ଦୃଷ୍ଟିକୋଣ, ମନଃସ୍ଥିତି ଓ ଅନ୍ତର୍ଜଗତର ବାସ୍ତବତା ଭିନ୍ନ ଅନ୍ୟ କିଛି ନୁହେଁ ଏବଂ ଏହି ବାସ୍ତବତା ଗତିଶୀଳ । ଏହା ପରିବର୍ତ୍ତିତ ହୋଇ ନୂଆ ଅର୍ଥ ନେଉଥାଏ । ଏହା ମାଧ୍ୟମରେ ସାହିତ୍ୟିକ ନିର୍ଦ୍ଦିଷ୍ଟ ଅଭିମୁଖ୍ୟ ସପକ୍ଷରେ ଠିଆହୁଏ । ପ୍ରତାରିତ, ଅତ୍ୟାଚାରିତଙ୍କ ସପକ୍ଷରେ ମଧ୍ୟ ଠିଆ ହୋଇପାରେ । ସାହିତ୍ୟିକର ଅଙ୍ଗୀକାର ଏକ ପୃଥକ୍ ଅଙ୍ଗୀକାର । ନଚେତ୍ ଶତକଡ଼ା ଶହେ ଅଙ୍ଗୀକାରବଦ୍ଧ ସେହି ବ୍ୟକ୍ତି, ଯିଏ ନିଜ ଚିନ୍ତାଧାରାକୁ ପ୍ରତିଷ୍ଠା ଦେବାକୁ କର୍ମପ୍ରବଣ ହେବ । ସେ ସାହିତ୍ୟ ସୃଷ୍ଟି କରିବାକୁ ଯିବ କାହିଁକି ? ସେହି ବ୍ୟକ୍ତି ସାହିତ୍ୟ ରଚନା କରିବ, ଯେ ନାନ୍ଦନିକତା ମାଧ୍ୟମରେ କିଛି ଅଭିବ୍ୟକ୍ତ କରିବାକୁ ଚାହେ । ସେ ଅଙ୍ଗୀକାରବଦ୍ଧ ନିଶ୍ଚୟ, ଯଦିଓ ସେ

ଅଙ୍ଗୀକାର ଚେତନା-ଜଗତରେ କ୍ରିୟାଶୀଳ ହୋଇଥାଏ ଓ ତା'ର ପ୍ରକାଶ କଳା-ପ୍ରବନ୍ଧତାର ଅପେକ୍ଷା ରଖେ ।

ମୋ ମତରେ ସାହିତ୍ୟିକର ପ୍ରତିବଦ୍ଧତା ତା'ର ବିଶ୍ୱାସ ଓ ଉପଲବ୍ଧି ପ୍ରତି ରହିବା ସର୍ବଦୌ ଆବଶ୍ୟକ । ଏହି ପ୍ରତିବଦ୍ଧତା ମାଧ୍ୟମରେ ସେ ପାଠକସମାଜକୁ ଜୀବନର ଭେଦ ବୁଝାଇ ପାରେ, ଦୁଃଖସୁଖର ଆପେକ୍ଷିକତାକୁ ସ୍ୱୀକାର କରିନେବାର ସଚେତନତା ସୃଷ୍ଟି କରିପାରେ । ଜୀବନର ସବୁପ୍ରକାର ସମ୍ଭାବନାକୁ ପ୍ରଶ୍ରୟ ଦେବାପାଇଁ ସଂକଳ୍ପ ରଖିପାରେ । ମଣିଷଠାରେ ଉତ୍ତମ ବୁଝାମଣାର କ୍ଷେତ୍ର ପ୍ରସ୍ତୁତ କରିପାରେ । ବ୍ୟକ୍ତିର ବ୍ୟକ୍ତିସତ୍ତ୍ୱ, ବ୍ୟଷ୍ଟି ସତ୍ତ୍ୱ ସମ୍ପର୍କ ଗଢ଼ିପାରେ । ଭାବର ବ୍ୟାପ୍ତି, ଚେତନାର ସମ୍ପ୍ରସାରଣ ଘଟାଇ ପାରେ । ସମାଜକୁ ସ୍ଥିତାବସ୍ଥାରୁ ମୁକୁଳେଇବାରେ ସାହାଯ୍ୟ କରିପାରେ ।

ଏଠାରେ ଆମେ ମନେରଖିଥିବା ଉଚିତ ଯେ, ସାମାଜିକ ଓ ଆର୍ଥନୀତିକ ବୈଷମ୍ୟର ପ୍ରତିରୋଧ କରାଯାଇ ଏକ ସମତା ପ୍ରତିଷ୍ଠା ନିମିତ୍ତ ସ୍ୱରୋଚ୍ଚାରଳନ କରୁଥିବା ସାହିତ୍ୟକୁ ଆମେ ମୁଖ୍ୟତଃ ଅଙ୍ଗୀକାରବଦ୍ଧ ବା ପ୍ରତିବଦ୍ଧ ସାହିତ୍ୟ ବୋଲି କହିଥାଉ । କିନ୍ତୁ ସାହିତ୍ୟିକର ଅଙ୍ଗୀକାର ସ୍ୱ-ହୃଦୟ ପ୍ରତି, ସ୍ୱ-ଉପଲବ୍ଧି ପ୍ରତି ରହିବା ବାଞ୍ଛନୀୟ । ଏହାରି ମାଧ୍ୟମରେ ସମାଜ ପ୍ରତି ତା'ର ପ୍ରତିବଦ୍ଧତା ମଧ୍ୟ ରହିପାରିବ । ଯେହେତୁ ସାହିତ୍ୟିକ ସମାଜରେ ବାସକରେ, ସମାଜଦ୍ୱାରା ସେ ଦୀକ୍ଷିତ ଓ ଶିକ୍ଷିତ, ପୁଣି ସମାଜ ମଧ୍ୟରେ ଆପଣାର ରଚନାକୁ ସମ୍ପ୍ରେଷିତ କରେ, ସମାଜର ଆଶା ନିରାଶା, ପ୍ରଗତି ଓ ପତନର ସେ ଏକ ଅଂଶ ହୋଇ ରହିଥାଏ, ସେଇଥିପାଇଁ ତା'ର ଅନ୍ତଃକରଣରେ ସମାଜର ପ୍ରତିବିମ୍ବଟିଏ ନିଶ୍ଚୟ ଜୀବିତ ଥାଏ । ତା'ର ଚିନ୍ତା, ବିଶ୍ୱାସ ଓ ଉପଲବ୍ଧିରେ ସେହି ପ୍ରତିବିମ୍ବ ଅଂଶଗ୍ରହଣ କରିଥାଏ । ସାହିତ୍ୟିକର ଅଙ୍ଗୀକାର ସମାଜ ପ୍ରତି ହେଉ ବା ବ୍ୟକ୍ତିଗତ ଚିନ୍ତା ଓ ଉପଲବ୍ଧି ପ୍ରତି ହେଉ, ତାହା ତା'ର ଅନୁଭବ ଓ ବିଶ୍ୱାସରେ ସଂଜୀବିତ ରହି ପରିଶୁଦ୍ଧ ହେବା ଆବଶ୍ୟକ । ନଚେତ୍ ଉଦ୍ଦେଶ୍ୟମୂଳକଭାବେ ସାହିତ୍ୟିକ କେବେହେଁ କୌଣସି ପ୍ରତିବଦ୍ଧତାର ଅନୁଗାମୀ ହୋଇ ନପାରେ । ପ୍ରତିବଦ୍ଧତାର ଲୋଭରେ ପଡ଼ିଲେ ସେ ପଥଭ୍ରଷ୍ଟ ହେବା ଅବଶ୍ୟମ୍ଭାବୀ ।

ଏ କ୍ଷେତ୍ରରେ ଆମେ ସ୍ୱର୍ଗତ ଗୋପୀନାଥ ମହାନ୍ତିଙ୍କ 'ପରଜା' ଉପନ୍ୟାସକୁ ଲକ୍ଷ୍ୟ କରିବା । ଏହି ଉପନ୍ୟାସରେ ଲେଖକ ଅଙ୍ଗୀକାରବଦ୍ଧ । ଏଥିରେ କୌଣସି ନିର୍ଘୋଷ ନଥିଲେ ମଧ୍ୟ ଲେଖକ ଆଦିବାସୀ ସମାଜର ଯନ୍ତ୍ରଣା ଓ ସମସ୍ୟାର ସାର୍ଥକ ରୂପାୟନ କରିଛନ୍ତି । ସେ ପ୍ରତିବଦ୍ଧ ଏଇଥିପାଇଁ ଯେ, ନିଜେ ଆଦିବାସୀ ଚରିତ୍ର ସହିତ ଏକାତ୍ମ ହୋଇ ତା'ର ଦୁଃଖସୁଖ, ଆଶାନିରାଶା, କ୍ରୋଧ ଓ ପ୍ରତିବାଦକୁ ଭୋଗିଛନ୍ତି, ସବୁକୁ ଅଙ୍ଗେ ନିଭେଇଛନ୍ତି ।

ତେଣୁ ସାହିତ୍ୟିକର ଅଙ୍ଗୀକାର ସର୍ବଦା ହୃଦୟ-ଅତଳର ସ୍ୱାନୁଭବ, ଉପଲବ୍ଧି ଓ ବିଶ୍ୱାସ ପ୍ରତି ରହିବା ଅଧିକ ସାର୍ଥକ ଓ ସୃଜନଶୀଳତାର ଅନୁଗାମୀ ହୋଇଥାଏ ।

# ସିନ୍ଧୁରେ ବିନ୍ଦୁଏ ଲୁହ

କବିତା ବିଷୟରେ କିଛି କହିବାକୁ ଗଲେ ମୁଁ ନିଜକୁ ବଡ଼ ଅପ୍ରସ୍ତୁତ ମନେକରେ । କବିତା ସହିତ ମୋର ସମ୍ପର୍କ ଦୀର୍ଘଦିନର । ଏଇ ଦୀର୍ଘଦିନର କବିତା ଲେଖିବା ଓ ପଢ଼ିବାର ସମ୍ପର୍କ ସତ୍ତ୍ୱେ କବିତା ସବୁବେଳେ ମତେ ଦୂରର ଦୂରର ମନେ ହୋଇଛି, ରହସ୍ୟମୟ ଲାଗିଛି—ଲାଗିଚି, ତା' ସହିତ ମୋର ସମ୍ପର୍କ ଏପରି ଏକ ସୂକ୍ଷ୍ମ ଡୋରରେ ବନ୍ଧା, ଯେଉଁ ଡୋର ଟିକକେ ଛିଣ୍ଡିଯିବ—ମୁଁ ହାତ ବଢ଼ାଉଥିବି, କବିତାକୁ ଧରିପାରୁ ନଥିବି···କବିତା ମୋଠୁଁ କାହିଁ କୁଆଡ଼େ କେତେ ଦୂରକୁ ଚାଲିଯିବ । ଏପରିସ୍ଥଳେ କବିତା ସମ୍ପର୍କରେ ମୋର ଯାହାକିଛି ବକ୍ତବ୍ୟ, ନିଶ୍ଚୟ ସୀମିତ ଓ ଅଯଥେଷ୍ଟ—ଯେହେତୁ ମୁଁ ନିଜସ୍ୱ ଅନୁଭବରୁ ହିଁ କିଛି କହିପାରିବି ।

କବିତା ଲେଖିବା କିଛି ସହଜକର୍ମ ନୁହେଁ । ମୁଁ ଏଇଲେ ରାନ୍ଧିବାଢ଼ି ଟେବୁଲ ଉପରେ ପରଷିବି—ଡ୍ରଇଂରୁମରେ ଅତିଥିଚର୍ଚ୍ଚା କରିବି—ଦୋକାନ ବଜାର କରିଆସିବି—ଟିକିନିଖି ଆୟ ବ୍ୟୟର ହିସାବ ଲେଖିରଖିବି ଖାତାରେ—ତାପରେ, ହୁଏତ ଘଣ୍ଟାଏ ବସି କବିତାଟିଏ ଲେଖି ପକେଇବି···ନା, ଏକଥା ସମ୍ଭବ ହେବନାହିଁ କଦାପି । କବିତା ଏପରିଭାବେ ଲେଖାହୋଇ ନ ପାରେ । କବିତା ସଂରଚନା ଏକ ସାଧନା, ଏକ ତପସ୍ୟା ଏଠି ପ୍ରଶ୍ନ ଉଠିପାରେ, ତେବେ କ'ଣ କବି ସଂସାର ଛାଡ଼ିବ, ଯୋଗୀ ହେବ, ଗୁମ୍ଫା ଭିତରେ ରହିବ ? ହିଁ, ଯୋଗୀ ହେବାକୁ ପଡ଼ିବ । ଆମର ବ୍ୟାସ, ବାଲ୍ମୀକି ଆଦି କବିମାନେ ଯୋଗ ଓ ତପସ୍ୟାକୁ ନିଜର କରିନେଇ ଯୁଗଜୟୀ କାବ୍ୟ ସୌଧ ନିର୍ମାଣ କରିଯାଇଛନ୍ତି । ତମସାନଦୀ ତୀରରେ ନିବିଡ଼ ଅରଣ୍ୟ କୋଳରେ ଆଦିକବି ବାଲ୍ମୀକିଙ୍କର ଆଶ୍ରମ—ତତ୍ପୂର୍ବରୁ ତାଙ୍କର ଏକନିଷ୍ଠ ତପସ୍ୟାରେ ଉଈହୁଙ୍କା ପାଲଟିଯିବା ଘଟଣାଟି ଏହି ସତ୍ୟକୁ ସମର୍ଥନ କରେନାହିଁ କି ? ରାମାୟଣ ରଚନାର ପୃଷ୍ଠଦେଶରେ ଏ ତପସ୍ୟାର, ଏ ବିବିକ୍ତ-ସଂସାର ସାଧନାର ଗୁରୁତ୍ୱ ରହିଛି—ଏକଥା କିଏ ଅସ୍ୱୀକାର କରିବ ? ତଥାପି ସଂସାର ଭିତରେ ରହି କାବ୍ୟସାଧନା କରିବା, ଅବିନଶ୍ୱର କାବ୍ୟ-ରଚନାରେ ନିଜକୁ ନିୟୋଜିତ କରିବାର ଦୃଷ୍ଟାନ୍ତ ବିରଳ ନୁହେଁ । କିନ୍ତୁ, ସେ ସଂସାର କବିର ସଂସାର । କବି ସେଠାରେ ସାଧାରଣ ଅର୍ଥରେ ସଂସାରୀ ନୁହେଁ । ସେ ହୁଏତ ସଂସାର କର୍ମ କରୁଛି ମାତ୍ର ସାଂସାରିକତାରେ ନିଜକୁ ହଜେଇ ଦେଇନାହିଁ—ସଂସାରକୁ ଆବୋରି

ବସିନାହିଁ—ସଂସାରକୁ ସେ ପ୍ରତ୍ୟାହାର କରିଛି—ଏକ ନିର୍ଦ୍ଦିଷ୍ଟ ସୀମାରେ ଠିଆ କରାଇଛି ସଂସାରକୁ । ତା'ର ସମଗ୍ରତ୍ୱକୁ ସଂସାର ଅଧିକାର କରିପାରିବ ନାହିଁ । କାରଣ କାବ୍ୟ ସାଧନା ସରସ୍ୱତୀଙ୍କ ସାଧନା । ଆଉ ସରସ୍ୱତୀ ଯେ ତୀବ୍ର ଅଭିମାନୀ ! କବିର ସାମାନ୍ୟତମ ଅନ୍ୟମନସ୍କତାକୁ ସେ ସହ୍ୟ କରିପାରନ୍ତି ନାହିଁ । କବିର ସମୁଦାୟ ଏକାଗ୍ରତା ଓ ସମର୍ପଣକୁ ଦାବୀକରି ବସନ୍ତି । ଟିକେ ଅନ୍ୟମନସ୍କତା ଦେଖିଲେ, ଏକାଗ୍ରତାରେ କାଣିଚାଏ ଊଣା ଦେଖିଲେ ସେ ମୁହଁ ବୁଲେଇ ନିଅନ୍ତି—ଆଉ ଫେରି ଚାହାନ୍ତି ନାହିଁ । ବିଚରା କବିଟି—ତା'ପରେ କଲମଧରି କାଗଜରେ ଗାର କାଟୁଥାଏ ସିନା—ଆଉ କବିତା ଲେଖିପାରେ ନାହିଁ । କବିତା ସଂରଚନା ଆଉ ସମ୍ଭବେ ନାହିଁ ତା' ପକ୍ଷରେ ।

କବିତା ସଂରଚନା ପୁଣି କବିର ଇଚ୍ଛାନୁସାରେ ହୁଏନାହିଁ । କୌଣସି କବି "ଭଲ କବିତାଟିଏ ଏଥର ଲେଖିଦେବି" ବୋଲି କହିପାରିବ ନାହିଁ । କାରଣ କବିତା ରଚନା କର୍ମରେ କେବଳ ତାର ପ୍ରୟାସ ହିଁ ଯଥେଷ୍ଟ ନୁହେଁ । କବିର ସଚେତନ ପ୍ରୟାସ, ତାର ଅଧ୍ୟୟନ ଓ ସଂସ୍କାର—ଏସବୁ ନିଶ୍ଚୟ ସଂରଚନା ମଧ୍ୟରେ କ୍ରିୟାଶୀଳ ହୋଇଥାଏ । ମାତ୍ର ଏଥି ନିମିତ୍ତ ଏକ ଅଦୃଶ୍ୟ ଶକ୍ତିର ସହଯୋଗକୁ ସ୍ୱୀକାର କରିବାକୁ ହେବ । ଏହି ଅଦୃଶ୍ୟ ଶକ୍ତିର ସହଯୋଗରେ କାବ୍ୟାଭିବ୍ୟକ୍ତି ସଫଳ ହୋଇଥାଏ । କବିମାନେ ଏଇ ଶକ୍ତିର ସାହଚର୍ଯ୍ୟ ଅନୁଭବ କରିଥାନ୍ତି । ଏହି ଶକ୍ତିକୁ ସ୍ୱୀକାର କରିବାକୁ ଯାଇ କବି ସାରଳାଦାସ କହିଥାନ୍ତି 'ମୁଁ ମୂର୍ଖ, ମୁଁ ଅପଣ୍ଡିତ, ସାରଳା ଠାକୁରାଣୀ ରାତିରେ ମୋ' କାନରେ ଯାହା କହନ୍ତି, ମୁଁ ସକାଳେ ଗଛମୂଳେ ବସି ତାଳପତ୍ର ଲେଖନୀରେ ତାହାହିଁ କେବଳ ଲେଖିଯାଏ—

"ଶ୍ରୀଚଣ୍ଡୀ ସାରଳାଙ୍କର ପାଦତଳ ଦାସ
ଶୂଦ୍ରମୁନି ଅପଣ୍ଡିତ ଶ୍ରୀ ସାରଳା ଦାସ
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ
ସାଧୁ ସୁଜ୍ଞଜନେ ଏଥେ ମୋର ଦୋଷ ନାହିଁ । × ×
ଜନ୍ମରୁ ମୁରୁଖ ମୁହିଁ ମୋର ନାହିଁ ଶାସ୍ତ୍ରଜ୍ଞାନ
ତୁ ଯାହା କହୁ ମୁଁ ତାହା କରଇ ଲେଖନ ।"

ସଂସ୍କୃତ ଓ ପାର୍ଶୀ ଭାଷାରେ ସୁପଣ୍ଡିତ କବି ସାରଳାଦାସ କାବ୍ୟ ସଂରଚନା କ୍ଷେତ୍ରରେ ଐଶୀପ୍ରେରଣାକୁ ଏଠାରେ ସ୍ୱୀକାର କରିଛନ୍ତି ମାତ୍ର । ସେହିପରି କବି ଉପେନ୍ଦ୍ର ଭଞ୍ଜ,—ସେ କହନ୍ତି ମୁଁ ରାମତାରକ ମନ୍ତ୍ର-ସିଦ୍ଧ ପ୍ରଭୁ ଶ୍ରୀରାମଙ୍କ ଆଜ୍ଞାରେ ଏହି କାବ୍ୟରଚନା କରିଛି—

"ତାରକ ମନ୍ତ୍ର ପରସାଦେ
ମୋହର କବିପଣ ଉଦେ ।"

ପ୍ରକୃତରେ ଏହି ଅଦୃଶ୍ୟଶକ୍ତି, ଏହି ଐଶୀ ପ୍ରେରଣାକୁ କବି ଉପରୋକ୍ତ ଭାବରେ ଅନୁଭବ କରିଛନ୍ତି । ତେବେ ଏହି ଅଦୃଶ୍ୟ ଶକ୍ତି କେବଳ ସାଧକର ହୃଦୟରେ ହିଁ ଅବତରଣ କରି ତାର ଲେଖନୀକୁ ଆଶ୍ଚର୍ଯ୍ୟ ଶକ୍ତିରେ ମଣ୍ଡିତ କରିଥାଏ । କବି ଯେତେବେଳେ 'ପ୍ରୟାସରେ, ସାଧନାରେ ନିଜକୁ ଏକ ପରିପୁଷ୍ଟ ରସାଳବୃକ୍ଷରେ ପରିଣତ କରିପାରେ, ସେତିକବେଳେ ହିଁ ଏହି ଐଶୀ ପ୍ରେରଣାର ଶୁକପକ୍ଷୀଟି ସେହି ବୃକ୍ଷର ଶାଖା ଉପରେ ଅବତରଣ କରିଥାଏ । ଏହି ଶକ୍ତିକୁ କବି ହୁଏତ ସରସ୍ୱତୀଙ୍କ କୃପା ବୋଲି ଗ୍ରହଣ କରିପାରେ । ସେଥିପାଇଁ କବିର ସବୁ ଯୋଜନାସତ୍ତ୍ୱେ ବେଳେବେଳେ କବିତା ଅଲଗା ପ୍ରକାରେ ରଚିତ ହୋଇଯାଏ । ଉଲ୍ଲାସର କବିତାଟିଏ ଲେଖିବାକୁ ବସିଲେ ବି ତାହା ଶୋକ କବିତାରେ ପରିଣତ ହୋଇଯାଏ । କବି ବୁଝିପାରେ, ତାର ଯୋଜନା ବହିର୍ଭୂତ କବିତାଟିଏ ଲେଖିହୋଇ ଯାଇଚି ।

ସଫଳ କବିତା ସେହି, ଯାହା ପାଠକକୁ ଅଭିଭୂତ କରେ । ପାଠକକୁ ତାର ବାସ୍ତବ ପରିବେଶରୁ ଦୂରେଇ ନେଇ ପ୍ରଶାନ୍ତ ପରିବେଶରେ ଅଧିଷ୍ଠିତ କରାଏ । ତାର ଉପଲବ୍ଧିକୁ ଶାଣିତ ଓ ଉଦ୍‌ବୁଦ୍ଧ କରେ । ଦୁଃଖ, ଯନ୍ତ୍ରଣା, ଭୟ ଓ ହତାଶାରେ ଭାଙ୍ଗି-ପଡ଼ୁଥିବା ମାନବାତ୍ମାକୁ ଆଶ୍ୱାସନା ଦିଏ, ସାହସ ଦିଏ ! ଜୀବନର ସକଳ ପ୍ରତିକୂଳତାକୁ ଅତିକ୍ରମ କରିଯିବାକୁ ପ୍ରେରଣିତ କରେ । ଏଭଳି ଗୁଣସମ୍ପନ୍ନ କବିତା ଯେଉଁ ଯୁଗରେ ଯେଉଁ ଭାଷାରେ ଲେଖାଯାଇ ନା କାହିଁକି—ଏହା ଗୋଟିଏ ସଫଳ କବିତା । ସଫଳ କବିତାର ସଂଜ୍ଞା ଯା' ଭିନ୍ନ ଅନ୍ୟ କିଛି ହେବା ମତେ ଅନ୍ତତଃ ଜଣାନାହିଁ । ନିଜ ଚେତନାରେ ପ୍ରତ୍ୟକ୍ଷୀଭୂତ ସତ୍ୟକୁ କବି ଅଙ୍କନ କରିଥାଏ । କବିତାର ଦର୍ପଣରେ ସେ ନିଜ ମୁହଁକୁ ଦେଖେ । ନିଜ ପ୍ରତିବିମ୍ବ ଦିଶୁଥିବା ସେହି ଦର୍ପଣକୁ ସେ ଜଗତଜନ ସମକ୍ଷରେ ଥୋଇଦେଇ କହେ, ଦେଖ, ଯା' ଭିତରେ ମୋ' ମୁହଁର ପ୍ରତିବିମ୍ବକୁ ଦେଖ, ତୁମମାନଙ୍କ ମୁହଁର ପ୍ରତିବିମ୍ବ ବି ଦେଖ । ତୁମ ମୁହଁ ସହିତ ମୋ' ମୁହଁର କେତେ ସାମଞ୍ଜସ୍ୟ ରହିଚି, ନିରୀକ୍ଷଣ କର । ଦେଖ, ମୋ ମୁହଁ ଅବିକଳ ତୁମ ମୁହଁପରି ଦିଶୁନାହିଁ କି ?

କବିତାଟିଏ ବୁଝିବା, ଅଙ୍କ ବୁଝିବା ପରି ନୁହେଁ । କିଛି ସମାଧାନ ହୋଇଯାଏନା ଏଥିରେ । କବିତାର ସମଗ୍ର ଅର୍ଥ ନ ବୁଝିଲେ ବି କବିତା ଯୋଗାଯୋଗ ସ୍ଥାପନ କରିପାରେ । ଜଣେ ପାଶ୍ଚାତ୍ୟ କବି କହିଥିଲେ "Good Poetry Communicates before it is understood." ପ୍ରକୃତରେ ସମ୍ପୂର୍ଣ୍ଣ ନ ବୁଝିଲେ ବି କବିତାର ଭାବମୟତାକୁ ଗ୍ରହଣ କରିଯାଇପାରେ । କବିତା ମଧ୍ୟରୁ ପାଠକ ହୃଦୟକୁ କିଛିଟା ଅନୁଭୂତି ପ୍ରସରି ଯାଇପାରେ । କବିତା ସବୁବେଳେ ଅଧା ବୁଝା, ଅଧା ଅବୁଝା । ଏହି ରହସ୍ୟମୟତା କବିତାକୁ ସୁନ୍ଦର କରିଥାଏ । ବୁଝିବା ଏବଂ ଉପଲବ୍ଧି କରିବା ଦୁଇଟି ଅଲଗା ଜିନିଷ । ହୃଦୟ ଦେଇ କିଛି ଉପଲବ୍ଧି କରିଯାଏ, ଯାହା ବୁଝିଯିବା ଆବଶ୍ୟକ ମଧ୍ୟ

ସ୍ଫୁରଣା । କବିତାର ବୁଝିବା ଏକ ଭିନ୍ନ ପ୍ରକାର ଅବବୋଧ । କବିତା ବୁଝିବା ଆଗରୁ ଉପଲବ୍ଧିରେ ପ୍ରତ୍ୟକ୍ଷୀଭୂତ ହୋଇସାରିଥାଏ । ସେଥିପାଇଁ Stephen spenders "Poetry is not meant for understanding it is meant for realisation," S. Spender.

ତେବେ କବିତାର ଅବବୋଧ କ୍ଷେତ୍ରରେ କବି ଓ ପାଠକ ଉଭୟଙ୍କର ଦାୟିତ୍ୱ ରହିଛି । ଉଭୟଙ୍କର ସହଯୋଗ ଏକାନ୍ତ ଆବଶ୍ୟକ । କବି ଶବ୍ଦରେ ପ୍ରକାଶ କରିବ, ପାଠକ ରସଗ୍ରହଣ କରିବ । ପାଠକ ଯଦି ଉପରଠାଉରିଆ ଭାବେ କବିତାଟିରେ ଆଖି ବୁଲେଇ ନେଇ 'କିଛି ବୁଝି ହେଉନି' କହି କବିତାକୁ ଫୋପାଡ଼ିଦିଏ ତାହେଲେ ଏହା ତା'ର ଦାୟିତ୍ୱହୀନତା ହେବ ନିଶ୍ଚୟ । କାରଣ କବିତାର ଭାବମୟତାକୁ ଗ୍ରହଣ କରିବା ପାଇଁ ପାଠକର ଆନ୍ତରିକ ଅନୁସନ୍ଧିତ୍ସା ଆବଶ୍ୟକ । ପାଠକ ରସପିପାସୁ ହେବା ବାଞ୍ଛନୀୟ । ଆଜି ନୁହେଁ, ସବୁକାଳରେ କବିମାନେ ଏହି ଜିଜ୍ଞାସୁ, ରସିକପାଠକକୁ ଅନାଇ ବସିଥାନ୍ତି—କବି ଭବଭୂତି କହିଥିଲେ—ଆଜି ମୋ କାବ୍ୟକୁ ଲୋକେ ବୁଝିଲେ ନାହିଁ—ସେଥିପାଇଁ ଶୋଚନା ନାହିଁ ମୋର । ଏହି ବିପୁଳ ପୃଥ୍ୱୀରେ କେହି ଜଣେହେଲେ ଥିବ, ନଥିଲେ ବି ନିରବଧିକାଳ ବକ୍ଷରେ କେହି ନା କେହି ହୁଏତ ଜନ୍ମନେବ, ଯେ ମୋର କାବ୍ୟକୁ ବୁଝିବ । ମଧ୍ୟଯୁଗୀୟ କବିଗଣ 'ବିବେକୀ ଗ୍ରାହକ'ଙ୍କୁ 'ଶତକବି'ର ଆୟୁଷ ନେଇ ଆୟୁଷ୍ମାନ ହେବାକୁ କାମନା କରିଛନ୍ତି । ଏତାଦୃଶ ରସପିପାସୁ ପାଠକଙ୍କୁ ମଧ୍ୟଯୁଗୀୟ କବିଗଣ 'ବିବେକୀଗ୍ରାହକ', 'ସୁବିଦୁଷ', ରସିକନେତା ଇତ୍ୟାଦି ବିଶେଷଣରେ ବିଭୂଷିତ କରିଛନ୍ତି ।

"କବିତ୍ୱ ମଳୟ ପବନ ମତ
କରେ ରସିକ ତରୁ ପଲ୍ଲବିତ"

ଅନ୍ୟପକ୍ଷରେ କବିର ଦାୟିତ୍ୱ କିଛି କମ୍ ନୁହେଁ । ତା'ର ସଂପ୍ରେଷଣ ମନୋବୃତ୍ତିରୁ ତା'ର ପ୍ରକାଶପ୍ରବଣତା ସଞ୍ଜାତ । ସେ କିଛି ଅନ୍ୟକୁ ଜଣାଇବାକୁ ଚାହେଁ ବୋଲି ପ୍ରକାଶ କରିଥାଏ । କିନ୍ତୁ କବି ଯଦି ଏ କ୍ଷେତ୍ରରେ ପ୍ରତାରଣା କରେ, ତା'ର ବକ୍ତବ୍ୟରେ ସ୍ୱଚ୍ଛତା ନ ଥାଏ, ଅର୍ଥାତ୍ କହିବାକୁ ଯାଉଥିବା କଥାଟି ତା'ର ଗଭୀର ଉପଲବ୍ଧିରୁ ଜାତ ହୋଇ ନ ଥାଏ, ତେବେ ରସିକପାଠକ ନିଚ୍ଚିତ ହତାଶ ହୁଏ । ଏପରି ଶଠତା କବିପକ୍ଷରେ ଲଜ୍ଜାଜନକ । ଅନ୍ତତଃ ଆଧୁନିକ କବି ଏପରି ଶଠତା କେତେ ବିପଜ୍ଜନକ, ତାହା ବୁଝିସାରିଚି ।

ପୃଥିବୀର ସୁଖଦୁଃଖର ଅନୁଭୂତିକୁ ନେଇ, ନାନା ଚରିତ୍ର ସମ୍ପର୍କରେ ଆସି ଓ ନାନା ଆବେଗ ମଧ୍ୟ ଦେଇ ମଣିଷ ବଞ୍ଚେ । ସମସ୍ତେ ଦୁଃଖରେ ଲୁହ ଝରାନ୍ତି, ସୁଖରେ ଅଭିଭୂତ ହୁଅନ୍ତି । କିନ୍ତୁ କବି—ଏକମାତ୍ର ସେ ହିଁ ଏସବୁ ଅନୁଭୂତିକୁ ପ୍ରକାଶ କରିବାର

ଯୋଗ୍ୟତା ହାସଲ କରିଥାଏ । ସେ ଶକ୍ତିଟି ତା'ର ଅନନ୍ୟ । ତେଣୁ କାବ୍ୟ ବକ୍ତବ୍ୟ ପକ୍ଷରେ ପ୍ରକାଶଭଙ୍ଗୀ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଶବ୍ଦକୁ ବିଶେଷ ଭାବରେ ସଜାଇବା ଓ ଅର୍ଥମୟ କରିବା ହିଁ କବିକର୍ମର ବାହାଦୁରି । ଶବ୍ଦର ଶକ୍ତିକୁ ଚିହ୍ନି, ତାକୁ ଅତ୍ୟନ୍ତ ସନ୍ତର୍ପଣ ସହକାରେ କବି ପ୍ରୟୋଗ କରିଥାଏ । ଯେଉଁ ଶବ୍ଦପୁଞ୍ଜ ମାଧ୍ୟମରେ ଆମେ କଥାହେଉ, ଅଫିସରେ ଫାଇଲ ଗୃପ ହୁଏ, ଦୋକାନରେ କିଣାବିକା କାରବାର ଚାଲେ—ବିଚକ୍ଷଣ କବିଟି ସେହି ଶବ୍ଦପୁଞ୍ଜକୁ ନେଇ କବିତା ଲେଖେ । ତା ପାଇଁ କିଛି ଅଲଗା ଶବ୍ଦ ନ ଥାଏ । କିନ୍ତୁ ଶବ୍ଦର ସେହି ସଜ୍ଜୀକରଣରେ ସୃଜନଶୀଳତା ଓ ଅର୍ଥମୟତା ହିଁ କବିକର୍ମ । ଏଥିପାଇଁ ବେଳେ-ବେଳେ ପ୍ରକାଶଭଙ୍ଗୀ ବକ୍ତବ୍ୟଠାରୁ ବଡ଼ ହୋଇପଡ଼ିବାର ବିପଦ ମଧ୍ୟ ରହିଛି । ତେବେ ସଚେତନ କବି ପ୍ରକାଶଚାତୁରୀର ପ୍ରଦର୍ଶନକୁ ମୁଖ୍ୟ ବୋଲି ମନେ କରେନା । ତା ପାଇଁ ବକ୍ତବ୍ୟ ହିଁ ମୁଖ୍ୟ—ମାତ୍ର ବକ୍ତବ୍ୟକୁ ଉଦ୍‌ବୋଧକ ଓ କଳାତ୍ମକ କରିବା ନିମିତ୍ତ ସେ ପ୍ରକାଶଭଙ୍ଗୀର ଆଶ୍ରୟ ନେଉଛି । ଆଧୁନିକ କବି ବକ୍ତବ୍ୟହୀନ ପ୍ରକାଶଚାତୁରୀ ଦେଖାଇବାର ମୂର୍ଖତାକୁ ଅନ୍ତତଃ ପସନ୍ଦ କରେନାହିଁ । ଶବ୍ଦକୁ ସୁପ୍ରଯୁକ୍ତ କରି ସେ ବକ୍ତବ୍ୟକୁ ତୀକ୍ଷ୍ଣତା ପ୍ରଦାନ କରିଥାଏ ।

ଏକଦା ପ୍ରକାଶଭଙ୍ଗୀରେ ସାଙ୍ଗୀତିକତାର ଭୂମିକା ମୁଖ୍ୟ ଥିଲା—କାବ୍ୟର ଆକର୍ଷଣ ରୂପେ ଗୃହୀତ ହେଉଥିଲା । ଆଧୁନିକ ଜୀବନରୁ ସାଙ୍ଗୀତିକତା ଦୂରେଇ ଯାଇଛି । ଆଧୁନିକ ଜୀବନ ବିଳାସରହିତ ଓ କଠୋର ପ୍ରତିଯୋଗିତାପୂର୍ଣ୍ଣ । ଏଠାରେ ରାଗରାଗିଣୀ ସଂଯୁକ୍ତ କବିତାର ଗାୟନ ନିମନ୍ତେ ହୁଏତ ଅବସର ନ ଥାଇପାରେ । ତଥାପି ଆଧୁନିକ କବିତା ସଙ୍ଗୀତରହିତ ହୋଇନାହିଁ । ତହିଁରେ ଛନ୍ଦମୟତା ନିହିତ ଅଛି । ଏହି ଛନ୍ଦମୟତା ଭାବର ପ୍ରକଟନରେ, ଶବ୍ଦର ସଂଯୋଜନାରେ ଲୟରେ ସୁବିନ୍ୟସ୍ତ । ଭାବମୟତାର ଗୋଟିଏ ଗୋଟିଏ ତରଙ୍ଗରେ, ସେହି ତରଙ୍ଗର ଉତ୍ଥାନରେ, ପତନରେ ଛନ୍ଦ ନିହିତ । ପୁଣି କାବ୍ୟାଭିବ୍ୟକ୍ତିର ପଦକୁ ପଦ ଉଚ୍ଚାରଣରେ ଛନ୍ଦମୟତା ରହିଛି । ଏତଦ୍‌ବ୍ୟତୀତ ଆଧୁନିକ କବି ରାଗରାଗିଣୀଯୁକ୍ତ କବିତା ବି ଲେଖିପାରୁଛି । ସାମ୍ପ୍ରତିକ କାଳରେ କବିତାର ଚିରନ୍ତନ ସୌକୁମାର୍ଯ୍ୟର ଚିହ୍ନ 'ରାଗରାଗିଣୀ' ପୁଣି କବିତାରେ ପ୍ରବର୍ତ୍ତିତ ହେଉଛି । ପ୍ରଖ୍ୟାତ ଆଧୁନିକ କବି ଶ୍ରୀ ରମାକାନ୍ତ ରଥ ତାଙ୍କର 'ଶ୍ରୀରାଧା' କାବ୍ୟରେ କେତେକ ସ୍ଥାନରେ ବଙ୍ଗଳାଶ୍ରୀ ରାଗରେ ପଦସଂଯୋଜନା କରିଛନ୍ତି । କାବ୍ୟଯୋଗ୍ୟ ଉପଲବ୍‌ଧି ନିସ୍ତବ୍‌ଧ ନିର୍ଜନ ମୁହୂର୍ତ୍ତିରେ ସ୍ୱାଭାବିକ ରାଗସଂଯୁକ୍ତ ହୋଇ ଅଭିବ୍ୟକ୍ତ ହୋଇପଡ଼ିଛି । ଯେପରି ବୃକ୍ଷ ସ୍ୱାଭାବିକ ଭାବେ ପତ୍ରସଂଯୁକ୍ତ ହୋଇଥାଏ । ଉଦାହରଣ ଦେଖନ୍ତୁ—

"କେତେଥର ପୁଣି          ଗଛୁଁ ଗଛ ଉଡ଼ି
ବସୁଥିଲି ତାଙ୍କୁଁ ଡାଳ
କେଉଁଡାଳ ନାଆଁ          ଘରଣୀପଣ ତ
କେଉଁଡାଳ ନାଆଁ କୂଳ ।"

କାବ୍ୟନାୟିକା ରାଧା ଏଠାରେ ବତାଇଥିବା ଛନ୍ଦମାନଙ୍କରେ ନିଜର ବିଭିନ୍ନ ଭୂମିକା ପ୍ରତି କରୁଣା ପ୍ରକାଶ କରୁଛନ୍ତି । ଆତ୍ମାର ମୁହାଁମୁହିଁ ଛନ୍ଦାନ୍ଦୋଳ ନିଜ ସ୍ଥିତିର ଅଧାରତାକୁ ହୃଦୟଙ୍ଗମ କରୁଛନ୍ତି । ଏଠାରେ ଉଚ୍ଚାରଣ ସ୍ୱଗତୋକ୍ତିର ଉଚ୍ଚାରଣ—ଅନ୍ତର୍ମୁଖୀ ଆତ୍ମବିଶ୍ଲେଷଣର କାବ୍ୟିକ ଅଭିବ୍ୟକ୍ତି ହିଁ । ଅନ୍ୟତ୍ର ଶ୍ରୀକୃଷ୍ଣଙ୍କ ସହ ତାଙ୍କର ଆଶ୍ଚର୍ଯ୍ୟ ସମ୍ପର୍କକୁ ବିଶ୍ଲେଷଣ କରି ରାଧା ଚମତ୍କୃତା ହେଉଛନ୍ତି—

"ତମେ ନୀଳକଇଁ ରଙ୍ଗର ଲୁଗା
ମତେ ଚିରଦେଇ ଯାଅ
ଗୃହିଁଲାବେଳକୁ ମୁଁ ନୁହେଁ, ତମେ ହିଁ
ରକ୍ତରେ ବୁଡ଼ିଥାଅ ।"

ଏହି ଅସାଧାରଣ ଘନିଷ୍ଠତାର ଅଭିବ୍ୟକ୍ତି ସ୍ୱାଭାବିକ ଗୀତମୟ ହୋଇ ଝରିପଡ଼ିଛି । ରାଗରାଗିଣୀ ରହିତ ଆଧୁନିକ କବିତାରେ ମଧ୍ୟ ସଙ୍ଗୀତମୟତାର ପର୍ଯ୍ୟାପ୍ତ ଉଦାହରଣ ରହିଛି । ବିଂଶ ଶତାବ୍ଦୀରେ ବଞ୍ଚିଥିବା ମଣିଷ ପାଇଁ ଜୀବନ ଜଟିଳ ବସ୍ତୁ-ସର୍ବସ୍ୱ । ଏପରି ସ୍ଥଳେ, ଅନ୍ୟ କିଛି ଅର୍ଥକରୀ କର୍ମରେ ସମୟ ଓ ଶକ୍ତି ବିନିଯୋଗ ନ କରି ବ୍ୟକ୍ତିଟିଏ କବିତା ଲେଖିବ କାହିଁକି ? କାହିଁକି ନା ସେ କବିଟିଏ ବୋଲି ? ହଁ, ସେ କବିଟିଏ, ଜୀବନକୁ ବୁଝି ବୁଝି ବଞ୍ଚେ, କାଳକୁ ଅବଗତ ହେବା ନିମିତ୍ତ ମର୍ମିକ ପ୍ରଚେଷ୍ଟାରେ ନିରତ ଥାଏ । ଯିଏ କବିତା ପଢ଼େ ସେ ବି ଜୀବନକୁ ବୁଝି ବୁଝି ଗୃଖି ଗୃଖି ବଞ୍ଚିପାରେ । କାବ୍ୟଶାସ୍ତ୍ର ବିନୋଦରେ ଜୀବନ ବିତାଇବା ଅର୍ଥ ଆଖି ଥାଇ ବଂଚିବା ସହ ସମାନ । ଏହି ଆଖି ଚେତନାର ଆଖି । ଚେତନାର ଆଖି ଦ୍ୱାରା ଜୀବନର ଭେଦକୁ ବୁଝି ବଞ୍ଚିବାକୁ ହୋଇଥାଏ ।

କବିତା ଦ୍ୱାରା ଯେ ପ୍ରେରଣିତ ହୁଏ, କବିତା ଯାହାର ଚେତନାର ଚକ୍ଷୁକୁ ସନ୍ଦୀପ୍ତ କରେ ସେ ପାଠକହିଁ ରସିକ ନେତା । ଏହି ପାଠକ ତାର ଉପଲବ୍ଧିଶୀଳତା ଦ୍ୱାରା ବେଳେବେଳେ କବିତାର ଭାବକୁ ସମ୍ପ୍ରସାରିତ ମଧ୍ୟ କରିଥାଏ । କବି ଯାହା କହିଥାଏ, ପାଠକ ସେତିକି ବୁଝେ, ବେଳେ ବେଳେ ତା'ଠାରୁ ଭିନ୍ନ ଭାବରେ ବୁଝେ ଓ ତା'ଠାରୁ ବହୁତ କିଛି ଅଧିକ ବୁଝିଥାଏ । ଜଣେ ରସିକନେତା ତେଣୁ କବିତାର ଅର୍ଥାନ୍ତର ଘଟାଇପାରେ । କବି ଶବ୍ଦକୁ ସାଧାରଣ ଭାଷା ମଧ୍ୟରୁ ଉଠାଇନିଏ, ଉଠାଇନେଇ ତାକୁ କବିତା ମଧ୍ୟରେ ନବଜନ୍ମ ଦିଏ । ସେ ଶବ୍ଦ ଆଉ ସାଧାରଣ ଶବ୍ଦ ହୋଇ ରହେନାହିଁ । କବିତାର ଭାଷାରେ ଶବ୍ଦଟିଏ ଝଙ୍କୃତି ହେଇଗଲେ, ଶବ୍ଦଟି ଅନନ୍ୟ ହୋଇଯାଏ । ଥରେ ପ୍ରୟୋଗ ପରେ ସେହି ଶବ୍ଦଟିର ଆଉ ବିକଳ୍ପ (Substitute) ବ୍ୟବହାର କରିହୁଏ ନାହିଁ । ଯେହେତୁ କବିତା ଶବ୍ଦର ଅନନ୍ୟ ପ୍ରୟୋଗରେ ନିର୍ମିତ । ସାଧାରଣ ଭାଷା କବିତାରେ ଚିତ୍ରମୟ, ଛନ୍ଦମୟ ହୋଇଯାଏ । ଏପରି ଚିତ୍ରମୟ ହୋଇଯାଏ ଯେ ଚିତ୍ର ହୋଇଯାଏ

ମୁଖ୍ୟ— ଭାଷା ଛପି ରହିଯାଏ । ଶବ୍ଦ ଗଠନ ମାଧ୍ୟମରେ ଭାଷା ତା' ନିଜକୁ (ଭାଷାକୁ) ଅତିକ୍ରମ କରିଯାଏ । ଉଦାହରଣ ସ୍ୱରୂପ ଶବ୍ଦ ମାଧ୍ୟମରେ ପଦ୍ମପୋଖରୀର ଚିତ୍ର କବି ଅଙ୍କନ କଲେ । ଏଥର ପଦ୍ମପୋଖରୀର ଚିତ୍ରଟି ପାଠକ ଆଖିରେ ଦିଶି ରହିଗଲା—ଭାଷା ଛପି ରହିଗଲା, ମୁଖ୍ୟ ହୋଇ ରହିଲା ନାହିଁ । ଆଉ କବି ରମାକାନ୍ତଙ୍କ ବର୍ଣ୍ଣନାରେ "ଶୁମ୍ର ଚନ୍ଦ୍ର ବର୍ଷ୍ଣି ସତ୍ତ୍ୱ ଉଭିଁ ଆସୁଅଛି ପାଉଁଶରେ ପଲସ୍ତରା ସଚରାଚରରେ" ଏଠାରେ ଚନ୍ଦ୍ରୋଦୟ କାଳର ଦିଗନ୍ତ-ପ୍ରସାରୀ ଚିତ୍ର ଏତେ ବାସ୍ତବ ହୋଇଯାଇଛି ଯେ ପାଠକ ସମକ୍ଷରେ ଚିତ୍ରଟିଏ ଦିଶିଯାଉଛି— ଭାଷା ସେଇଠି ଛପି ରହିଯାଉଛି—ସାମ୍ନାକୁ ଆସୁନାହିଁ – ସାର୍ଥକ ଶବ୍ଦ ଗ୍ରନ୍ଥନରେ ଚିତ୍ରମୟ ହୋଇ ଭାଷା ସ୍ୱୟଂ ଭାଷାକୁ ଅତିକ୍ରମ କରି ଯାଉଛି ।

କବିତାର ଭାବ ଉପାଦାନ ପଶୁଳ ଓ ଚିରନ୍ତନ । ମଣିଷ କପିସହି ପରିଚିତ ହେବା ଦିନରୁ, ଶବ୍ଦରେ ହୃଦୟାଭିବ୍ୟକ୍ତିକୁ ପ୍ରକାଶ କରିବା କାଳରୁ କବିତା ସଂରଚନା ହୋଇଚାଲିଛି । ମଣିଷର ଜୀବନସତ୍ତା ଥିବାଯାଏ କବିତାର ଆବଶ୍ୟକତା ରହିଥିବ ଓ ତାହା ସଂରଚିତ ହୋଇ ଚାଲିଥିବ । କାରଣ—ଏଇ ଜୀବନର ରହସ୍ୟ ଅପରିସୀମ— ସେହି ରହସ୍ୟର ଅଂଶଟିଏ ମାତ୍ର ଅଭିବ୍ୟକ୍ତ ହୋଇପାରିଛି ଏଯାବତ୍ । ଅପରିସୀମ, ଅଶେଷ ଏଇ ରହସ୍ୟ ଚିରକାଳ ପ୍ରକାଶ ଲୋଡ଼ୁଥିବ ଶବ୍ଦ ମାଧ୍ୟମରେ । କବିତା ଜୀବନର ବାସ୍ତବତାକୁ ରୂପାୟିତ କରୁଥିବ, କଳାର କଷଟିରେ ପରଖି ପରଖି । ତେବେ ଆଧୁନିକ କବିତା ବାସ୍ତବତାଠାରୁ ଦୂରେଇ ଯାଉଥିବାର ଅଭିଯୋଗ ଭିତ୍ତିହୀନ । କବିତାରେ ବାସ୍ତବତା, କଳାଗତ ବାସ୍ତବତା, ହୃଦୟବୃତ୍ତି ଦ୍ୱାରା ଉପଲବ୍ଧ ବାସ୍ତବତା – ତାହା ବସ୍ତୁଗତ ବା ବୈଜ୍ଞାନିକ ବାସ୍ତବତା ନୁହେଁ । ଏହି ପୃଥକ୍ ବାସ୍ତବତାରେ କଣ୍ଟାଟିକୁ 'କଣ୍ଟା' ବୋଲି କୁହାଯାଇପାରେ, ରୂପାୟିତ କରାଯାଇପାରେ ଏବଂ କଣ୍ଟାଟିକୁ ଫୁଲ ରୂପେ ମଧ୍ୟ ଚିତ୍ରଣ କରାଯାଇପାରେ । କାରଣ ଫୁଲକୁ ସ୍ପର୍ଶ କଲାବେଳକୁ ଯେଉଁ କଣ୍ଟାର ଆଘାତ ହୁଏ, ଫୁଲର ସୁଗନ୍ଧ ଓ ଲାବଣ୍ୟର ଉପଭୋଗ କାଳରେ କଣ୍ଟାର ସେହି ଆଘାତ ନଗଣ୍ୟ, ହେୟ ପୁଣି ବରଣୀୟ ମନେ ହୋଇପାରେ । ସେତେବେଳେ କଣ୍ଟାଟି ଫୁଲ ଭିନ୍ନ ଅନ୍ୟ କେଉଁ ରୂପରେ ପ୍ରତୀତ ହେବ ? ତେଣୁ କବିର ଲେଖନୀରେ କଣ୍ଟା ବାସ୍ତବରେ କଣ୍ଟାଟିଏ ହେଲେ ବି ଫୁଲରେ ରୂପାନ୍ତରିତ ହେବା ଅବାସ୍ତବ ନୁହେଁ ।

କବିତା ମାଧ୍ୟମରେ କବି ଓ ପାଠକର ଯେଉଁ ଯୋଗାଯୋଗ ଜନିତ ସମ୍ପର୍କ ପ୍ରତିଷ୍ଠିତ ହୁଏ, ସେହି ସମ୍ପର୍କ ସାରସ୍ୱତ ସମ୍ପର୍କ । ଏହା ପ୍ରୟୋଜନଭିତ୍ତିକ ବା ଉଦ୍ଦେଶ୍ୟ-ଭିତ୍ତିକ ନୁହେଁ । ଯଦିବା ଏହାର ପ୍ରୟୋଜନ ରହେ, ବାହ୍ୟ ସଂସାରର ପ୍ରୟୋଜନରେ ତାହା ନିର୍ଣ୍ଣିତ ହୁଏ ନାହିଁ, ଆତ୍ମାର ପ୍ରୟୋଜନ ଦ୍ୱାରା ନିର୍ଣ୍ଣିତ ହୁଏ । ତେଣୁ ପାଠକ ଓ କବିର ଆତ୍ମାର ଏକ ଅନିର୍ବଚନୀୟ ସଂପର୍କ କବିତା ମାଧ୍ୟମରେ ସମ୍ଭବ ହୋଇପାରେ ।

କବିତାର ସଂରଚନା ଓ ସଂପ୍ରେଷଣରେ ଭାଷାର ସର୍ବାଧିକ ଗୁରୁତ୍ୱ ରହିଛି । କବିତା ଶବ୍ଦଗତ କଳାମାନଙ୍କ ମଧ୍ୟରେ ସବୁଠୁ ବେଶୀ ସ୍ଥାନୀୟତାଭାବ (localness) ଦ୍ୱାରା ଆକ୍ରାନ୍ତ ।

କାରଣ ଇଙ୍ଗିତ, ସୂଚନା ଓ ଭାଷାର ନର୍ଯ୍ୟାସ ଦ୍ୱାରା ଉପଲବ୍‌ଧିକୁ ଚିନ୍ତା ଓ ବିଶ୍ୱାସକୁ କବିତା ରୂପଦାନ କରେ । ସେଥିପାଇଁ ଗଦ୍ୟ ରଚନାକୁ ଭାଷାନ୍ତର କରିବା ଅନେକାଂଶରେ ସଫଳ ହୋଇଥାଏ । ମାତ୍ର କବିତାର ଅନୁବାଦ ସଫଳତା ଲାଭ କରିବା ସହଜ ନୁହେଁ । ଜଣେ ମନୀଷୀଙ୍କ ମତରେ କବିତାକୁ ଅନୁବାଦରେ ଗ୍ରହଣ କରିବା ଯାହା, ଗୋଟିଏ ଗୋଲାପକୁ କାଚର ଡବା ମଧ୍ୟରେ ରଖି ଦେଖିବା ପ୍ରାୟ ସେଇଆ । କାଚ ଡବା ଭିତରୁ ସୁଗନ୍ଧ ଓ ଲାବଣ୍ୟରହିତ ଗୋଲାପଟିକୁ ଆମେ ପାଇଥାଉ, ପାଇପାରିବା ଭାଷାନ୍ତରିତ କବିତାକୁ । ଭାଷାନ୍ତରିତ କବିତା ତା'ର ଆର୍ଥିକ ଅଭିବ୍ୟକ୍ତି ଓ ନର୍ଯ୍ୟାସକୁ ହରାଇଥାଏ ଓ ମୂଳ କବିତାର ସୁଗନ୍ଧ ଲାବଣ୍ୟକୁ ଆମେ ପାଇପାରୁନା, ସେଥିପାଇଁ କବିତାରେ ଭାଷାର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

କବିତା ସଂରଚନା ସମ୍ପର୍କରେ ମୋ' ନିଜ ଅଭିଜ୍ଞତାରୁ ମୁଁ କିଛି ପ୍ରକାଶ କଲେ ହୁଏତ ସଂରଚନା କର୍ମଟିର ବସ୍ତୁସ୍ୱକର ଭୂମିକା ବୁଝିବା ସହଜ ହୋଇପାରେ । ମୁଁ ଏପରି କବିତା ବେଳେବେଳେ ରଚନା କରିଛି, ଯାହା ପରବର୍ତ୍ତୀ ସମୟରେ ମୁଁ ନିଜେ କିପରି ଲେଖିଲି ବୋଲି ଆଶ୍ଚର୍ଯ୍ୟ ହୋଇଛି । ଏଡ଼େ ଚମତ୍କାର ଭାବ ଓ ଭାଷାର ମାଧ୍ୟମ ମୁଁ କିପରି ବା ହୋଇପାରିଲି ? ମୋର ବିଶ୍ୱାସ ହୋଇନାହିଁ । ମନେ ହେଉଚି, ମୁଁ ନୁହେଁ, ମୁଁ ସେସବୁ ଲେଖିପାରିନି କୋଉଠୁ ! ପୁଣି ବେଳେବେଳେ ଏପରି କବିତା ଲେଖିଚି—ଯାହା ଏବେ ପଢ଼ିଲେ ସଂରଚନା କାଳର ପରିବେଶ, ଆବେଗ ଓ ଅନୁଭବ ସତେଜ ଭାବରେ ମୋ' ହୃଦୟକୁ ଅଧିକାର କରୁଛି । ଚିତ୍ର ଜଳଜଳ ଦିଶିଯାଉଛି ମୋ' ଆଖିରେ···ଅନୁଭବ ଲିପିବଦ୍ଧ ହୋଇରହିଛି ଚିତ୍ର ମାଧ୍ୟମରେ । ଏମିତିକି ଗୋଟିଏ ଗୋଟିଏ କବିତା ଅଛି—ଯାହା ପଢ଼ିଲେ ହୃଦୟ ଭାଙ୍ଗିପଡ଼ୁଛି—ବୁଝିହେଉଚି ଯେ, ଚେତନାରେ ପ୍ରତ୍ୟକ୍ଷୀଭୂତ ଉପଲବ୍‌ଧି ଏଥିରେ ଉତ୍ତୀର୍ଣ୍ଣ ହୋଇ ପାରିନାହିଁ । ଶବ୍ଦ ବନ୍ଧିତ ହୋଇପାରି ନାହିଁ ସେ ଅନନ୍ୟ ଅନୁଭବ···ଯାହା ପ୍ରକାଶ ପାଇଚି, ତାହା ଅତ୍ୟନ୍ତ ହ୍ରସ୍ୱ, କ୍ଷୀଣ ହତୋତ୍ସାହକର । ମୁଁ ତେବେ ଲେଖିଚି କ'ଣ ? କବି ବୋଲାଉଥିବା ମଣିଷଟି ମୁଁ କ'ଣ ବା କହିପାରିଚି ?

ଏହା ନିଃସନ୍ଦେହ ଯେ ମୁଁ କିଛି କରିପାରି ନାହିଁ, ପାରିବି ନାହିଁ । କବିତାଲେଖି ଏ ସୃଷ୍ଟିକୁ ବଦଳାଇ ଦେଇପାରିବାର ଶକ୍ତି ମୋର ନାହିଁ । କବିତାଠାରୁ ତେଣୁ କିଛି ଦାବୀ କରି ବସିବାର ଅଧିକାର ବି ମୋର ନାହିଁ । ପୁରସ୍କାର ସମ୍ମାନ ଯାହା ମିଳିଛି, ଯାହା ବି ମିଳି ନାହିଁ କୌଣସିଟି ମୋର ହୋଇ ନପାରେ । ମାନବ ସଭ୍ୟତାର କଳାତ୍ମକ ଇତିହାସକୁ ଅନୁଧ୍ୟାନ କରି ଜଣାଯାଇଛି ଯେ ଯୁଗେ ଯୁଗେ କେତେ କବି ଜନ୍ମ ନେଇଛନ୍ତି, କବିତାର ସମୁଦ୍ର ରଚନା କରି ଯାଇଛନ୍ତି । ସେଇ ସମୁଦ୍ରର ଜଳ ତୁଳନାରେ ମୋର କାବ୍ୟ ସୃଷ୍ଟି ବୁନ୍ଦାଏ ଲୁହର ପରିମାଣ ମାତ୍ର । ତେଣୁ ଚିରନ୍ତନ କାବ୍ୟ ସମୁଦ୍ରରେ ମୋ କାବ୍ୟ ସାଧନା ବିନ୍ଦୁଏ ଲୁହ ଭିନ୍ନ ଅଧିକ କିଛି ନୁହେଁ । ସମୁଦ୍ରର ଅପାର ଜଳରାଶିରେ ମୁଁ ମୋର ଲୁହ ବୁନ୍ଦାକ ସଂଯୋଗ କରିଛି ମାତ୍ର ।

## କବର ଭଗ୍ୟ

ଚରଞ୍ଜିଏ ମୁହୂର୍ତ୍ତିଟିଏ । ନମିଷଟିଏ—ପଲକପାତ ମାନ୍ତ ସୂକ୍ଷ୍ମ କାଳ କ୍ଷୟସ୍ଥାନ ଅକ୍ଷର ।

ଜଲବୁଦ୍‌ବୁଦ୍‌ଟିଏ-କ୍ଷଣିକ । ସେଇ ଜଲରୁ ଜାତ, ସେଇଠି ହୁଏ ବିଲୀନ—ତା'ର ତ ଆଉ ପରସମାପ୍ତି ନ ଥାଏ, ନ ଥାଏ ଶେଷ, କେବଳ ରୂପାନ୍ତର ସମ୍ଭବ ହୋଇଥାଏ । ସୁଦୀର୍ଘ ଜଲବେଣୀର ଅଂଶଟିଏ ହୋଇ ସେ ସ୍ରୋତ ପାଲଟିଯାଇଥାଏ । ତା'ର ପୃଥକ୍ ଅସ୍ତିତ୍ୱ ଚହ୍ନି ହୁଏନା ପିନା, ସେ ଥାଏ, ବର୍ତ୍ତମାନ ରହୁଥାଏ । ଠିକ୍ ଯେମିତ ମୁଁ—ଆଜ ଅଛ କାଲକ ନାହିଁ—କ୍ଷଣିକ ସ୍ନେ ମୋର ମାଟିଘର—ତାଠୁଁ କ୍ଷଣିକ ମୋର ସମୁଦାୟ ସ୍ନେହ ଓ ସ୍ୱପ୍ନସମ୍ଭାର । ଏ କ୍ଷଣଭଙ୍ଗୁରତା ହାତରୁ କଛ ବ ମତେ ରକ୍ଷା କରପାରେନା—ମୋର ଜ୍ଞାନ, ବଚକ୍ଷଣତା, କୁବେର ସମ୍ପତ୍ତି କଛ ବ ରକ୍ଷା କରପାରେ ନାହିଁ—ତେବେ···ମୁଁ କ'ଣ କ୍ଷଣଭଙ୍ଗୁରତାର ଦାସ ? କାହିଁକ ତେବେ ମୋର ତେଜସ୍ୱୀ ପୂର୍ବପୁରୁଷ ନବେଦନ କରଥିଲେ 'ମୃତ୍ୟୋର୍ମୁକ୍ଷୀୟ ମାମୃତାତ୍' 'ମୃତ୍ୟୁପାଶାବଦ୍ଧ ମୋର ସତ୍ତାକୁ ଅମରତ୍ୱର ଅଧିକାର ପ୍ରଦାନ କର' । ନଜ ସମ୍ପର୍କିତ ସବୁ ଯଦ ମୃତ୍ୟୁର ଅଧୀନ, ମୃତ୍ୟୁକୁ ଅତକ୍ରମ କରଯିବାର ଇଚ୍ଛା କାହିଁକ ? କାହା ସମକ୍ଷରେ ଏ ନବେଦନ ? ନଜ ହୃଦୟ ସମକ୍ଷରେ ? ମରଣମୁଖୀ ମଣିଷର ଅମୃତ ସମ୍ଭାବନା ନକଟରେ ?

ହିଁ, ସେଇ ସମ୍ଭାବନା ନକଟରେ । ସମ୍ଭାବନା ଯେ ସତ୍ୟଠାରୁ ଦୂରସ୍ଥ ହୋଇନ ପାରେ । ବାସ୍ତବ ସଂସାରର ଭଙ୍ଗୁରତା, ମିଥ୍ୟା, ଅସଫଳତାକୁ ନଜ ହୃଦୟର ରଙ୍ଗରେ ଅନୁରଞ୍ଜିତ କରବାର ଏଇ ଆଗ୍ରହ—ଅମୃତ ସମ୍ଭାବନାମୟ ହୃଦୟର ରସରେ ମୃତ୍ୟୁକୁ ପ୍ଲାବିତ କର ନଶ୍ଚିହ୍ନ କରଦେବାର ଏ ଇଚ୍ଛା ଅଯଥାର୍ଥ ହୋଇ ନପାରେ ।

ଏହି ଶରୀର ବଶ୍ୱର ଅପାର କରୁଣାର ଦାନ । ବଶ୍ୱ ପ୍ରତନୟୃତ ବ୍ୟକ୍ତ ସତ୍ତାରେ ନଜକୁ ପ୍ରକଟିତ କରୁଛି—କେବଳ ନାମ ବ୍ୟତୀତ ସବୁ କଛ ଅପରବର୍ତ୍ତନୀୟ । ମାଟି, ପାଣି, ପବନର ସହଯୋଗରେ ଗଢ଼ା ଦେହ, ତା ହୁଏତ ମାଟି, ପାଣି, ପବନ ସହତ ଏକାକାର ହୋଇଯିବ—ନର୍ଦ୍ଦିଷ୍ଟ ବ୍ୟକ୍ତ ବ୍ୟକ୍ତସତ୍ତାମାନ୍ତ ସହ ଏକୀଭୂତ ହୋଇଯିବ । ଚେତନା ଦ୍ୱାରା ଉପଲବ୍ଧ ଭାବରାଜ, ହୃଦୟରେ ସ୍ପନ୍ଦନ ତୋଳଥିବା ଅନୁଭବମାନ

ଶରୀରର ଅବର୍ତ୍ତମାନରେ ହଜଯିବ ନାହିଁ—ମୁଁ ନଥିବା ଯିନା, ମୋ ସମାନ ବନ୍ଧୁ ହୃଦୟରେ ଅନୁରୂପ ସ୍ପନ୍ଦନ ତୋଳୁଥିବ ସେଗୁଡ଼ିକ । ବାତ୍ସଲ୍ୟର ଆକୁଳତା ଭିତରେ ଆନ୍ଦୋଳିତ ହେଉଥିବ ମୁଁ, ପ୍ରେମର ହୃତ୍‌ସ୍ପନ୍ଦନ ଭିତରେ ସଜାଗ ମୋର ଉପସ୍ଥିତିର ସଘନତା, ପ୍ରତିଟି ଲୁହବିନ୍ଦୁରେ ଭିଜିଥିବ ମୋର ବିପନ୍ନ ବେଦନାବୋଧ । ସେଗୁଡ଼ିକର ତ ବିକଳ୍ପ ନାହିଁ, ନାହିଁ ରୂପାନ୍ତର !

ନ ଥିବି ମୁଁ । କିନ୍ତୁ…ପୁଣି ସାନ ଝିଅଟିଏ ଆକାଶକୁ ଦେଖି ଦେଖି ଭାବୁଥିବ—ଏଇତ, କୋଠାଘରର ଉପରକୁ ଝୁଲିପଡ଼ିଛି ଆକାଶ, ଯାଉଛି, ଦୌଡ଼ିଯିବି, ତାକୁ ଛୁଇଁଦେବି, ହାତ ମାରିଦେବି ତା'ଠି । କେବେ ପୁଣି କିଶୋରୀଟିଏ ଗାଧୁଆ ଘରର ଷ୍ଟାଇଲଇଟ୍ ଫାଙ୍କରେ ଲଟ୍‌କି ପଡ଼ିଥିବା ଜହ୍ନଆଡ଼କୁ ଅନେଇଁ ମୁହଁ ଫୁଲେଇ କହୁଥିବ—'କେଡ଼େ ଦୁଷ୍ଟଟାଏ ମ ତୁ—ଯାଃ, ଏମିତି ଉଙ୍କିମାରି ଚାହିଁବା କ'ଣ ଠିକ୍ ହେଉଛି ତୋର ?'

ଆଉଦିନେ ଝିପିଝିପି ବର୍ଷାଭିଜା ମୁହଁସଞ୍ଜବେଳେ ଘାସରଙ୍ଗର ଶାଢ଼ୀ ପିନ୍ଧି ଝିଅଟାଏ ଆସିବ—ଆସିବ ନୂଆକରି ବଉଳ ଧରିଥିବା ଆମ୍ବଗଛ ମୂଳକୁ । ଆଉଁସି ଦେବ, କୁଣ୍ଢେଇ ଧରିବ ତାକୁ—ଚୁପ୍‌ଚୁପ୍ କହିବ—'କେଡ଼େ ସୁନ୍ଦର, କେତେ ଭଲ ତୁ ।' ମଧ୍ୟବୟସ୍କା କଣେ—ଘାସବୁଦା ଭିତରେ ଚକ୍‌ଚକ୍ ମାରୁଥିବା ସାପରଆଖିକୁ କାକରଟୋପା ଭାବି ଗୁପିଦେବାକୁ ଖୁସିରେ ପାଦ ବଢ଼ାଉଥିବ ପୁଣି…କିଛି ସରି ନଥିବ—ବହମାନ, ନିତ୍ୟ ନୂତନ ସମୟ—ସବୁ ନୂଆ, ସବୁ ଆକର୍ଷଣୀୟ ।

ତେବେ…ମୃତ୍ୟୁ କ'ଣ ? ଅମରତ୍ୱ ବା କ'ଣ ? ଅମୃତପ୍ରୟାସୀ ସତ୍ତା ମୃତ୍ୟୁକୁ ଅସ୍ୱୀକାର କରେନା, ଅତିକ୍ରମ କରିଯାଏ—ମୃତ୍ୟୁସହ ନିବିଡ଼ ପରିଚୟରୁ ମୃତ୍ୟୁକୁ ଅତିକ୍ରମ କରିଯିବାରେ ସେ ସମର୍ଥ ହୁଏ । ମୃତ୍ୟୁର ଆରପାରିଟା ତା ଆଖିରେ ଜଳଜଳ ଦିଶିଯାଏ । ସେହି ଅବର୍ତ୍ତମାନ ଜଗତ ଯେ ଚିର ବର୍ତ୍ତମାନ ତା ବୁଝିଯିବାରେ ଆଉ ବାଧା ନ ଥାଏ ।

କିଛି କିଛି ବୁଝିବାକୁ ଚେଷ୍ଟାକରେ ମୁଁ । ଜୀବନ, ମୃତ୍ୟୁ, ଚିରନ୍ତନତା, ପ୍ରକୃତି, ସତ୍ୟ, ଈଶ୍ୱର—ଏସବୁ ତର୍କସାପେକ୍ଷ ଜ୍ଞାନସମୁଦ୍ରରୁ ଟୋପାଏ ମାତ୍ର ମୁଁ ହାତରେ ଥୋଇବାର ସାମର୍ଥ୍ୟ ଖୋଜେ—ସେଇ ଟୋପାକ ମୋ ପାପୁଲିରେ ଉଦୀପ୍ତମାନ ସୂର୍ଯ୍ୟପରି ଝଲସି ଉଠେ ମୁହୂର୍ତ୍ତେ । ମାନବିକ ଅଜ୍ଞତାରୁ ସଞ୍ଜାତ ମୋର ଅଭିବ୍ୟକ୍ତିରେ ପ୍ରସ୍ତ ପ୍ରସ୍ତ ଅଜ୍ଞତାର ଆବରଣ । ତଥାପି କହୁଛି, ମୁହୂର୍ତ୍ତ ଚିରନ୍ତନ, ଅମଳିନ, ଅକ୍ଷର । ହଁ, ଗୋଟିଏ ମୁହୂର୍ତ୍ତର ସ୍ୱାନୁଭବ ସମଗ୍ର ଜୀବନର ପରିପୂର୍ଣ୍ଣତାର ସମକକ୍ଷ ହୋଇପାରେ—ହୋଇପାରେ ବି ସମଗ୍ର ଜୀବନର ସମ୍ଭାବନାଠୁ ଅଧିକ । କିନ୍ତୁ ମୋର ଏଇ ଅଭିବ୍ୟକ୍ତି ଉପରୁ କ୍ଷଣିକତାର ଅନିବାର୍ଯ୍ୟ ଛାଇକୁ ପୋଛିଦେଇ ହେଉନାହିଁ । ମୋର ଅଜ୍ଞତା ଓ ଅସାମର୍ଥ୍ୟଠୁ ମୋର ଏଇ ଅଭିବ୍ୟକ୍ତି ସ୍ୱାଧୀନ ହୋଇପାରୁନାହିଁ ।

ସୁବିପୁଳ ଭାବରାଜି ହୃଦୟପଟରେ, ଚେତନାର ଆକାଶରେ ଘନୀଭୂତ ହେଲା-ବେଳକୁ, ନିଜେ ଚମକିପଡ଼ୁଚି ମୁଁ, କାତର ହୋଇ ଉଠୁଚି—ସେଇ ବିଶାଳ ରୂପକୁ ପ୍ରତ୍ୟକ୍ଷ କରି ପାରୁନାହିଁ । ସହଜରେ ଆଖି ବୁଜି ହୋଇଯାଉଚି—କିନ୍ତୁ···ନିଜକୁ ଦୂରେଇ ନେଇପାରୁ ନାହିଁ ସେଠାରୁ । ସେଇ ବିପୁଳତାର ଚନ୍ଦ୍ରାତପ ତଳେ ଏକାକୀ, ମୌନ ବସିରହିଚି ମୁଁ—ହେଠମାଥ—ନିଜ ଅପାରଗତାର କାଳିମାରେ ମୁହଁତାକି ବସିରହିଚି ନିର୍ବାକ୍, ନିସ୍ତବ୍ଧ । ଚେନାଏ ବାଙ୍ମୟତା ପାଇଁ ପ୍ରାର୍ଥନା କରୁଚି, ମୁଣ୍ଡକୋଡ଼ି ହେଉଚି । ଛିଦ୍ରଘଟରୁ ଜଳପରି ଅଲକ୍ଷ୍ୟରେ ଖସି ଚାଲିଯାଉଚି ସମସ୍ତ । କ୍ରମଶଃ ସେଇ ବିପୁଳ, ମହାନ୍ ଭାବରାଜି, ସେଇ ସୂକ୍ଷ୍ମତମ ଉପଲବ୍ଧିର ତୀକ୍ଷ୍ଣତା ମୋର ଅଯୋଗ୍ୟତାକୁ ଅପେକ୍ଷା ନ କରି ଆପଣାକୁ ମୋ ଠାରୁ ଗୋପ୍ୟ କରି ନେଉଛି । ମୁଁ ହାତ ବଢ଼େଇଲା ବେଳକୁ ମୋ ହାତମୁଠାରେ ଦାନା ବାନ୍ଧିଯାଉଚି କ୍ଷୁଦ୍ର କ୍ଷୁଦ୍ର ଉପଲବ୍ଧିର ସ୍ୱର ମାତ୍ର—ଅନାଇଁ ଦେଲାବେଳକୁ ସେହି ମହାନତା ଓ ତୀକ୍ଷ୍ଣତା ହରାଇ ଭାବରାଜିଗୁଡ଼ିକ ହୋଇ-ପଡ଼ିଚନ୍ତି ନିତାନ୍ତ ସାଧାରଣ—ଠିକ୍ ମୋରି ଭାଷାପରି, ମୋରି ଅସାମର୍ଥ୍ୟପରି । ଅତଏବ କୋଉ ଗର୍ବରେ କହିବି ଯେ ମୁଁ କବି, ମୁଁ ସରସ୍ୱତୀ, ବିଶ୍ୱର ସୁପ୍ରାଚୀନ ରହସ୍ୟର ପ୍ରବକ୍ତା—ମୃତ୍ୟୁହୀନ ଜୀବନବୋଧର ବାଣୀକାର ! ଲାଜରେ, ଦୁଃଖରେ ଲୁହ ଉଛୁଳି ପଡ଼ୁଛି । ହଜି ମିଳେଇ ଯାଇଥିବା ସେଇ ମହାନତା, ସେଇ ତୀକ୍ଷ୍ଣତା, ସେଇ ସୌନ୍ଦର୍ଯ୍ୟ କିନ୍ତୁ ଅପହଞ୍ଚ ରହିଯାଉଛି । ଧରି ଦେଉନାହିଁ । କବିଟିର ଚରମ ଦୁଃଖ ରହିଯାଉଛି ସେଇଠି ।

ବାସ୍ତବ ବିଶ୍ୱର ସମାନ୍ତରାଳ ଏକ ବିଶ୍ୱ କବିର ଚେତନାରେ ଜନ୍ମନେଇ ବଢ଼ି ବଢ଼ି ଚାଲିଥାଏ । ଏଠି ଯାହା ମିଳେନାହିଁ ସେଠାରେ ତା' ମିଳିଥାଏ—ଏଠି ଯାହା ଘଟେ ନାହିଁ, ସେଠାରେ ତା' ଘଟିତ ହୋଇଥାଏ । ସେଇ ବିଶ୍ୱର ପରିଚୟ ଅପର ନିକଟରେ ବଖାଣିବାର ପ୍ରୟାସରେ ସେ ଆଜୀବନ ଧନ୍ଦିହୁଏ । ଅଥଚ···ଅସାମର୍ଥ୍ୟଜନିତ ଦୁଃଖକୁ ବରଣ କରିନେବା ହିଁ ତା'ର ଭାଗ୍ୟ—ସାଧାରଣ କବିଟିର ଭାଗ୍ୟ । ମୋର ଭାଗ୍ୟ ।

## ମୋର ବୋଲି କିଛି ନାହିଁ

ବିଶାଳ ଏଇ ପୃଥିବୀରେ ତୁମେ ଆଉ ମୁଁ—ମୁଁ ଏକ ସାମାନ୍ୟ ସତ୍ତା—ତୁମେ ମୋ' ଭିନ୍ନ ଓ ସାରା ବିଶ୍ୱର ପ୍ରତିନିଧି—ଦୂରର ପୁଣି ନିକଟର, ବିପୁଳ ପୁଣି ବିନ୍ଦୁ-ସମ୍ଭବ । ତୁମର ଏଇ ମାୟାରୂପର କିଛି ଅଂଶ ମୁଁ ଦେଖି ଛୁଇଁପାରେ ହୁଏତ, ବାକିତକକୁ ଦେଖିପାରେ ନାହିଁ, ଛୁଇଁପାରେ ନାହିଁ । ଅନୁଭବ କରିପାରେ ବେଳେବେଳେ ମୁଷ୍ଟିମାତ୍ର ମୋର ହୃଦୟରେ ସାରା ପୃଥିବୀର ଅସ୍ତିତ୍ୱକୁ ମୁଁ ଅନୁଭବ କରେ । ବୁଝିପାରେ କାରୁଣ୍ୟ, ଅଶ୍ରୁ, ଭୟାବହତା ଓ ପ୍ରେମ—ସକଳ ମୋର ହୃଦୟରେ ଫୁଟିଉଠନ୍ତି···ଫୁଲପରି, ତାପରି ସୁଗନ୍ଧ ଓ ଆଭାରେ ଚମକାଇ ଦିଅନ୍ତି ମୋର ସାମାନ୍ୟ ଅସ୍ତିତ୍ୱକୁ । ସେତେବେଳେ ମୁଁ ଆଉ ମୋର ନାମରୂପର ପରିଧି ଭିତରେ ନଥାଏ—କଳ୍ପନାରେ, ଜ୍ଞାନ ଓ ଅବବୋଧ ମଧ୍ୟରେ ସ୍ପର୍ଶିଥିବା ଏଇ ବିଶ୍ୱର କୋଣେ କୋଣେ ବିଚ୍ଛୁରିତ ହୋଇ ପଡ଼ିଥାଏ ମୁଁ । ଉଲ୍ଲାସ ଓ ଉତ୍ଫୁଲ୍ଲତା ମୋତେ ସ୍ପନ୍ଦମାନ କରି ତୋଳେ······ମୁଁ ଜଳନିସ୍ୟନ୍ଦୀ ମେଘଖଣ୍ଡେ···ମହାମେଘର ଅନନ୍ତ ବିସ୍ତୃତି ସହ ମିଶିଯାଏ—ଟିକେ ପବନରେ ଚଳପ୍ରଚଳ ହେଉଥିବା, ଉଷ୍ଣତାର ସ୍ପର୍ଶମାତ୍ରେ ବିଗଳିତ ଓ ନିଃଶେଷ ହୋଇ ମାଟିରେ ଲେଟିଯାଉଥିବା ମେଘ ମୁଁ—କ୍ଷଣିକ ମୋର ସ୍ଥିତି—ମୁଁ କେମିତି କେଜାଣି କୋଉ କୌଶଳରେ ମହାନ ବିଶ୍ୱର ଦୂରୁଦୂରୁ ଆତ୍ମାକୁ ଛୁଇଁ ପକାଏ···ତା' ସହିତ ମିଶିଯାଏ ।

ମୋର କ୍ଷଣ ବିଳୀୟମାନ ମେଘସତ୍ତା ଯେତିକି ସତ, ଏଇ ବିପୁଳ ମହାସତ୍ତା ସହ ମୋର ସମ୍ପର୍କ ବି ସେତିକି ସତ । ଏଇ ଦୁଇଟି ସତ୍ତା ମୋର—ଗୋଟିଏ ଦୃଶ୍ୟଭୂମିରେ ତ ଆଉ ଗୋଟିଏ ଅଦୃଶ୍ୟ ଭୂମିରେ ଠିଆ ହୋଇଥାଏ । ମୋର ମେଘ ସତ୍ତାଟିକୁ, କ୍ରିୟାଶୀଳ ଦୃଶ୍ୟ ସତ୍ତାଟିକୁ ସମସ୍ତେ ଗ୍ରହଣ କରନ୍ତି । ମୋର ମହାନ ସତ୍ତାଟିକୁ, ଯାହା ଦିଶେ ନାହିଁ, ବ୍ୟକ୍ତ ହୋଇପାରେ ନାହିଁ, ତାକୁ ବୁଝିପାରେ କେବଳ ମୁଁ—ସେଇ ସତ୍ତାକୁ ବ୍ୟକ୍ତ କରିବାକୁ ଆକୁଳ ହୁଏ—ସେହି ଜୈବ ଓ ଅନୁଭବକୁ, ଅସାଧାରଣ ସତ୍ତାକୁ ଅଭିବ୍ୟକ୍ତ କରିବା ପାଇଁ ମୋ ପାଖରେ ଥାଏ ଏଇ ସାଧାରଣ ଶବ୍ଦ ସମ୍ଭାର । ତେଣୁ ମୋର ଅଭିବ୍ୟକ୍ତି ହୁଏତ ସମୁଦାୟ ସଫଳ ହୁଏ ନାହିଁ—କିଛିଟା ସଫଳତା ଓ କିଛିଟା ବିଫଳତା ଭିତରେ ଆନ୍ଦୋଳିତ ହେଉଥାଏ ମୁଁ ।

ଖଟ ଉପରେ ଶୋଇରହି ଶ୍ୱାସପ୍ରଶ୍ୱାସ କ୍ରିୟାରେ ଲିପ୍ତଥିବା ମୋର ଶରୀର ଭିତରେ ସାରା ବିଶ୍ୱ କେମିତି ଫିଟିପଡ଼େ—ବିସ୍ତାରିଯାଏ କେଜାଣି ! ପୃଥିବୀର କୌଣସି

ଅଞ୍ଚଳରେ ବୋମାଧ୍ୱସ୍ତ ସହରଟିର ଆତଙ୍କିତ ଅଧିବାସୀଙ୍କ ଚତ୍କାର ମୁଁ ଶୁଣିପାରେ, ଲାଗେ ସେ ଚତ୍କାର ଯେମିତି ମୋର ପ୍ରାଣରୁ ବାହାର ଆସୁଚ—କୋଉ ଅପରଚିତା ଧର୍ଷିତା ନାରୀର ଜ୍ୱାଳା ମୋ ନିଜ ଦେହରେ ଫୁଟିପଡ଼େ…ପୋଡ଼ିଯାଉଥିବା ମୋର ଶରୀର, ମନ… ବିମର୍ଷ ଶିଶୁର କାନ୍ଦ କାନ୍ଦ ଆଖି ମତେ ଗ୍ରହିଁରହେ ଏକ ଲୟରେ…ପୁଣି କାଟପତଙ୍ଗଙ୍କ ଜୀବନର ଶୃଙ୍ଖଳା ଭିତରେ ମୁଁ ସ୍ୱ-ଆବେଗକୁ ଆରୋପିତ କରିପକାଏ—ଭୂମି…ପ୍ରାଣୀ… ଆକାଶ…ଏଗୁଡ଼ିକ ସେମାନଙ୍କ ସମଗ୍ରତା ନେଇ ମୋ ଭିତରେ ପ୍ରକାଶିତ ହୋଇପଡ଼ନ୍ତି ।

ଖାଲି ଏତିକି ନୁହେଁ…ଶ୍ରାବଣ ଆକାଶର ମେଘଖଣ୍ଡେ ମୁଁ—ପବନ ଗ୍ଳାଳିତ ଠେଲିହୋଇ ଗ୍ଳୁଥାଏ ତ…ଗ୍ଳୁଗ୍ଳୁ ଖସିପଡ଼େ ବସୁନ୍ଧରା ଉପରେ । ଖସିପଡ଼େ, ମାଟି କାନ୍ଧୁଅରେ ଗୋଳି ହୋଇଯାଏ—ତୃଷାର୍ତ୍ତ ମାଟିର ଓଠ ଦେଇ ମୁଁ ପୃଥିବୀର ଜଠରରେ ପଶେଁ । ଆଞ୍ଜୁଳାଏ ମାଟିରେ ନାନାଜାତିର ଫୁଲ ଫୁଟାଏ—ସମଗ୍ର ଧରଣୀକୁ ଶସ୍ୟସମ୍ଭବା କରେ, ଶ୍ୟାମଳ କରେ ବନଭୂମିକୁ; ନଦୀକୁ, ନର୍ଝରକୁ ଉଚ୍ଛ୍ୱସିତ ଗତି ପ୍ରଦାନ କରେ । ଶୁଖିଯାଉଥିବା ନଦୀର ଧୂସରତାକୁ ମୁଁ ସହ୍ୟ କରିପାରେନା—ଜଳିପୋଡ଼ି ଯାଉଥିବା ଗଛବୃଛ ପାଇଁ ମୁଁ ପ୍ରାଣ ବିସର୍ଜି ଦବାକୁ ଆଗଭର ହୁଏ । ମୋ ସାମାନ୍ୟ ସତ୍ତାର ଧର୍ମ ମୋ ଭିତରେ ଅତୁଟ, ଜୀବନ୍ତ ରହିଥାଏ ।

ମୋ ଉଭୟ ସତ୍ତା ମତେ ନିଃଶେଷ କରିଦେବାକୁ ଯଥେଷ୍ଟ । ମୋର ସାଧାରଣ ସତ୍ତା ତ ସ୍ୱତନ୍ତ୍ର ପରିଚୟକୁ ହରାଇ ଦେବାକୁ ଉନ୍ମୁଖ ହୋଇଥାଏ—ମୋର ବିପୁଳ ସତ୍ତା ସହ ଏକାତ୍ମତା ବି ମତେ କମ୍ ବେଦନାମୟ ଆନନ୍ଦର ଆସ୍ୱାଦନ ଦିଏନା !

ଶରୀରଟିଏ ଭିତରେ ବିଶ୍ୱର ସମଗ୍ରତା ଯେତେବେଳେ ଫୁଟିପଡ଼େ, ସେତେବେଳେ ଆଉ ଥାଏ କ'ଣ—କି ବିବାଦୀୟ, ସୂକ୍ଷ୍ମ ସେ ଶରୀରର ସ୍ଥିତି । ସାଧାରଣ ଘଟଣାଟିଏକୁ ଧରି ଧନ୍ଦି ହେଉଥିବା ମଣିଷ ଯେତେବେଳେ କୋଟି କୋଟି ଘଟଣାର ବିସ୍ତୃତ ଅବିସ୍ତୃତକୁ ଭୋଗିବାକୁ ଚେଷ୍ଟାକରେ, ତା'ର ଧନ୍ଦିହେବା, ଛଟପଟ ହେବାର କଳନା କରିବା କେବେ ସହଜ ହୋଇପାରେ ! ମୁଁ ଜାଣେ ଏ ଉଭୟ ସତ୍ତା ମୋ ପାଇଁ ସତ, ଅନୁଭବ୍ୟ—ଏଇ ଉଭୟ ସତ୍ତାକୁ ନେଇ ମୋର ଜୀବନ…ମୋର ଦିନ କଟାଇବା—ମୋର ସୁଖ ଦୁଃଖର ଅନୁଭୂତିକୁ ମାପିବସିବା । ମୁଁ ବ୍ୟକ୍ତି ସତ୍ତାଟିଏ ବିଶ୍ୱ ସତ୍ତାକୁ ନିଜଠି ଲୁଚାଇ ରଖିଚ— ଏକଥା ପ୍ରକାଶି ଦେବା କୌତୂହଳକର ନିଶ୍ଚୟ—ମାତ୍ର ଏହାର ଅନୁଭବ କି ବିଚିତ୍ର, ଆୟାସକର ! ତଥାପି ଦୁଇଟି ସତ୍ତା ଭିତରେ ମୁଁ କେବେହେଁ ଦ୍ୱିଧା ବିଭକ୍ତ ହୁଏ ନାହିଁ । ମତେ ଲାଗେ ମୋର ଗୋଟିଏ ସତ୍ତା, ଅନ୍ୟ ସତ୍ତାଟିର ପରିପୂରକ । ମୋର ମେଘତ୍ୱ, ମହାମେଘତ୍ୱ ସହିତ ସଂଯୁକ୍ତ, ହୋଇପାରେ ସେ ସଂଯୋଗର ସୂତ୍ର ବାହାରକୁ ଦିଶିବ ନାହିଁ—ଶବ୍ଦ ମାଧ୍ୟମରେ ଯେତିକି ମୁଁ ଦେଖାଇବାକୁ ଗ୍ରହିଁବି ସେତିକି ହୁଏତ ଯଥେଷ୍ଟ

ହେବ ନାହିଁ । ହେଲେ, ଏହି ଦୁଇଟି ସତ୍ତାର ଯୋଗାଯୋଗ ତ ମୋ ପାଇଁ ସତ୍ୟ, ଅଭିପ୍ରେତ ।

ଶୈଶବ କାଳରେ ଏହି ମହାସତ୍ତା ସହିତ ମୁଁ ଧୂଳି ଖେଳିଛି—ଏକୁଟିଆ ଘରୁରେ ଖୁଲିଯାଉଥିବା ବେଳେ ଆଳାପ କରିଛି କେବେକେବେ—ମୋ କିଶୋର ମନର ସ୍ୱପ୍ନହୋଇ ସେ ମୋ ଆଗରେ ରୂପ ଓ ରଙ୍ଗର ଦର୍ପଣଟିଏ ଟେକି ଧରିଚି—ଆତ୍ମୀୟତାର ଓ ବିଶ୍ୱାସର ଗମ୍ଭୀର ସ୍ୱରରେ ସେ ମୋତେ ଉତ୍ସାହ ଦେଇଛି···'ଭୟନାହିଁ, ମୁଁ ଅଛି' । ଯୌବନରେ···ଲଜ୍ଜାନାରେ, ଲଗ୍ନରେ, ଥଣ୍ଡା ଅନ୍ଧାର ଚଟାଣ ଉପରେ ମୁଁ ଘୂଞ୍ଚୁଥିଲି ବେଳେ ସେ ମୋ ହାତ ଧରିଚି । ପୁଣି ସକଳ କର୍ମର ଉଦ୍ଦାମତା ଭିତରେ ନିରନ୍ତର ସାଧନା ରୂପରେ ସେ ମୋର ସତ୍ତାକୁ ଆଲୋକମୁଖୀ କରିଛି—ମୋ ସାମାନ୍ୟ ସତ୍ତାର ଋସମନ୍ତ ଭାବନବେଦନକୁ ଗ୍ରହଣ କରିନେବାର ପ୍ରତିଶ୍ରୁତି ଦେଇଛି—

ତା'ପରେ···ହୁଏତ ଆହୁରି ନିବିଡ଼ତର ଉପଲବ୍ଧିର ସିଂହାସନରେ ମୋର ଅଭିଷେକ କରାଇବ ସେ···ଆହୁରି ଆହୁରି ସମ୍ପର୍କର ଘନିଷ୍ଠତା ମତେ ଅପେକ୍ଷା କରିଚି ଯେପରି···ସେ ସମ୍ପର୍କର ପରିଣତି କିପରି ହେବ, ମୁଁ ଆଜି ତାହା ଭାବିପାରୁ ନାହିଁ···ମୋ କଳ୍ପନାଠାରୁ, ଅଭିଳାଷ ଠାରୁ ଅଧିକ କିଛି, ଭିନ୍ନ କିଛି ବା ନହେବ କାହିଁକି ··ମଣିଷର ଚରମ ସମ୍ଭାବନାକୁ ସେ ପ୍ରମୂର୍ତ୍ତି ନ କରିବ କାହିଁକି ? ହୁଏତ ସେ ମହାସନ୍ଦେଶ ମତେ ମୃତ୍ୟୁ ପ୍ରତି କରୁଣାମୟ କରିଦେଇ ପାରେ ··ବଞ୍ଚିବାର ବନ୍ଧନଗୁଡ଼ିକୁ ମୁକ୍ତ କରିଦେଇ ପାରେ ସକଳ ବିକୃତିଠାରୁ—ଦୁଃଖକୁ, ଅବିଶ୍ୱାସକୁ ପୋଛି ପକାଇବାର ସାମର୍ଥ୍ୟ ଦେଇପାରେ !

ତା'ରି ଭରସାରେ ତ ମୁଁ ଭାଗ୍ୟକୁ ବି ବଦଳାଇ ଦେବାକୁ ସାହସ ବାନ୍ଧିଚି—ପୃଥିବୀର ସବୁତକ ଆଡ଼ମ୍ବରଠାରୁ ଦୂରେଇ ଆସିଚି ସ୍ୱଇଚ୍ଛାରେ······ସାଂସାରିକତାର ସ୍ୱାଭାବିକ ପ୍ରଗଲ୍‌ଭତାକୁ ପ୍ରଶ୍ରୟ ଦେଇ ନାହିଁ······ସମସ୍ତଙ୍କୁ ସଜାଇ ବସୁଚି ମହୋଲ୍ଲାସରେ···ନିନାଦିତ କରିଦେଉଚି ବେଦନାର କ୍ରନ୍ଦନରେ । ସ୍ୱ-ହୃଦୟର ଭାବାବେଗକୁ ବାଣ୍ଟି ଦେଉଚି ସଚରାଚର ନିଃଶବ୍ଦରେ···ଏକାନ୍ତରେ···ମୋର ବୋଲି କିଛି ନରହୁ··· କିଛି ନରହୁ । ନରହୁ କିଛି କ୍ଷୁଦ୍ରତା, ସୀମିତତା······ଅକୁଣ୍ଠ ସମର୍ପଣରେ ନିଃଶେଷ ହୋଇଯାଉ ମୋର ସତ୍ତା ·····ଠିକ୍ ଜଳଦାୟୀ ମେଘ ପରି······ମହାମେଘର ନିତ୍ୟଶୀଳ ଅଂଶଟିଏ ପରି ।

# ମୁଁ କାହିଁକି ଲେଖେ

କାହିଁକି ଆକାଶର ଗଭୀରତାକୁ ଅନାଇଁ ବସେ ? କାହିଁକି ନିଶାର୍ଦ୍ଧରେ ଶିଶିରପାତର ଶବ୍ଦକୁ କାନଡେରି ରହେ ? କାହିଁକି ଶେଯରେ ଶୋଇ ଗତ ସନ୍ଧ୍ୟାର ଆକାଶରେ ଉଡ଼ିଯାଇଥିବା ପକ୍ଷୀଙ୍କ ଘୁଙ୍ଗୁରିକୁ ଶୁଣିପାରେ ? କାହିଁକି ଧର୍ଷିତା ବାଳିକାଟିର ଅଭିଯୋଗକୁ ଅଙ୍ଗେ ନିଭାଉ ନିଭାଉ ଚମକିପଡ଼େ ? ଯୁଦ୍ଧ ବିଗ୍ରହରେ ଛଟପଟ ଆହତ ଶିଶୁର ମୁହଁ ଟି. ଭି. ପର୍ଦ୍ଦାରୁ ଉଠି ମୋ ନିଦ୍ରା ଭିତରକୁ ପଶିଆସେ ? ଏସବୁର କି ଉତ୍ତର ଦେବି ମୁଁ ?

ମୋଟାମୋଟି ସବାଶେଷ ଉତ୍ତରଟିକୁ ଦେଇଦେବି କି ? ନିଜ ବିଫଳତାକୁ ଥରକୁଥର ପରଖିବା ପାଇଁ ମୁଁ କବିତା ଲେଖେ ? ହଁ, ବିଫଳତାକୁ ହିଁ ତ ପରୀକ୍ଷା କରେ । ମାତ୍ର ଏହାଦ୍ୱାରା 'ଲେଖେ କାହିଁକି'ର ଆଂଶିକ ଉତ୍ତରଟିଏ ସିନା ଦେଇହେବ । ଦୀର୍ଘ ୩୦ ବର୍ଷର ଜୀବନ-ସାଧନା ଓ କାବ୍ୟ ସମ୍ପୃକ୍ତିକୁ ଧାଡ଼ିଏ କଥାରେ ତ ବୁଝାଇ ହେବ ନାହିଁ । ଅତଏବ ମୁଁ ନିଜକୁ ନିଜେ ଆଉଥରେ ପଚାରେ, ସତରେ ଲେଖେ କାହିଁକି ?

କାହିଁକି ଗୀତଟିଏ ଶୁଣିଲେ ପିଲାଦିନେ ସେଇ ସ୍ୱରରେ ନିଜେ କିଛି ଫାନ୍ଦ ପକାଏ ? ଘରେ ବୋଉର, ଆଈର କଥାକଥାକେ ଭଗବତମାଳି ପୁରାଣ-ଉପାଖ୍ୟାନ ବାପାଙ୍କର ଦୂରବିଦେଶର ଅସମ୍ପୃକ୍ତି, ଗୋପାଳଚନ୍ଦ୍ର ପ୍ରହରାଜ (ମୋର ଜେଜେବାପା ସେହି ପ୍ରଚଣ୍ଡ ପ୍ରତିଭାଧର ପୁରୁଷ)ଙ୍କ ପରିବାରର ଧାରା ସାହିତ୍ୟ ସଚେତନତା, କାବ୍ୟ-ରସିକତା, ଏହିସବୁ କ'ଣ ମୋର ଅବଚେତନରେ କାମ କରେ ? କେଜାଣି !

ସ୍କୁଲରେ ପଢ଼ିବା ସମୟରେ ଏପରିକି କଲେଜରେ ପ୍ରଥମ ବର୍ଷ, ଯାହା ଲେଖୁଥିଲି, ସବୁ କିଛି ତତ୍‌କ୍ଷଣାତ୍ ଛପା ହୋଇ ଯାଉଥିଲା, ଭଲ କି ମନ୍ଦ ଲେଖୁଛି, ଭାବିବାକୁ ଅବସର ନ ଥିଲା ମୋର । ଅଥଚ କାହିଁକି ଲେଖେ, ଏ ପ୍ରଶ୍ନ ବି ସେତେବେଳେ ଉଠିନାହିଁ ମନ ଭିତରେ । ୧୯୬୨ ମସିହା—ପ୍ରାକ୍ ବିଶ୍ୱବିଦ୍ୟାଳୟ ବିଜ୍ଞାନ ପରୀକ୍ଷାର ୨ୟ ସିଟିଂରେ ଥାଏ ପଦାର୍ଥ ବିଜ୍ଞାନର ପତ୍ର । ପୂର୍ବାହ୍ଣରେ ଥାଏ ମୋର ବିଷୁବ ମିଳନର ପୁରସ୍କାର । ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ କଡ଼ା ତାଗିଦ୍—ଯିବାକୁ ହେବ ନାହିଁ ଆଜି ଯୁନିଭରସିଟି ପରୀକ୍ଷା । ମୁଁ କିନ୍ତୁ ଅଟକିଲି ନାହିଁ—ପୁରସ୍କାର ନେଇ ଚାଲି ଆସିଲି । ପରୀକ୍ଷାରେ ପ୍ରଥମଶ୍ରେଣୀ ପାଇଲି ଅବଶ୍ୟ, କିନ୍ତୁ ବିଷୁବ ପୁରସ୍କାରର ଆନନ୍ଦର ଯେ ତୁଳନା ହିଁ ନ ଥିଲା ।

ଯେଉଁଦିନ ମୋର ବିବାହ, ସେଦିନ ମୋର କବିତା ବହିଟିଏ (ମୋର ସ୍ୱାମୀଙ୍କ କବିତା ସହ) ଛପା ହୋଇଥାଏ—ପୁଣି ବାହାରିଥାଏ ମୋର ପରୀକ୍ଷାଫଳ, ପ୍ରଥମ ଶ୍ରେଣୀ ।

କେତେକ ମୋତେ ପ୍ରଥମ ଶ୍ରେଣୀ ପାଇଁ ବଧେଇ ଜଣାଉ ଥାନ୍ତି । ମୋ ମନ ମରିଯାଉଥାଏ । ମୋ କବିତା ବନ୍ଦ ହେବା କ'ଣ କାହାରିକୁ ଦିଶୁନାହିଁ ? ପରବର୍ତ୍ତୀ ସମୟରେ ନିଜର ସେହି ମୂର୍ଖତାକୁ ମନେ ପକାଇଛି—କବିତା ବନ୍ଦଠାରୁ ମୋର ପ୍ରଥମ ଶ୍ରେଣୀର ଗୁରୁତ୍ୱ କେତେ ବେଶି ଉପାଦେୟ ଥିଲା—ନିମ୍ନ ମଧ୍ୟବିତ୍ତ ପରିବାରର ସ୍ତ୍ରୀଲୋକଟିଏ ମୁଁ, ପ୍ରଥମ ଶ୍ରେଣୀ ଯୋଗୁଁ ଚାକିରି ପାଇଲି, ଭଲରେ ଚଳିଲି । ଅଥଚ କବିତା, ତାକୁ ଏତେ ବଡ଼ ଭାବୁଥିଲି କାହିଁକି ?

ଅଳ୍ପ ବୟସରୁ ବିବାହ କରି ସଂସାର ଜଞ୍ଜାଳ, ପାଠପଢ଼ା ଓ କବିତା ଏକାସାଙ୍ଗେ ଧରିଲାବେଳକୁ କେଉଁଟା ବି ଠିକ୍ ମତେ ଚାଲୁ ନ ଥିଲା । ସ୍ୱାସ୍ଥ୍ୟ ଓ ମାନସିକତା ଖଣ୍ଡ ଖଣ୍ଡ ଭାଙ୍ଗି ପଡ଼ୁଥିଲା । ତଥାପି ଲେଖାଲେଖି ଦିଗରେ ଉତ୍ସାହ ଦେଉଥିଲେ ମୋର ସ୍ୱାମୀ । ମାତ୍ର ସେ ଉତ୍ସାହ ମୋତେ ହାତଧରି ନିର୍ଦ୍ଦିଷ୍ଟ ଏକ ଦୂରତା ଯାଏ ନେଲା । ତା'ପରେ ପାହାଡ଼ ଚଢ଼ାଲି ଉପରକୁ ଉପରକୁ ଉଠିଲାବେଳକୁ କ୍ରମଶଃ ସବୁ ସାଥୀ ହଜିଯାଇ ଏକୁଟିଆ ହୋଇଗଲା ପରି, କାବ୍ୟସାଧନାର ମଝିଦାଣ୍ଡରେ ମୁଁ ବି ଏକୁଟିଆ ହୋଇଗଲି । ଆଖପାଖରେ ଆଉ କେହି ନ ଥାନ୍ତି ସେତେବେଳକୁ ।

ସେତିକିବେଳକୁ ମୋ ମନରେ ଉଠିବା କଥା ଯେ, ମୁଁ କବିତାରୁ ପାଇଛି କ'ଣ ? କ'ଣ ପାଇଁ ଲେଖୁଛି ? ଜୀବନର ଅନନ୍ତ ଆବେଗ, ଉପଲବ୍ଧି ଓ ସମୟ ତଥା ଶ୍ରମ ବିନିଯୋଗ କରି ମୁଁ ସୃଷ୍ଟି ରଚିଛି କ'ଣ ? କ'ଣ ଖୋଜିଲି ଏତେଦିନ, ପାଇଲି ବା କିଛି ?

ଯାହା ପାଇଛି, ସେଇଥିପାଇଁ ହିଁ ମୁଁ ଲେଖିଛି । ଯନ୍ତ୍ରଣାମୟମାନ ବିଶ୍ୱପଥରେ ନିଜର ପାଦତଳର ଭୂମିକୁ ମାପିଛି—ଆପଣାର ଦଣ୍ଡାୟମାନ ଅସ୍ତିତ୍ୱକୁ ନିରୀକ୍ଷଣ କରିଛି—ଖୋଜିଛି ବଞ୍ଚିବାର ଅର୍ଥ । ସକଳ ଅନର୍ଥ ଓ ବିଡ଼ମ୍ବନା ଭିତରୁ ଜୀବନର ମହାର୍ଘ ସୂତ୍ରଟିକୁ ଟାଣିଆଣି ଧରିବାକୁ ପ୍ରୟାସ କରିଛି । ଅସ୍ତିତ୍ୱର ଅସହାୟତାକୁ ସାଉଁଟି ନେଇ ନେଇ ଗାଧୋଇ ପଡ଼ିଛି ଲୁହରେ, ବିପୁଳ ସମ୍ଭାବନାର ରେଖାଚିତ୍ରଟିଏ ଆଙ୍କିଲାବେଳେ କରୁଣାର୍ଦ୍ର ହୋଇ ପଡ଼ିଛି ମଣିଷର କିଂକର୍ତ୍ତବ୍ୟ ପଣକୁ ହୃଦୟଙ୍ଗମ କରି । ବିଚିତ୍ର ମଣିଷଟି ! ଯେତିକି ବିଶାଳ ସେତିକି ହ୍ରସ୍ୱ—ବିଶ୍ୱକୁ କୋଳେଇ ନେଇପାରେ ଅଥଚ ନିଜ ମୁଣ୍ଡ ଉପରକୁ ବି ତା'ର ହାତ ପାଏନା । ଏପରି ମଣିଷକୁ ଅନ୍ୟ ଅର୍ଥରେ ନିଜକୁ ଏଡ଼େଇ ଦେଇ ଯାଇ ହୁଏନା । ଯାଇ ହୁଏନା ବୋଲି ତ ବିପୁଳତା ଓ କ୍ଷୁଦ୍ରତା ଭିତରେ ଅସଲ ସଂଯୋଗର ସେ ସୂତ୍ରଟିକୁ ଆବିଷ୍କାର କରିବାକୁ ପ୍ରୟାସ କରେ ମୁଁ—କେତେ ରାତି ବିନା ନିଦରେ ପୁହାଏ । କେତେ ଅର୍ଥକଷ୍ଟ ସମ୍ବଳକୁ ହାତଛଡ଼ା କରିଦିଏ । କେବେ ମଣିଷ ଏଇ ବିଡ଼ମ୍ବନାରୁ, ଅସହାୟତାରୁ ତ୍ରାହି ପାଇବ, କିପରି ପାଇବ—ସେହି ପ୍ରଶ୍ନ ପଚାରି ଚାଲେ ନିଜକୁ, ଶୂନ୍ୟକୁ, ସେଇ କଳ୍ପିତ ଈଶ୍ୱରଙ୍କୁ ।

ଈଶ୍ୱରଙ୍କଠୁଁ ଉତ୍ତର ନଥାଏ, ଶୂନ୍ୟ ତ ସବୁଦିନେ ନିର୍ଦ୍ଦୟ । ଅତଏବ ମୋ' ନିଜକୁ ହିଁ ପ୍ରଶ୍ନ ପଚାରିବାକୁ ପଡ଼େ । ଖୋକ୍‌ଠୋକ୍ ପ୍ରଶ୍ନ—ଯଦି ବଞ୍ଚିବାକୁ ଚାହିଁ, ଉତ୍ତର ଦେବାକୁ ହେବ, ନହେଲେ ମରିଯାଅ, ନଷ୍ଟ ହୋଇଯାଅ ! ସୁନ୍ଦର ଭବୋପଲବ୍ଧିର ମଣିଷକୁ ଆତ୍ମତ୍ୟାଗରେ ଉତ୍ସର୍ଗିତ ମଣିଷକୁ ମୁଁ ସାମ୍ନା କରେ ଓ ତାକୁ ମାରିଦେଇ ପାରେନା, ତାକୁ ନଷ୍ଟର ଗହ୍ୱରକୁ ଠେଲିଦେଇ ପାରେନାହିଁ । ସମ୍ଭାବନାର ଜଗତ ଭିତରେ ତାର ମହିମାମୟ 'ପ୍ରାପ୍ତ ଈଶ୍ୱର' ରୂପଟିକୁ ଆଙ୍କିବସେ ।

କ'ଣ ମିଳେ ସେ ଆଙ୍କିବାରୁ ? କିଛି ମିଳେ ନିଶ୍ଚୟ—ଯାହା ମିଳେ ତାହାର ଗୌରବରେ ଅଭିଷିକ୍ତ ହୋଇ ମୁଁ ଶତ୍ରୁକୁ ବି କ୍ଷମା କରିଦିଏ, ସଂସାରର ସକଳ ଅବୁଝାମଣାକୁ, ଜଞ୍ଜାଳକୁ ଠିଆ କରିଦିଏ ନିର୍ଦ୍ଦିଷ୍ଟ ଇଲାକାରେ, ବାଁ ହାତରେ ମୁଠେଇ ଧରେ ସେ ସବୁକୁ । ଡାହାଣ ହାତରେ କଲମ ଟେକିଥାଏ—ନିଜକୁ ଖୋଜି ପାଇବାର ଆନନ୍ଦ, ନିଜର ଝଙ୍କୃତାର ଅସଲ ସ୍ୱରଟିକୁ ମୁଠାଇ ଧରିବାର ସାମର୍ଥ୍ୟ, ନିଜର ଅଭୀପ୍ସାକୁ ଚିହ୍ନି, ତାକୁ ପ୍ରତିଷ୍ଠା କରିବାର ପ୍ରାଣାନ୍ତକ ପ୍ରୟାସର ଅନିବାର୍ଯ୍ୟତା, ସେ ପ୍ରୟାସର ପରିଣତି, ପରିଣତିରୁ ସଞ୍ଜାତ କରୁଣା, ମତେ ଅଭିଭୂତ କରିପକାଏ ।

ଈଶ୍ୱରଙ୍କ ପରି ଚରମ ଅବଜ୍ଞା, ଚରମ ଦଣ୍ଡନକାରୀଙ୍କୁ ଟାଣିଅଣା କାଠଗଡ଼ାରେ ଠିଆ କରେଇବାକୁ ପ୍ରସ୍ତୁତ ହୋଇଯାଏ ମୁଁ । କିନ୍ତୁ ସେ ଯେ ମଣିଷର ସର୍ବୋତ୍ତମ ସମ୍ଭାବନାର ପ୍ରତୀକ ରୂପଟିଏ—ଏତିକି ବୁଝିଲେ ପରେ ତାଙ୍କ ପାଇଁ ବି ଆଖି ଛଳ ଛଳ ହୋଇଉଠେ । ମଣିଷ ଭିତରେ ଥିବା ସର୍ବୋଚ୍ଚ ଶ୍ରେୟକୁ ଆବିଷ୍କାର କରିବାର ସାମର୍ଥ୍ୟରେ ହର୍ଷିତ ହୋଇଉଠେ ମୁଁ ।

ଶବ୍ଦ ମାଧ୍ୟମରେ ବିପ୍ଳବକୁ ସାକାର କରେ । କାରଣ ସମୟର ଶାସନକୁ ସହ୍ୟ କରି ପାରେନା—ମରଣଶୀଳକୁ ଅନାୟାସରେ ଠେଲିନେଇ ପାରେନା ମୃତ୍ୟୁର ଅନ୍ଧାର ଭିତରକୁ । ହିଂସା, ଦ୍ୱେଷର ଲେଲିହାନ ମୁଖବିବର ଭିତରେ ବିସର୍ଜି ପାରେନା ସ୍ନେହ, ସଂପ୍ରୀତି ନିର୍ଜର ମଣିଷପଣକୁ । ବିଦ୍ରୋହୀ ହୋଇଉଠେ ମୁଁ । ଧାତବ ଅସ୍ତ୍ର ଧରେନା ଅବଶ୍ୟ, କାରଣ ନିର୍ଦ୍ଦିଷ୍ଟ ବ୍ୟକ୍ତିଟିଏ ହୋଇ ଶତ୍ରୁ ନଥାଏ କେହି । ମାତ୍ର ଭବୋପଲବ୍ଧିର ଜଗତରେ ବିପ୍ଳବର ଆହ୍ୱାନ ଦିଏ—ଠିଆ ହୋଇପଡ଼େ ବିପକ୍ଷରେ । ଅଥଚ ଈଶ୍ୱର, ତାଙ୍କ ସୃଷ୍ଟିର ଚିରାଚରିତ ଗତିପଥରେ ଦଣ୍ଡାୟମାନ ବିପ୍ଳବୀକୁ ସହ୍ୟ କରି ପାରନ୍ତି ନାହିଁ । ଅତଏବ ଦଣ୍ଡ ଭୋଗେ ମୁଁ, ମର୍ମନ୍ତୁଦ, କଠୋର ଦଣ୍ଡ ।

ଈଶ୍ୱରଙ୍କ ସହ ସ୍ପର୍ଦ୍ଧା କରିବାକୁ ଲେଖେ, କଠୋରତମ ଦଣ୍ଡ ଗ୍ରହଣ କରିନେବାକୁ ବି ଲେଖେ—ବୋଧହୁଏ ଏଇ ଦୁଇଟି କାରଣ ପାଇଁ ଲେଖେ । ଏସବୁଠାରୁ ଆହୁ ଅଧିକ କିଛିପାଇଁ ବି ଲେଖେ—ସେଇ ଅଧିକ, ଯାହାକୁ ମୁଁ ଏଠାରେ ଠିକ୍ ଠିକ୍ ବୁଝାଇ ପାରୁନାହିଁ । ଯେଉଁ ଆନନ୍ଦ ଓ ଯନ୍ତ୍ରଣା ମୋର ଶବ୍ଦ ଖଣ୍ଡ ଭିତରେ ଲୁଚିଛପି ରହିଯାଉଛି—ଅଦ୍ୟାବଧି ପ୍ରକାଶ ପାଇବାକୁ କୁଣ୍ଠିତ—ସେଥିପାଇଁ ବି ଲେଖେ ।

---